# ଉତ୍କଳ ପ୍ରସଙ୍ଗ


୫୬ ଭାଗ | ୪ର୍ଥ ସଂଖ୍ୟା
କାର୍ତ୍ତିକ-ମାର୍ଗଶିର | ନଭେମ୍ବର- ୧୯୯୯




ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ
ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ


## ସୂଚୀ

# ସମ୍ପାଦକୀୟ

## ସମବେଦନା

ଅନେଶତର ଅଣଚାଶରେ ଓଡ଼ିଶାର ଅଗଣିତ ମଣିଷ ଅକାଳରେ ମହାକାଳ ଗର୍ଭରେ ବିଲୀନ ହୋଇଗଲେ । ସେମାନଙ୍କ ଅତୃପ୍ତ ଆତ୍ମାର ଆମେ ସଦ୍‌ଗତି କାମନା କରୁଛୁ ।

ନିଷ୍ଠୁର ନିୟତି ଲକ୍ଷ ଲକ୍ଷ ନରନାରୀଙ୍କୁ ନିଃସ୍ୱ, ନିଃସହାୟ କରି ଦେଇଛି, ସେମାନଙ୍କ ଘର, ପରିବାରକୁ ଉଜାଡ଼ି ଦେଇଛି, ଜୀବନର ସର୍ବସ୍ୱ ଲୁଟି ନେଇଛି । ସେହି ହତଭାଗ୍ୟମାନଙ୍କୁ ଆମେ ହୃଦୟର ଗଭୀର ସମବେଦନା ଜଣାଉଛୁ ।

ଦୁଃସ୍ଥ ଓ ଦୁର୍ଗତ ଜନତାର ନିଃସ୍ୱାର୍ଥପର ସେବା ଓ ସହାୟତା କରି ଦେଶ ବିଦେଶର ବଦାନ୍ୟ ବ୍ୟକ୍ତି, ସରକାର, ସ୍ୱେଚ୍ଛାସେବୀ ସଂଗଠନମାନେ ମାନବ ସେବାର ଯେଉଁ ମହାନ୍ ଆଦର୍ଶ ପ୍ରଦର୍ଶନ କରିଛନ୍ତି, ଏ ଜାତି ସେମାନଙ୍କ ନିକଟରେ ଚିରକାଳ କୃତଜ୍ଞ ରହିଥିବ ।

ମହାବାତ୍ୟା ବିଧ୍ୱସ୍ତ ଓଡ଼ିଶାର ପୁନର୍ନିର୍ମାଣ ପାଇଁ ଈଶ୍ୱର ଆମର ସହାୟ ହୁଅନ୍ତୁ, ଆଜିର ଦୁର୍ଦ୍ଦିନରେ ଏତିକି ପ୍ରାର୍ଥନା ।

# ପୂଣ୍ୟ ଜୟନ୍ତୀରେ ଶ୍ରଦ୍ଧାଞ୍ଜଳି



ପଣ୍ଡିତ ଜବାହାରଲାଲ ନେହରୁ



ଇନ୍ଦିରା ଗାନ୍ଧୀ

# ଶହୀଦ ସ୍ମରଣେ



ବିର୍ସା ମୁଣ୍ଡା



ଲକ୍ଷ୍ମଣ ନାୟକ



ଦିବାକର ପରିଡା



ଜୟୀ ରାଜଗୁରୁ

# ବାତ୍ୟା-ବିପର୍ଯ୍ୟସ୍ତ ଓଡ଼ିଶାର ପୁନର୍ଗଠନ : ଏକ ବିରାଟ ଆହ୍ୱାନ

ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଏମ୍.ଏମ୍. ରାଜେନ୍ଦ୍ରନ୍



ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ଏକ ବାର୍ତ୍ତା ଦେଇ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଏମ୍.ଏମ୍. ରାଜେନ୍ଦ୍ରନ୍ କହିଛନ୍ତି -

ପ୍ରକୃତି ଓଡ଼ିଶାକୁ ବିପୁଳ ସଂପଦରେ ଭରପୁର କରିଛି । ରାଜ୍ୟର ୪୮୦ କି.ମି. ବ୍ୟାପୀ ସୁଦୀର୍ଘ ସମୁଦ୍ର ତଟ ରହିଛି । ଏହି ବିପୁଳ ସଂପଦର ସୁବିନିଯୋଗ କରି ରାଜ୍ୟର ଅର୍ଥନୀତିକୁ ସମୃଦ୍ଧ କରିବା ପାଇଁ ବିଗତ ପାଞ୍ଚ ଦଶନ୍ଧି ଧରି ନିରନ୍ତର ପ୍ରୟାସ ଚାଲୁ ରହିଛି । ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରାଯାଇଥିଲେ ହେଁ ବହୁତ କିଛି କରିବା ପାଇଁ ବାକୀ ରହିଛି । ଭାଗ୍ୟର ବିଡ଼ମ୍ବନା ଯେ, ବିପୁଳ ପ୍ରାକୃତିକ ସଂପଦ ସତ୍ତ୍ୱେ ଓଡ଼ିଶା ଏବେ ବି ଦେଶର ଏକ ଗରିବ ରାଜ୍ୟ ହୋଇ ରହିଛି ।

ପ୍ରକୃତିର କ୍ରୂରତା ସର୍ବଦା ବିଭୀଷିକା ସୃଷ୍ଟି କରି ଆସିଛି । ବାତ୍ୟା, ବନ୍ୟା ଓ ମରୁଡ଼ି କ୍ରମାଗତ ଭାବେ ଲାଗି ରହିଥିବାରୁ ଜନ ଜୀବନ ବ୍ୟାପକ ଭାବେ କ୍ଷତିଗ୍ରସ୍ତ ହୋଇଛି ।

ଦୁଇ ଦୁଇଟି ପ୍ରଳୟଙ୍କରୀ ବାତ୍ୟା ଯୋଗୁଁ ଘଟିଥିବା ଧ୍ୱଂସଲୀଳା ଓ ତଜ୍ଜନିତ ଦୁର୍ଦ୍ଦଶାର ସମ୍ମୁଖୀନ ହେବା ପାଇଁ ରାଜ୍ୟ ସାହସିକ ପଦକ୍ଷେପ ଗ୍ରହଣ କରିଛି । ଦେଢ଼ କୋଟିରୁ ଊର୍ଦ୍ଧ୍ୱ ଲୋକ କ୍ଷତିଗ୍ରସ୍ତ ହୋଇଛନ୍ତି । ପ୍ରାୟ ଦଶ ହଜାର ଲୋକ ମୃତ୍ୟୁବରଣ କରିଛନ୍ତି । ସମସ୍ତ ସମ୍ବଳ ଖଟାଇ ରାଜ୍ୟ ସରକାର ରିଲିଫ୍, ଥଇଥାନ ଓ ପୁନଃନିର୍ମାଣ କାର୍ଯ୍ୟରେ ଲାଗି ପଡ଼ିଛନ୍ତି । ଲୋକଙ୍କ ସ୍ମୃତିସାରରେ ଏ ଧରଣର ବିଶାଳ ରିଲିଫ୍, ଥଇଥାନ ଓ ପୁନଃନିର୍ମାଣ କାର୍ଯ୍ୟ କେବେ ହୋଇନାହିଁ । ଯାହା ହେଲେବି, ଏହା ଏକ ବିରାଟ ଆହ୍ୱାନ ।

ସରକାରଙ୍କର ସମ୍ବଳ ବର୍ତ୍ତମାନର ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଯଥେଷ୍ଟ ହୋଇ ନପାରେ । ବିପର୍ଯ୍ୟସ୍ତ ଅର୍ଥନୀତିକୁ ଏଡ଼ାଇବା, ଭୋକିଲା ମୁହଁରେ ଖାଦ୍ୟ ଦେବା, ଗୃହହୀନଙ୍କୁ ଘର ଯୋଗାଇବା ଆମର ସବୁଠାରୁ ବଡ଼ କର୍ତ୍ତବ୍ୟ । ଉଜୁଡ଼ା କୃଷିକ୍ଷେତ୍ରକୁ ଚାଷ ଉପଯୋଗୀ କରିବା, ପିଲାମାନଙ୍କୁ ସ୍କୁଲକୁ ଫେରାଇ ଆଣିବାରେ ସାହାଯ୍ୟ କରିବା, ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥାକୁ ସୁନିଶ୍ଚିତ ଏବଂ ସର୍ବୋପରି ଆତଙ୍କଗ୍ରସ୍ତ ଲୋକଙ୍କ ମନରେ ଆତ୍ମବିଶ୍ୱାସ ଜାଗ୍ରତ କରାଇବାକୁ ହେବ ।

ଓଡ଼ିଶାର ପୁନର୍ନିର୍ମାଣ ଏକ ଦୁରୂହ ବ୍ୟାପାର । ପ୍ରତିରକ୍ଷା ବାହିନୀ, ବିଭିନ୍ନ ରାଜ୍ୟ ସରକାର, ଜାତୀୟ ଓ ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ସଂଗଠନ ଓ ଅନ୍ୟାନ୍ୟ ଦେଶ ବିଦେଶର ବଦାନ୍ୟ ସଂସ୍ଥାମାନେ ରାଜ୍ୟର ଦୁର୍ଗତ ଜନସାଧାରଣଙ୍କୁ ଉଦାର ଚିତ୍ତରେ ସାହାଯ୍ୟ ଓ ଆଶ୍ୱାସନା ପ୍ରଦାନ କରିଥିବାରୁ ସେମାନଙ୍କୁ ମୁଁ କୃତଜ୍ଞତା ଜଣାଉଛି ।

ଲକ୍ଷ ଲକ୍ଷ ବିପନ୍ନ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ସାଧ୍ୟମତେ ସାହାଯ୍ୟ କରିବାକୁ ମୁଁ ସମସ୍ତଙ୍କୁ ଏହି ଅବକାଶରେ ନିବେଦନ କରୁଛି ।

ଆସନ୍ତୁ, ଆମେ ସମସ୍ତେ ମିଳିମିଶି କଠୋର ପରିଶ୍ରମ ଦ୍ୱାରା ଓଡ଼ିଶାକୁ ଦେଶର ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ।

# ଓଡ଼ିଶାର ନୂତନ ରାଜ୍ୟପାଳ : ଶ୍ରୀ ଏମ୍.ଏମ୍.ରାଜେନ୍ଦ୍ରନ୍

ଓଡ଼ିଶାର ନୂତନ ରାଜ୍ୟପାଳ ମାନ୍ୟବର ରାଜେନ୍ଦ୍ରନ ଜଣେ ବରିଷ୍ଠ ଓ ସୁଦକ୍ଷ ପ୍ରଶାସକ ଭାବେ ସୁଖ୍ୟାତି ଅର୍ଜନ କରିଛନ୍ତି । ସେ ଭାରତୀୟ ପ୍ରଶାସନ ସେବାରେ ୧୯୫୭ରେ ଯୋଗ ଦେଇଥିଲେ ଓ ତାଙ୍କ ବ୍ୟାଚରେ ସେହି ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖିବାର ଗୌରବ ଅର୍ଜନ କରିଥିଲେ । ମାଡ୍ରାସ ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ରାଜ୍ୟସ୍ତରରେ, ଜାତୀୟ ସ୍ତରରେ ଓ ଆନ୍ତର୍ଜାତୀୟ ସ୍ତରରେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପଦବୀରେ ରହି ଆସିଥିଲେ ।

ତାମିଲନାଡୁ ପ୍ରଦେଶର ଦୁଇଟି ବୃହତ ଜିଲ୍ଲାରେ ସେ ଚାରିବର୍ଷରୁ ଅଧିକ କାଳ ଜିଲ୍ଲାପାଳ ଥିଲେ ଏବଂ ଗ୍ରାମ୍ୟ ଉନ୍ନୟନ ଓ ସ୍ଥାନୀୟ ପ୍ରଶାସନ ପ୍ରଭୃତି ଗୁରୁତ୍ୱପୂର୍ଣ୍ଣ ବିଭାଗରେ ଅନୁସଚିବ, ଉପସଚିବ ଓ ସଚିବ ପଦବୀରେ ଥାଇ ପ୍ରଶାସନ କ୍ଷେତ୍ରରେ ବ୍ୟାପକ ଅଭିଜ୍ଞତା ହାସଲ କରିଥିଲେ । ଶ୍ରମ ଓ ଶିଳ୍ପ ସଂପର୍କ କ୍ଷେତ୍ରରେ ମଧ ତାଙ୍କର ବିପୁଳ ଅଭିଜ୍ଞତା ଯୋଗୁଁ ସେ ତିନିବର୍ଷରୁ ଉର୍ଦ୍ଧ୍ୱକାଳ ଶ୍ରମ କମିଶନର ଥିଲେ । ଏହାଛଡ଼ା ରାଜ୍ୟ ଶ୍ରମ ଓ ନିଯୁକ୍ତି ବିଭାଗରେ ସେ ଶାସନ ସଚିବ ଦାୟିତ୍ୱ ତୁଲାଇବା ସହିତ ଜାତୀୟସ୍ତରର ଶ୍ରମ ମଙ୍ଗଳ କମିଟି ତଥା ଶିଶୁ ଶ୍ରମିକ କମିଟିର ସଦସ୍ୟ ମଧ ଥିଲେ ।

ରାଜ୍ୟସ୍ତରୀୟ ପ୍ରଶାସକ ଭାବେ ସେ ସାଧାରଣ ପ୍ରଶାସନ ଓ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଭାଗ ଯଥା ଶକ୍ତି, ଜଳସେଚନ, ଜଳଯୋଗାଣ, ରାସ୍ତା ଓ ଗୃହନିର୍ମାଣ, ନଗରଉନ୍ନୟନ ବିଭାଗର ସଚିବ ଥିଲେ । ତାମିଲନାଡୁ ବିଦ୍ୟୁତବୋର୍ଡ଼ ଓ ତାମିଲନାଡୁ ହାଉସିଂବୋର୍ଡ଼ ପରି ଦୁଇଟି ସରକାରୀ ଉଦ୍ୟୋଗର ସେ ଅଧକ୍ଷ ଦାୟିତ୍ୱ ମଧ ନେଇଥିଲେ । ଏହାବ୍ୟତୀତ ସେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ବହୁ ସରକାରୀ ଓ ମିଳିତ ଉଦ୍ୟୋଗର ସାମୟିକ ବା ପୂରାସମୟ ନିର୍ଦ୍ଦେଶକ ରହିଥିଲେ ।

ଶ୍ରୀ ରାଜେନ୍ଦ୍ରନ ଭାରତ ସରକାରଙ୍କ ଅଧୀନରେ ଶିକ୍ଷା ଓ ସମାଜ ମଙ୍ଗଳ ମନ୍ତ୍ରଣାଳୟରେ ପାଞ୍ଚବର୍ଷ କାଳ ଯୁଗ୍ମସଚିବ ଭାବେ କାର୍ଯ୍ୟ କରିଥିଲେ । ସମନ୍ୱିତ ଶିଶୁ ବିକାଶ ସେବା (ଆଇ.ସି.ଡି.ଏସ୍.) ଯୋଜନା ତଥା ଶିଶୁ ପୁଷ୍ଟିକର ଖାଦ୍ୟ ଯୋଜନାରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ । ଏହି ଯୋଜନାଟି ଏବେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଆଦୃତ ହୋଇଛି । ସେ ୟୁନିସେଫ କାର୍ଯ୍ୟକାରିଣୀ ବୋର୍ଡ଼ରେ ସଦସ୍ୟ ଓ କାର୍ଯ୍ୟକ୍ରମ କମିଟିର ଉପାଧକ୍ଷ ଥିଲେ । ପରେ ୟୁନିସେଫର ନିମନ୍ତ୍ରଣକ୍ରମେ ସେ ନ୍ୟୁୟର୍କସ୍ଥିତ ୟୁନିସେଫ ମୁଖ୍ୟ କାର୍ଯ୍ୟାଳୟରେ ଜଣେ ବରିଷ୍ଠ ପରାମର୍ଶଦାତା ଭାବେ ଯୋଗ ଦେଇଥିଲେ । ୟୁନିସେଫ୍ ତାଙ୍କୁ ସ୍ଥାୟୀ ନିଯୁକ୍ତି ଦେବାକୁ ଅନୁରୋଧ କରିଥିବା ସତ୍ତ୍ୱେ ସେପରି ଲୋଭନୀୟ ପଦବୀକୁ ବର୍ଜନ କରି ସେ ୧୯୮୭ ଜାନୁଆରୀ ମାସରେ ଭାରତ ଫେରି ଆସି ରାଜ୍ୟ ଭିଜିଲାନ୍ସ କମିଶନର ତଥା ପ୍ରଶାସନିକ ସଂସ୍କାର କମିଶନର ଭାବେ ଯୋଗ ଦେଇଥିଲେ ।

ସେ ତାମିଲନାଡୁ ସରକାରଙ୍କର ମୁଖ୍ୟ ସଚିବ ଭାବେ ୧୯୮୮ରେ ନିଯୁକ୍ତି ପାଇଥିଲେ । ସେତେବେଳେ ତାମିଲନାଡୁରେ ରାଷ୍ଟ୍ରପତି ଶାସନ ଜାରି ରହିଥିଲା । ତାମିଲନାଡୁରେ ନିର୍ବାଚିତ ସରକାର ଅଧୀନରେ ସେ ଜାନୁଆରୀ ୧୯୮୯ରୁ ଜାନୁଆରୀ ୧୯୯୧ ପର୍ଯ୍ୟନ୍ତ ମୁଖ୍ୟ ସଚିବ ଦାୟିତ୍ୱ ତୁଲାଇଥିଲେ । ଏହାପରେ ସେ ଭାରତ ସରକାରଙ୍କ ଅଧୀନରେ ଦୁଇଟି ମନ୍ତ୍ରଣାଳୟରେ କାର୍ଯ୍ୟ କରିବାର ସୁଯୋଗ ଲାଭ କରିଥିଲେ ଏବଂ ଶେଷରେ କେନ୍ଦ୍ର ସରକାରଙ୍କର ସଂସଦୀୟ ବ୍ୟାପାର ମନ୍ତ୍ରଣାଳୟର ସଚିବ ଥାଇ ୧୯୯୩ରେ ଅବସର ଗ୍ରହଣ କରିଥିଲେ ।

ଶ୍ରୀ ରାଜେନ୍ଦ୍ରନ୍ ତାଙ୍କର ଚାକିରିକାଳ ମଧରେ ବ୍ୟାପକ ଅଧ୍ୟୟନ ଗଭୀର କରିବା ସଙ୍ଗେ ସଙ୍ଗେ ବହୁ ଆନ୍ତର୍ଜାତୀୟ ସଭା ସମ୍ମିଳନୀରେ ଯୋଗଦାନ କରିବାର ସୁଯୋଗ ଲାଭ କରିଥିଲେ । ସେସବୁ ମଧରେ ଜାତିସଂଘର ବିଭିନ୍ନ ସମ୍ମିଳନୀ ଅନ୍ତର୍ଭୁକ୍ତ । ଦୀର୍ଘ ୩୬ ବର୍ଷ କାଳର ସରକାରୀ ଚାକିରି କ୍ଷେତ୍ରରେ ନିଜର କାର୍ଯ୍ୟଦକ୍ଷତା ଓ ସଚ୍ଚୋଟ ପଣିଆ ଲାଗି ସେ ସାଧାରଣରେ ବିଶେଷ ଆଦୃତ ।

# ମୁଖ୍ୟମନ୍ତ୍ରୀଙ୍କ ନିବେଦନ

**ମହାବାତ୍ୟା ବିପର୍ଯ୍ୟସ୍ତ ଓଡ଼ିଶାର ପୁନର୍ନିର୍ମାଣ କାର୍ଯ୍ୟରେ ସହାୟତା କରିବାକୁ ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗ କହିଛନ୍ତି -**

ବିଂଶ ଶତାବ୍ଦୀର ସର୍ବବୃହତ୍ ଅଭୂତପୂର୍ବ ପ୍ରଳୟଙ୍କରୀ ମହାବାତ୍ୟାରେ ଯେତେବେଳେ ମୋ ଓଡ଼ିଶା ରାଜ୍ୟର ଦେଢ଼କୋଟିରୁ ଅଧିକ ଲୋକ ବିପନ୍ନ ଓ ନିରାଶ୍ରୟ ହୋଇପଡ଼ିଲେ, ସେତେବେଳେ ମୋ ପାଖରେ ଏକମାତ୍ର ସମ୍ବଳ ଥିଲା 'ନିବେଦନ' । ମହାବାତ୍ୟା ଯୋଗୁ ମୋ ରାଜ୍ୟ ସମଗ୍ର ବିଶ୍ୱରୁ ଏକପ୍ରକାର ବିଚ୍ଛିନ୍ନ ହୋଇପଡ଼ିଲା । ଏହି ଦାରୁଣ ଭୟାବହତା ସମ୍ପର୍କରେ ଆଗୁଆ ସତର୍କ ସୂଚନା ପାଇ ମୋ ରାଜ୍ୟର ଭାଇ ଭଉଣୀମାନଙ୍କ ଜୀବନ ତଥା ଧନ ସମ୍ପଦ ରକ୍ଷା ପାଇଁ ପ୍ରତିଷେଧକମୂଳକ ପଦକ୍ଷେପ ଯଥାସମ୍ଭବ ନେଇଥିଲି । ବାରମ୍ବାର ସତର୍କ ସୂଚନା ସାଙ୍ଗକୁ ତଟିଆ ଅଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କୁ ନିରାପଦ ସ୍ଥାନକୁ ନେବାପାଇଁ ସବୁପ୍ରକାର ବ୍ୟବସ୍ଥା କରିଥିଲି । ଗଣମାଧ୍ୟମ ଯଥା - ବେତାର, ଦୂରଦର୍ଶନ ତଥା ଖବରକାଗଜ ମାଧ୍ୟମରେ ଘନଘନ ସୂଚନା ଦିଆଯାଉଥିଲା ।

ଯା' ହେଉ ଏ ଘୋର ଦୈବ ବିପତ୍ତି ପରେ ପରେ ଲୋକଙ୍କ ଜୀବନ ବଞ୍ଚାଇବା ସର୍ବପ୍ରଥମ କାର୍ଯ୍ୟ ମନେକରି ରକ୍ଷାମନ୍ତ୍ରୀଙ୍କୁ ଫାକ୍ସ ଓ ଟେଲିଫୋନ ଯୋଗେ ସେନାବାହିନୀ ଏବଂ ପଦାତିକ ବାହିନୀ ସହାୟତା ପାଇଁ ଅନୁରୋଧ କରିଥିଲି । ପରେ ପରେ ଭାରତର ପ୍ରଧାନମନ୍ତ୍ରୀ ଏବଂ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀଗଣ ତଥା ବିଶ୍ୱବାସୀଙ୍କୁ ମୋ ରାଜ୍ୟର ବିପନ୍ନ ଜନତାର ଜୀବନ ରକ୍ଷା ପାଇଁ ସାହାଯ୍ୟ ମାଗିଥିଲି । ପ୍ରଧାନମନ୍ତ୍ରୀଙ୍କ ସମେତ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ତଥା ବିଶ୍ୱର ବିଭିନ୍ନ ସଂଗଠନ, ଜାତିସଂଘ, ଆମେରିକାର ରାଷ୍ଟ୍ରପତି ଶ୍ରୀ ବିଲ୍ କ୍ଲିଣ୍ଟନ, ଜର୍ମାନୀ, ରୁଷିଆ, ଥାଇଲାଣ୍ଡ ତଥା ବିଭିନ୍ନ ଦେଶର ନେତୃବୃନ୍ଦ ଆଗେଇ ଆସି ବିପଦର ବନ୍ଧୁ ହେଲେ । ସେମାନଙ୍କୁ କୃତଜ୍ଞତା ଜଣାଇବାର ଭାଷା ମୋ ପାଖରେ ନାହିଁ ।

ଏବେ ପ୍ରାରମ୍ଭିକ ରିଲିଫ୍ କାର୍ଯ୍ୟ ପ୍ରାୟ ଶେଷ ହେଉଅଛି । ପର୍ଯ୍ୟାପ୍ତ ପରିମାଣରେ ଚାଉଳ, ଚୁଡ଼ା, ଡାଲି, ବିସ୍କୁଟ, କ୍ଷୀରଗୁଣ୍ଡ, କିରାସିନି, ମହମବତୀ, ଫଳ, ଶିଶୁଖାଦ୍ୟ, ଲୁଗାପଟା, ପାନୀୟଜଳ ତଥା ଔଷଧପତ୍ର ତଥା ଗୋଖାଦ୍ୟ ବଣ୍ଟନ ପୁରା ଦମ୍ଭରେ ଉଭୟ ଆକାଶପଥ ଓ ରେଳପଥରେ ଚାଲୁରହିଛି । ବିପନ୍ନାଞ୍ଚଳରେ ମାଗଣା ଭୋଜନ କେନ୍ଦ୍ରମାନ ଆରମ୍ଭ କରାଯାଇଛି । ରାଜ୍ୟକୁ ମହାମାରୀ ତଥା ଅନ୍ୟାନ୍ୟ ସଂକ୍ରାମକ ରୋଗ କବଳରୁ ରକ୍ଷା କରିବା ପାଇଁ ଦୃଢ଼ ପଦକ୍ଷେପ ନିଆଯାଉଅଛି । ସରକାରୀ ତଥା ବେସରକାରୀ ସଂସ୍ଥା ଓ ସଂଗଠନ ମାଧ୍ୟମରେ ଶବ ଓ ଜୀବଜନ୍ତୁଙ୍କୁ ଦାହ କାର୍ଯ୍ୟ ପ୍ରାୟ ସରିଆସିଲାଣି । ପଲିଥିନ୍, ତାରପୋଲିନ୍ ଯୋଗାଣ କାର୍ଯ୍ୟ ଆରମ୍ଭ ହୋଇଛି । ଅଧିକ ସମୟ ପାଇଁ ମାଗଣା ଭୋଜନକେନ୍ଦ୍ର ଖୋଲାଯାଇଛି । ଏସବୁ ସତ୍ତ୍ୱେ ପୁନଃବାସ, ବିପନ୍ନ ଲୋକଙ୍କ ସମ୍ପତ୍ତି ରକ୍ଷା ତଥା ସାରା ରାଜ୍ୟରେ କୃଷକ ଭାଇମାନଙ୍କ କ୍ଷେତକୁ ସବୁଜ, ଶ୍ୟାମଳ କରିବା ସାଙ୍ଗକୁ ଭାଙ୍ଗି ପଡ଼ିଥିବା ଘରଗୁଡ଼ିକର ପୁନଃନିର୍ମାଣ ଲାଗି ବିରାଟ ଅଭିଯାନ ଆରମ୍ଭ କରିବା ନିତାନ୍ତ ପ୍ରୟୋଜନ ହୋଇପଡ଼ିଛି । ସ୍କୁଲ, କଲେଜ, ଅଫିସ୍, ଷ୍ଟାଡ଼ିଅମ ତଥା ଅନ୍ୟାନ୍ୟ ସାର୍ବଜନୀନ ସଂସ୍ଥାଗୁଡ଼ିକର ମରାମତି ତଥା ନିର୍ମାଣ ଅତି ଆବଶ୍ୟକ । ଏଥିଲାଗି ଅନ୍ୟୁନ ଦଶହଜାର କୋଟିରୁ ଉର୍ଦ୍ଧ୍ୱ ଟଙ୍କା ଅଟକଳ କରାଯାଇଛି । ଆମ ରାଜ୍ୟର ରାଜକୋଷ ଏକପ୍ରକାର ଶୂନ୍ୟ । ଏଥିପାଇଁ କେନ୍ଦ୍ର ସରକାରଙ୍କ ସକ୍ରିୟ ସହଯୋଗ ପାଇଁ ନିବେଦନ କରାଯାଇଛି । ଏହାକୁ 'ଜାତୀୟ ବିପତ୍ତି' ରୂପେ ଘୋଷଣା କରାଗଲେ ଅନେକାଂଶରେ ଦେଶ ବିଦେଶର ଅଧିକତର ସାହାଯ୍ୟ ମିଳିବ । ଏହି ପରିପ୍ରେକ୍ଷୀରେ ସମସ୍ତ ରାଜନୈତିକ ସଂକୀର୍ଣ୍ଣତାରୁ ଉର୍ଦ୍ଧ୍ୱରେ ରହି କାନ୍ଧରେ କାନ୍ଧ ମିଳାଇ ଦିବାରାତ୍ରି କଠୋର ପରିଶ୍ରମ କରିବାକୁ ହେବ ।

ଏହି ଦୁର୍ଦ୍ଦିନରେ ସମ୍ମିଳିତଭାବେ ବନ୍ଧୁ ଓ ସ୍ୱଜନର ମନୋଭାବ ନେଇ ବିପନ୍ନଙ୍କ ସୁରକ୍ଷା କ୍ଷେତ୍ରରେ ଆମକୁ ପ୍ରଚେଷ୍ଟା ଜାରି ରଖିବାକୁ ହେବ । ରାଜ୍ୟର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଶ୍ରମିକ, କୃଷକ, ଶିକ୍ଷକ, ପ୍ରଶାସକ, ସରକାରୀ ତଥା ବେସରକାରୀ କର୍ମଚାରୀ, ଯୁବକ, ମହିଳା ତଥା ପ୍ରତ୍ୟେକ ସଚେତନ ନାଗରିକ ନିଜ ସମୟରୁ ଅଧିକ ଘଣ୍ଟାଟିଏ ଏଥିପାଇଁ ବିନିଯୋଗ କରିପାରିଲେ ରାଜ୍ୟ ପୁନର୍ଗଠନରେ ଏହା ସହାୟକ ହୋଇପାରିବ ।

ଆସନ୍ତୁ, ଏ ଦୁର୍ଦ୍ଦିନରେ ଏକ ମନ, ଏକ ପ୍ରାଣ ହୋଇ ବିପନ୍ନ ଅଞ୍ଚଳରେ ଲୁହ ପୋଛିବା ପାଇଁ ପ୍ରତିଜ୍ଞାବଦ୍ଧ ଭାବରେ କାର୍ଯ୍ୟ କରିବା । ପ୍ରଚାର, ଅପପ୍ରଚାର ତଥା ଗୁଜବକୁ ଭ୍ରୂକ୍ଷେପ ନ କରି ବିବେକ ଓ ବିଚାରକୁ ନେଇ ମୁଁ ଆପଣମାନଙ୍କ ପାଖରେ ସର୍ବଦା ରହିଛି ଓ ରହିଥିବି ।

# ବ୍ୟାତ୍ୟା ବିଧ୍ୱସ୍ତ ଅଞ୍ଚଳପାଇଁ ୨୧ ଦଫା କାର୍ଯ୍ୟକ୍ରମ

ବାତ୍ୟା ଓ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳର ସମସ୍ତ ବିପନ୍ନ ପରିବାରକୁ ପଲିଥିନ ଓ କମ୍ବଳ ଯୋଗାଇ ଦିଆଯିବ ଏବଂ ଗୃହ ନିର୍ମାଣ ପାଇଁ ୩୦ ହଜାର ଟଙ୍କାର ସହାୟତା ଦିଆଯିବା ସହ ରିଲିଫ୍ କୋଡ୍ ଅନୁଯାୟୀ ୧ ହଜାର ଟଙ୍କାରୁ ୩ ହଜାର ୫ଶହ ଟଙ୍କା ପର୍ଯ୍ୟନ୍ତ ଘରଭଙ୍ଗା ସାହାଯ୍ୟ ଦିଆଯିବ ଏବଂ କ୍ଷତିଗ୍ରସ୍ତ ଅଞ୍ଚଳରେ ୧ବର୍ଷ ପାଇଁ ସ୍କୁଲ ଓ କଲେଜର ଛାତ୍ରଛାତ୍ରୀମାନଙ୍କ ଦରମା, ପରୀକ୍ଷା ଫି ଓ ନାମଲେଖା ଫି ଛାଡ଼ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଗିରିଧର ଗମାଙ୍ଗ ଗତ ନଭେମ୍ବର ୧୬ ତାରିଖରେ ଘୋଷଣା କରିଛନ୍ତି । ଏହାସହିତ ତେଲ, ଡାଲିଜାତୀୟ ପଦାର୍ଥ ଉପରୁ ବିକ୍ରୀକର, ପଣ୍ୟକର ବା ପ୍ରବେଶ କର ଓ ଆର.ଏମ.ସି. ଫି' ମଧ୍ୟ ଛାଡ଼ କରାଯିବ । ଚାଷୀମାନଙ୍କୁ ୫୦ଭାଗ ରିହାତିରେ ଚାଷକାର୍ଯ୍ୟ ପାଇଁ ପାଣି ମଧ୍ୟ ଯୋଗାଇ ଦିଆଯିବ ବୋଲି ଘୋଷଣା କରାଯାଇଛି ।

ଏକ ସାମ୍ବାଦିକ ସମ୍ମିଳନୀରେ ବାତ୍ୟା ଓ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳର ଲୋକମାନଙ୍କୁ ସହାୟତା ଦେବାପାଇଁ ମୁଖ୍ୟମନ୍ତ୍ରୀ ଏକ ୨୧ ଦଫା କାର୍ଯ୍ୟକ୍ରମ ଘୋଷଣା କରିଥିଲେ । ଏଥିରେ କୁହାଯାଇଛି -

ରିଲିଫ୍ କୋଡ୍ ଅନୁଯାୟୀ ସମ୍ପୂର୍ଣ୍ଣ ଧୋଇଯାଇଥିବା ଘର ପାଇଁ ୩ ହଜାର ୫ଶହ ଟଙ୍କା, ସମ୍ପୂର୍ଣ୍ଣ ଭାଙ୍ଗିଯାଇଥିବା ଘର ପାଇଁ ୨ ହଜାର ଟଙ୍କା ଓ ଆଂଶିକ ଭାଙ୍ଗିଯାଇଥିବା ଘର ପାଇଁ ୧ ହଜାର ଟଙ୍କା କ୍ଷତିପୂରଣ ଦିଆଯିବ । ଏହି ଅର୍ଥ ବ୍ୟାଙ୍କ ପାଶବୁକ୍ ମାଧ୍ୟମରେ ଦିଆଯିବ । ପ୍ରତ୍ୟେକ କ୍ଷତିଗ୍ରସ୍ତ ପରିବାରଙ୍କୁ ୨୫ ଫୁଟ୍‌ରେ ୧୫ ଫୁଟ୍ ମାପର ପଲିଥିନ୍, କମ୍ବଳ ଓ ଲଣ୍ଠନ ଦିଆଯିବ ।

ପ୍ରତ୍ୟେକ ମୃତ ବ୍ୟକ୍ତିଙ୍କ ପାଇଁ ସେମାନଙ୍କ ପରିବାରକୁ ପ୍ରଧାନମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ୫୦ ହଜାର ଟଙ୍କା ଓ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ୨୫ ହଜାର ଟଙ୍କା ଲେଖାଏଁ ଦିଆଯିବ । କ୍ଷତିଗ୍ରସ୍ତ ହୋଇଥିବା ପରିବାରକୁ ପକ୍କାଘର ନିର୍ମାଣ ପାଇଁ ୩୦ ହଜାର ଟଙ୍କା ଦିଆଯିବ । ଏଥିରୁ ୧୦ ହଜାର ଟଙ୍କା ରାଜ୍ୟ ସରକାର ଭରଣା କରିବେ । ଅବଶିଷ୍ଟ ୨୦ ହଜାର ଟଙ୍କା ଓଡ଼ିଶା ଗ୍ରାମ୍ୟ ଗୃହନିର୍ମାଣ ଉନ୍ନୟନ ନିଗମ ପକ୍ଷରୁ ୧୫ ବର୍ଷିଆ ଋଣଭାବେ ଯୋଗାଇ ଦିଆଯିବ । ପ୍ରତ୍ୟେକ ବି.ପି.ଏଲ୍. ପରିବାରକୁ ଇନ୍ଦିରା ଆବାସ ଯୋଜନା ଗୃହ ଯୋଗାଇବା ପାଇଁ ୨ଲକ୍ଷ ୫୦ ହଜାର ଗୃହ ଯୋଗାଇ ଦେବା ଲାଗି କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଛି ।

ସମସ୍ତ ଚାଷୀଙ୍କୁ ୫୦ଭାଗ ରିହାତି ଦରରେ ବିହନ ଯୋଗାଇ ଦିଆଯିବ ଏବଂ ସବୁ ଲୋକଙ୍କୁ ବି.ପି.ଏଲ୍. ଚାଉଳ ଯୋଗାଇ ଦିଆଯିବ । ଯେଉଁ ଚାଷୀମାନେ କୃଷିବୀମା କରିନଥିବେ, ସେମାନଙ୍କୁ କ୍ଷତିପୂରଣ ଦେବାପାଇଁ କେନ୍ଦ୍ର ଓ ବୀମା କମ୍ପାନୀକୁ ଲେଖାଯିବ । ପ୍ରତ୍ୟେକ କ୍ଷତିଗ୍ରସ୍ତ ପରିବାରକୁ ବିନାସୁଧରେ ୨୫ ହଜାର ଟଙ୍କା ଲେଖାଏଁ ଋଣ ଯୋଗାଇ ଦେବାପାଇଁ କେନ୍ଦ୍ର ସରକାର, ରିଜର୍ଭ ବ୍ୟାଙ୍କ ଓ ନାବାର୍ଡ଼କୁ ଲେଖାଯିବ । ୫ ହଜାର ଟଙ୍କା ଥିବା ଋଣକୁ ଛାଡ଼ କରିବା ଓ ୫ହଜାର ଟଙ୍କାରୁ ଊର୍ଦ୍ଧ୍ୱ ଋଣକୁ ମିଆଦି ଋଣରେ ପରିଣତ କରିବା ପାଇଁ କେନ୍ଦ୍ର ସରକାରଙ୍କୁ ଲେଖାଯିବ । ଥଇଥାନ ଓ ପୁନର୍ନିର୍ମାଣ ପାଇଁ ଏକ ଉପକୂଳ ଅଞ୍ଚଳ ପରିଚାଳନା ଯୋଜନା କରାଯାଇ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ କେନ୍ଦ୍ର ସରକାର, ବିଶ୍ୱ ବ୍ୟାଙ୍କ, ଡି.ଏଫ.ଆଇ.ଡି. ଓ ଆନ୍ତର୍ଜାତୀୟ ଅର୍ଥଲଗାଣକାରୀ ସଂସ୍ଥାକୁ ଅନୁଦାନ ଓ ମିଆଦୀ ଋଣ ଦେବା ପାଇଁ ଅନୁରୋଧ କରାଯିବ ।

ଗୋପାଳପୁରରୁ ବାଲେଶ୍ୱର ପର୍ଯ୍ୟନ୍ତ ଏକ ଉପକୂଳ ରାଜପଥ ନିର୍ମାଣ ପାଇଁ କେନ୍ଦ୍ର ସରକାରଙ୍କୁ ଲେଖାଯିବ । ବାତ୍ୟା ଓ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ଲୋକଙ୍କ ଥଇଥାନ ପାଇଁ ବହୁମୁଖୀ ଗୃହ ନିର୍ମାଣ କରାଯିବ । ବିଭିନ୍ନ କିସମର ବିହନ ଉପରୁ ମଧ୍ୟ ୨୦୦୦ ମସିହା ମାର୍ଚ୍ଚମାସ ଶେଷପର୍ଯ୍ୟନ୍ତ ବିକ୍ରୀକର, ପଣ୍ୟକର ବା ପ୍ରବେଶ କର ଛାଡ଼ କରାଯିବ । ଓ.ଏସ.ଏଫ୍.ସି. ପକ୍ଷରୁ ୧୦ ହଜାର ୟୁନିଟ୍ ପାଇଁ ଅର୍ଥଲଗାଣ କରାଯିବ । ୨୦୦୦ ମସିହା ମାର୍ଚ୍ଚମାସ ସୁଦ୍ଧା କ୍ଷତିଗ୍ରସ୍ତ ଅଞ୍ଚଳରେ ଥିବା ସମସ୍ତ ନଳକୂପକୁ କାର୍ଯ୍ୟକ୍ଷମ କରାଯିବ । ୨୦୦୦ ମସିହା ଜୁନମାସ ସୁଦ୍ଧା ସମସ୍ତ ଉଠାଜଳସେଚନ ପ୍ରକଳ୍ପ ଓ ମଧ୍ୟମ ଜଳସେଚନ ପ୍ରକଳ୍ପକୁ ମରାମତି କରାଯିବ । ଯେଉଁମାନଙ୍କର ୫୦ଭାଗ ଫସଲ ନଷ୍ଟ ହୋଇଥିବ, ସେମାନଙ୍କୁ ୫୦ ଭାଗ ରିହାତିରେ ଜଳଯୋଗାଇ ଦିଆଯିବ । କିନ୍ତୁ ରବିଫସଲ ପାଇଁ ସମସ୍ତ ଚାଷୀଙ୍କୁ ୫୦ଭାଗ ରିହାତିରେ ଜଳ ଯୋଗାଇ ଦିଆଯିବ ।

# ଶତାବ୍ଦୀ ଶେଷର ସଂହାର-ଗାଥା : ମହାବାତ୍ୟା

ପୁରାଣରେ ଆମେ ପଢ଼ିଥିଲୁ ମହାପ୍ରଳୟର କାହାଣୀ । କିନ୍ତୁ ପ୍ରତ୍ୟକ୍ଷରେ ତାର ପ୍ରଳୟଙ୍କରୀ ଲୀଳା ଅଙ୍ଗେ ନିଭାଇଲୁ ଗତ ୧୯୯୯ ଅକ୍ଟୋବର ୨୯ ଓ ୩୦ ତାରିଖରେ । ୧୭ ତାରିଖର ଦାରୁଣ ବାତ୍ୟା ବିପର୍ଯ୍ୟୟର କ୍ଷତ ଗଞ୍ଜାମବାସୀଙ୍କ ଦେହରୁ ଶୁଖି ନାହିଁ । ହଠାତ୍ ମହାପ୍ରଳୟର ବିଭୀଷିକା ଧରି ଶତାବ୍ଦୀ ଶେଷର ମହାବାତ୍ୟା ଦୀର୍ଘ ୪୮ ଘଣ୍ଟା ଧରି ଅବିଶ୍ରାନ୍ତ ଭାବରେ ଆରମ୍ଭ କରିଦେଲା ଧ୍ୱଂସର ସଂହାର-ଲୀଳା । ମୃତ୍ୟୁର ତାଣ୍ଡବ ନୃତ୍ୟ ଭିତରେ ଅଭିଶପ୍ତ ଓଡ଼ିଶା ହୋଇଗଲା ଧ୍ୱସ୍ତ ବିଧ୍ୱସ୍ତ, ବିପର୍ଯ୍ୟସ୍ତ । ଉଜୁଡ଼ିଗଲା ସୁନାର ସଂସାର । ଅକାଳରେ ଝଡ଼ିଗଲେ ଅଗଣିତ ଅମୂଲ୍ୟ ପ୍ରାଣ । କେତେ ବସ୍ତି, ବସତି ହୋଇଗଲା ନିଶ୍ଚିହ୍ନ । ବଦଳିଗଲା ଗ୍ରାମର ମାନଚିତ୍ର । ଥାନ ଅଥାନରେ ଅଜାଡ଼ି ହୋଇପଡ଼ିଲା ମଣିଷ, ପଶୁମାନଙ୍କର କୁଢ଼ କୁଢ଼ ମଢ଼ ।

କାଳରାତ୍ରିର ଘନ ଅନ୍ଧାରରେ ବୁଡ଼ି ରହିଲା ସାରା ଓଡ଼ିଶା । ଚଉଦିଗରେ ଧ୍ୱଂସର ସ୍ତୂପ, ଶ୍ମଶାନର ଶୂନ୍ୟତା । ମଣିଷ ପାଲଟିଗଲା ମୂକ । ଧନ-ଜନ, ଅଶନ, ବସନ ସର୍ବସ୍ୱ ହରାଇ ସେ ହୋଇଗଲା ନିଃସ୍ୱ, ନିଃସହାୟ । ଧନୀ-ଗରିବ ସଭିଙ୍କୁ ଏ ମହାବାତ୍ୟା କରିଦେଲା ଏକାକାର । ଅନେକଶତର ଅଣତାଶ-୧୮୬୬ର ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶା ବକ୍ଷରେ ଲେଖି ଦେଇଗଲା ଦାରୁଣ ଦୁଃଖ, ଦୁର୍ଦ୍ଦଶା, ଶୋକ-ସନ୍ତାପର ବିଦଗ୍ଧ ଇତିହାସ ।

ବିଶ୍ୱରେ ଏଇଭି ଦୁର୍ଗତି ଓ ଦୁର୍ବିପାକର ଦୃଷ୍ଟାନ୍ତ ନାହିଁ । ଦୁଃଖ, ଯନ୍ତ୍ରଣାର ଅନ୍ତ ନାହିଁ । କ୍ଷୟ କ୍ଷତିର କଳନା ନାହିଁ । ବିପତ୍ତିର ଇତି ନାହିଁ ।

ଦେଶର ଅନ୍ୟାନ୍ୟ ଉନ୍ନତ ରାଜ୍ୟର ସମକକ୍ଷ ହୋଇ ସମୃଦ୍ଧିର ପଥରେ ଆଗେଇ ଚାଲିଥିବା ଓଡ଼ିଶା ଏହି ପ୍ରଳୟଙ୍କରୀ ମହାବାତ୍ୟାରେ କେତେ ବର୍ଷ ପଛକୁ ଚାଲିଗଲା । ଏହାର ପୁନର୍ଗଠନ ପାଇଁ କେତେ ବର୍ଷ ଲାଗିବ, କହିହେବ ନାହିଁ ।

ଓଡ଼ିଶାବାସୀଙ୍କ ଏ ଦୁର୍ଦ୍ଦିନରେ ଦେବଦୂତ ଭଳି ପଡ଼ୋଶୀ ରାଜ୍ୟ, ଦେଶ-ବିଦେଶର ସମ୍ବେଦନଶୀଳ ଶାସନ, ସେବା-ସଂଗଠନ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କର ଅଯାଚିତ ସାହାଯ୍ୟ, ସହାନୁଭୂତି ଓ ସମବେଦନା ବିପନ୍ନଙ୍କ ମନରେ ଆଣି ଦେଇଛି ଅହେତୁକ ଆଶା ଓ ଆତ୍ମବିଶ୍ୱାସର ଆଲୋକ ।

ରାଜ୍ୟରେ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାକୁ ସରକାର ଓ ବିଭିନ୍ନ ରାଜନୈତିକ ଦଳ ଏକ ମନ, ଏକ ପ୍ରାଣରେ ଚଳାଇଛନ୍ତି ରିଲିଫ, ଉଦ୍ଧାର ଓ ପୁନର୍ବାସନ କାର୍ଯ୍ୟ । କେନ୍ଦ୍ର ସରକାର ଏହି ବିପର୍ଯ୍ୟୟକୁ ଜାତୀୟ ବିପତ୍ତି ଭଳି ଗୁରୁତ୍ୱ ଦେଇ ରାଜ୍ୟର ପୁନର୍ଗଠନ ପାଇଁ ଅକୁଣ୍ଠିତ ସାହାଯ୍ୟ, ସହଯୋଗ ଯୋଗାଇ ଦେଉଛନ୍ତି । ବିପଦର ସାଥୀ ହୋଇ ଯେଉଁ ବଦାନ୍ୟ ବ୍ୟକ୍ତି ଓ ସମାଜସେବୀମାନେ ଦୂରଦୂରାନ୍ତରୁ ଆସି ବହୁ ଦୁଃଖ କଷ୍ଟ ସହି ବିପନ୍ନଙ୍କ ସେବା, ସହାୟତା କରୁଛନ୍ତି, ସେମାନଙ୍କ ନିକଟରେ ଓଡ଼ିଶାବାସୀ ଋଣୀ ରହିବେ । ସେମାନଙ୍କର ଏହି ସହାୟତା ପାଇଁ କୃତଜ୍ଞତା ଜଣାଇବାକୁ ଆମ ପାଖରେ ଭାଷା ନାହିଁ ।

## ମହାବାତ୍ୟାର ପୂର୍ବାଭାସ ଓ ଆଗୁଆ ପଦକ୍ଷେପ

ପାଣିପାଗ କାର୍ଯ୍ୟାଳୟରୁ ଅକ୍ଟୋବର ୨୮ ତାରିଖରେ ସୂଚନା ମିଳିଲା, ପାରାଦ୍ୱୀପଠାରେ ୫୦୦ କିଲୋମିଟର ଦକ୍ଷିଣ- ପୂର୍ବ ବଙ୍ଗୋପସାଗରରେ ଘନୀଭୂତ ଲଘୁଚାପ ସାମୁଦ୍ରିକ ଝଡ଼ରେ ପରିଣତ ହୋଇ କ୍ରମଶଃ ଉତ୍ତର-ପଶ୍ଚିମ ଦିଗକୁ ଗତି କରୁଛି । ଏହି ଝଡ଼ବାତ୍ୟା ଆସନ୍ତା ୪୮ ଘଣ୍ଟା ମଧ୍ୟରେ ରାଜ୍ୟର ଉପକୂଳବର୍ତ୍ତୀ ଅଞ୍ଚଳ ଅତିକ୍ରମ କରିବାର ସମ୍ଭାବନା ଅଛି । ଏହାର ପ୍ରଭାବରେ ପୁରୀ, କଟକ, ଭଦ୍ରକ, ବାଲେଶ୍ୱର, ଜଗତସିଂହପୁର, କେନ୍ଦ୍ରାପଡ଼ା ଓ ଯାଜପୁର ଜିଲ୍ଲାମାନଙ୍କରେ ଘଣ୍ଟାକୁ ୧୮୦ କିଲୋମିଟରରୁ ୨୦୦ କିଲୋମିଟର ବେଗରେ ପବନ ବହିବା ସଙ୍ଗେ ସଙ୍ଗେ ପ୍ରବଳରୁ ଅତି ପ୍ରବଳ ବର୍ଷା ହେବାର ସମ୍ଭାବନା ରହିଛି ।

ଏହି ସମ୍ଭାବ୍ୟ ପ୍ରାକୃତିକ ଦୁର୍ବିପାକର ମୁକାବିଲା କରିବା ନିମନ୍ତେ ଗତ ଅକ୍ଟୋବର ୨୮ ତାରିଖରେ ସଚିବାଳୟଠାରେ ମୁଖ୍ୟଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ରଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଥିଲା । ବୈଠକରେ ସଂପୃକ୍ତ ଜିଲ୍ଲା ପ୍ରଶାସନକୁ ସତର୍କ କରାଇ ଦିଆଯିବା ସଙ୍ଗେ ସଙ୍ଗେ ସମୁଦ୍ର କୂଳବର୍ତ୍ତୀ ଖାଲୁଆ ଅଞ୍ଚଳ ଓ କଚ୍ଚାଘରରେ ବସବାସ କରୁଥିବା ଲୋକମାନଙ୍କୁ ତୁରନ୍ତ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କରିବା, ଜିଲ୍ଲା ଓ ବ୍ଲକ୍ ସଦର ମହକୁମାରେ ଅତ୍ୟାବଶ୍ୟକ ସାମଗ୍ରୀ ଯଥା : ଚୂଡ଼ା, ଚାଉଳ, କିରୋସିନି, ମହମବତୀ, ଦିଆସିଲି ଓ ପଲିଥିନ ପ୍ରଭୃତି ମହଜୁଦ କରି ରଖିବା ଏବଂ ସମ୍ଭାବ୍ୟ କ୍ଷତିଗ୍ରସ୍ତ ଅଞ୍ଚଳମାନଙ୍କରେ ରିଲିଫ୍ ଓ ଉଦ୍ଧାର କାର୍ଯ୍ୟ ନିମନ୍ତେ ସାମରିକ ବାହିନୀର ସହାୟତା ନେବା ପାଇଁ ଆବଶ୍ୟକ ପଦକ୍ଷେପ ଗ୍ରହଣ କରାଯାଇ ରାଜ୍ୟ ପୋଲିସବାହିନୀ, ସାମରିକବାହିନୀ ଓ ଅର୍ଦ୍ଧ-ସାମରିକ ବାହିନୀକୁ ସଜାଗ ରହିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ବାତ୍ୟାର ଆଗୁଆ ସତର୍କ ସୂଚନା ରେଡ଼ିଓ ଓ ଟି.ଭି.ରେ ବାରମ୍ବାର ଜନସାଧାରଣଙ୍କୁ ଜଣାଇବା ପାଇଁ ଅନୁରୋଧ କରାଯାଇଥିଲା ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଉନ୍ନୟନ କମିଶନର ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ

ପ୍ରଦୀପ କୁମାର ମିଶ୍ର, ସ୍ୱତନ୍ତ୍ର ରିଲିଫ୍ କମିଶନର ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ଯୁଗଳ କିଶୋର ମହାପାତ୍ର, ପଞ୍ଚାୟତିରାଜ ଶାସନ ସଚିବ ଶ୍ରୀ ଚିନ୍ମୟ ବସୁ, ଯୋଗାଣ ବିଭାଗ ଶାସନ ସଚିବ ଶ୍ରୀ ଯୋଗେନ୍ଦ୍ର ପାତ୍ର, ଶକ୍ତି ବିଭାଗ ଶାସନ ସଚିବ ଶ୍ରୀ ପ୍ରିୟବ୍ରତ ପଟ୍ଟନାୟକ, ସୂଚନା ଓ ଲୋକ ସମ୍ପର୍କ ବିଭାଗ ଶାସନ ସଚିବ ଶ୍ରୀ ଜୟନ୍ତ କୁମାର ଦେବ ଓ ନିର୍ଦ୍ଦେଶକ ଶ୍ରୀ ଦୁର୍ଗାମାଧବ ଦାଶ ପ୍ରମୁଖ ଉଚ୍ଚ ପଦାଧିକାରୀମାନେ ଯୋଗ ଦେଇଥିଲେ ।

## ପ୍ରକୃତିର ପ୍ରଳୟ-ଲୀଳା

୨୯ ତାରିଖରୁ ମହାବାତ୍ୟା ସହିତ ୩/୪ ଦିନ କାଳ ଅବିଶ୍ରାନ୍ତ ବର୍ଷା ଲାଗି ରହିଲା । ଅକ୍ଟୋବର ୨୯ରୁ ନଭେମ୍ବର ୧ ତାରିଖ ସୁଦ୍ଧା ୪୦୦ରୁ ୮୬୭ ମିଲିମିଟର ବର୍ଷା ହୋଇଥିଲା । ୨୯ ତାରିଖ ଅପରାହ୍ନ ୧୨।୩୦ରେ ପାରାଦ୍ୱୀପଠାରେ ପବନର ବେଗ ଥିଲା ଘଣ୍ଟାକୁ ୩୦୦ କିଲୋମିଟର । ଏହି ମହାବାତ୍ୟା ଉତ୍ତର ଦିଗକୁ ଗତି କରି ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଖୋର୍ଦ୍ଧା, ନୟାଗଡ଼, ଢେଙ୍କାନାଳ ଓ ଯାଜପୁର ଜିଲ୍ଲାମାନଙ୍କରେ ଦୀର୍ଘ ୨୪ ଘଣ୍ଟା ଧରି ଚାଲିଲା ପ୍ରଚଣ୍ଡ ପ୍ରଳୟ ଲୀଳା । ବାତ୍ୟା ଆରମ୍ଭ ହେବା ସଙ୍ଗେ ସଙ୍ଗେ ବିଦ୍ୟୁତ୍ ଓ ଟେଲିଯୋଗାଯୋଗ ଛିନ୍ନ ହୋଇ ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକ ବାହାର ଜଗତରୁ ବିଚ୍ଛିନ୍ନ ହୋଇ ପଡ଼ିଲା ।

ମହାବାତ୍ୟା ସହିତ ବୈତରଣୀ, ବୁଢ଼ାବଳଙ୍ଗ ଓ ସାଳନ୍ଦୀରେ ପ୍ରବଳ ବନ୍ୟା ହୋଇ ଧନ-ଜୀବନର ପ୍ରଭୂତ କ୍ଷତି ଘଟିଲା ।

୨୬ ତାରିଖ ଅପରାହ୍ନରେ ସର୍ବପ୍ରଥମେ ବାତ୍ୟାର ଚେତାବନୀ ମିଳିବାପରେ ସମ୍ଭାବ୍ୟ ବାତ୍ୟା କବଳିତ ଜିଲ୍ଲାଗୁଡ଼ିକର ଜିଲ୍ଲାପାଳମାନଙ୍କୁ ବେତାର, ଫାକ୍ସ ଓ ବ୍ୟକ୍ତିଗତ ବାର୍ତ୍ତାବହ ମାଧ୍ୟମରେ ସତର୍କ କରି ଦିଆଯାଇଥିଲା । ଆସନ୍ନ ବିପର୍ଯ୍ୟୟର ମୁକାବିଲା ପାଇଁ ଜିଲ୍ଲାସ୍ତରୀୟ ଅଧିକାରୀ, ପୋଲିସ୍, ଟେଲିକମ୍ ଓ ପୋଲିସ ଯୋଗାଯୋଗ ବ୍ୟବସ୍ଥା ସଜାଗ ଓ ସକ୍ରିୟ ରହିବା ଦିଗରେ ପଦକ୍ଷେପ ନିଆଯାଇଥିଲା । ଉପକୂଳବର୍ତ୍ତୀ ୧୦କି.ମି. ଅଞ୍ଚଳରୁ ଲୋକଙ୍କୁ ଅନ୍ୟତ୍ର ସ୍ଥାନାନ୍ତରିତ କରିବାପାଇଁ ଜିଲ୍ଲାପାଳମାନଙ୍କୁ କୁହାଯାଇଥିଲା । ୨୮ ତାରିଖରୁ ଦୂରଦର୍ଶନ ଓ ଆକାଶବାଣୀରୁ ବାତ୍ୟା ସଂପର୍କିତ ବିଶେଷ ସମ୍ବାଦ ବୁଲେଟିନ୍ ଏକଘଣ୍ଟା ବ୍ୟବଧାନରେ ପ୍ରଚାର କରିବାର ବ୍ୟବସ୍ଥା ହୋଇଥିଲା । ସହର ଓ ଗ୍ରାମାଞ୍ଚଳର କଚ୍ଚାଘରେ ରହୁଥିବା ଲୋକଙ୍କୁ ସରକାରୀ କୋଠାବାଡ଼ି ଆଦି ନିରାପଦ ସ୍ଥାନମାନଙ୍କରେ ଆଶ୍ରୟ ନେବାକୁ ଏହି ବୁଲେଟିନ୍‌ରେ ଜଣାଇ ଦିଆଯାଉଥିଲା । ଏହାଫଳରେ ପୁରୀ, ଜଗତ୍‌ସିଂହପୁର, କେନ୍ଦ୍ରାପଡ଼ା ଓ ବାଲେଶ୍ୱର ଆଦି ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ପ୍ରାୟ ଦେଢ଼ଲକ୍ଷ ଲୋକଙ୍କୁ ସ୍ଥାନାନ୍ତରିତ କରାଯାଇପାରିଥିଲା ।

୨୯ ତାରିଖ ଭୋର ୫.୩୦ରେ ରାଜ୍ୟ ପ୍ରଶାସନ ମହାବାତ୍ୟାର ସମ୍ବାଦ ପାଇ ସଙ୍ଗେ ସଙ୍ଗେ ଜିଲ୍ଲାପାଳମାନଙ୍କୁ ଜଣାଇଦେଇଥିଲେ । କିନ୍ତୁ ସକାଳ ସାଢ଼େ ସାତଟାରୁ କଟକ ଛଡ଼ା ପ୍ରାୟ ସବୁ ଜିଲ୍ଲା ସହିତ ଟେଲିଫୋନ ସଂଯୋଗ ବିଚ୍ଛିନ୍ନ ହୋଇ ଯିବାରୁ ପରିସ୍ଥିତି ଅଣାୟତ୍ତ ହୋଇପଡ଼ିଥିଲା ।

## ୧୦୧ ଟି ବ୍ଲକ ଏବଂ ୨୬ଟି ପୌରାଞ୍ଚଳ କ୍ଷତିଗ୍ରସ୍ତ

ଏହି ବାତ୍ୟାରେ ଉପକୂଳବର୍ତ୍ତୀ ୧୨ଟି ଜିଲ୍ଲାର ୧୦୧ ଟି ବ୍ଲକ, ୨୬ଟି ପୌରାଞ୍ଚଳ ଏବଂ ୭୯୨୧ ଟି ଗ୍ରାମର ପ୍ରଭୂତ କ୍ଷତି ଘଟିଛି ବୋଲି ପ୍ରାଥମିକ ରିପୋର୍ଟରୁ ଜଣାପଡ଼ିଛି ।

ପୁରୀ ଜିଲ୍ଲାର ୧୧ଟି ବ୍ଲକ୍, ଯଥା- କୃଷ୍ଣପ୍ରସାଦ, ବ୍ରହ୍ମଗିରି, ପୁରୀ ସଦର, ଗୋପ, କାକଟପୁର, ଅସ୍ତରଙ୍ଗ, ନିମାପଡ଼ା, ପିପିଲି, ଡେଲାଙ୍ଗ, କଣାସ, ସତ୍ୟବାଦୀ ବ୍ଲକ ସମେତ ପୁରୀ ପୌର ପରିଷଦ, ପିପିଲି, ନିମାପଡ଼ା ଓ କୋଣାର୍କ ବିଜ୍ଞାପିତ ଅଂଚଳ ପରିଷଦର ପ୍ରଭୂତ କ୍ଷତି ଘଟିଛି ।

କଟକ ଜିଲ୍ଲାର କଟକ ସଦର, ନିଆଳି, ସାଲେପୁର, ଟାଙ୍ଗି-ଚୌଦ୍ୱାର, ବାରଙ୍ଗ, କଣ୍ଟାପଡ଼ା, ନିଶ୍ଚିନ୍ତକୋଇଲି, ମାହାଙ୍ଗା, ଆଠଗଡ଼, ବଡ଼ମ୍ବା, ନରସିଂହପୁର, ବାଙ୍କୀ, ଡମପଡ଼ା, ତିଗିରିଆ ବ୍ଲକ୍ ଏବଂ କଟକ ମହାନଗର ନିଗମ, ଚୌଦ୍ୱାର ପୌର ପରିଷଦ, ବାଙ୍କୀ ଓ ଆଠଗଡ଼ ବିଜ୍ଞାପିତ ଅଂଚଳ ପରିଷଦ କ୍ଷତିଗ୍ରସ୍ତ ହୋଇଛି ।

କେନ୍ଦ୍ରାପଡ଼ା ଜିଲ୍ଲାର ମାର୍ଶାଘାଇ, ମହାକାଳପଡ଼ା, ଗରଦପୁର, ପଟ୍ଟାମୁଣ୍ଡାଇ, ରାଜନଗର, ଆଳି, ରାଜକନିକା, ଡେରାବିଶ୍, କେନ୍ଦ୍ରାପଡ଼ା ବ୍ଲକ୍ ଏବଂ କେନ୍ଦ୍ରାପଡ଼ା ପୌର ପରିଷଦ ଓ ପଟ୍ଟାମୁଣ୍ଡାଇ ବିଜ୍ଞାପିତ ଅଞ୍ଚଳ ପରିଷଦର କ୍ଷତି ଘଟିଛି ।

ନୟାଗଡ଼ ଜିଲ୍ଲାର କେବଳ ଦୁଇଟି ବ୍ଲକ୍, ଯଥା-ଭାପୁର ଓ ରଣପୁର ବ୍ଲକ୍‌ର କ୍ଷତି ଘଟିଛି ।

ଖୋର୍ଦ୍ଧା ଜିଲ୍ଲାର ଭୁବନେଶ୍ୱର ମହାନଗର ନିଗମ, ଜଟଣୀ ଓ ଖୋର୍ଦ୍ଧା ବିଜ୍ଞାପିତ ଅଞ୍ଚଳ ପରିଷଦ ଏବଂ ଭୁବନେଶ୍ୱର, ଜଟଣୀ, ବାଲିପାଟଣା, ବାଲିଅନ୍ତା, ଖୋର୍ଦ୍ଧା, ବେଗୁନିଆ, ବୋଲଗଡ଼ ଓ ଟାଙ୍ଗୀ ବ୍ଲକ୍ କ୍ଷତିଗ୍ରସ୍ତ ହୋଇଛି ।

ଭଦ୍ରକ୍ ଜିଲ୍ଲାର ଭଦ୍ରକ ପୌର ପରିଷଦ, ବାସୁଦେବପୁର ବିଜ୍ଞାପିତ ଅଞ୍ଚଳ ପରିଷଦ ଏବଂ ଭଦ୍ରକ, ବନ୍ତ, ବାସୁଦେବପୁର, ତିହିଡ଼ି, ଚାନ୍ଦବାଲି, ଧାମନଗର ଓ ଭଣ୍ଡାରୀପୋଖରୀ ବ୍ଲକ୍ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଛି ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ବିଜ୍ଞାପିତ ଅଞ୍ଚଳ ପରିଷଦ ଏବଂ ଆନନ୍ଦପୁର, ହାଟଡିହି ଓ ଘସିପୁରା ବ୍ଲକ୍ କ୍ଷତିଗ୍ରସ୍ତ ହୋଇଛି ।

ଢେଙ୍କାନାଳ ଜିଲ୍ଲାର ଢେଙ୍କାନାଳ ପୌର ପରିଷଦ, ଭୁବନ ଏବଂ ହିନ୍ଦୋଳ, କାମାକ୍ଷାନଗର ବିଜ୍ଞାପିତ ଅଞ୍ଚଳ ପରିଷଦ ସମେତ ହିନ୍ଦୋଳ, କାମାକ୍ଷାନଗର, ପରଜଙ୍ଗ ଢେଙ୍କାନାଳ, କଙ୍କଡ଼ାହାଡ଼, ଭୁବନ, ଓଡ଼ାପଡ଼ା ଓ ଗନ୍ଦିଆ ବ୍ଲକ୍ ଏହି ପ୍ରଳୟଙ୍କାରୀ ବାତ୍ୟାରେ କ୍ଷତିଗ୍ରସ୍ତ ହୋଇଥିବା ଜଣାପଡ଼ିଛି ।

ଜଗତ୍‌ସିଂହପୁର ଜିଲ୍ଲାର ଜଗତ୍‌ସିଂହପୁର, ପାରାଦ୍ୱୀପ ବିଜ୍ଞାପିତ ଅଂଚଳ ପରିଷଦ ଏବଂ ଜଗତ୍‌ସିଂହପୁର, ରଘୁନାଥପୁର, ବିରିଡ଼ି, ବାଲିକୁଦା, ନାଉଗାଁ, ତିର୍ତ୍ତୋଲ, କୁଜଙ୍ଗ ଓ ଏରସମା ବ୍ଲକ୍ କ୍ଷତିଗ୍ରସ୍ତ ହୋଇଛି ।

ଯାଜପୁର ଜିଲ୍ଲାର ଯାଜପୁର, ବିଂଝାରପୁର, କୋରେଇ, ବରୀ, ଦଶରଥପୁର, ସୁକିନ୍ଦା, ଦାନଗଦୀ, ଧର୍ମଶାଳା, ବଡ଼ଚଣା ଓ ରସୁଲପୁର ବ୍ଲକ କ୍ଷତିଗ୍ରସ୍ତ ହୋଇଛି ।

ବାଲେଶ୍ୱର ଜିଲ୍ଲାର ବାଲେଶ୍ୱର, ରେମୁଣା, ବାହାନଗା, ସୋର, ସିମୁଳିଆ, ଖଇରା, ନୀଳଗିରି, ଔପଦା, ବସ୍ତା, ବାଲିଆପାଳ, ଭୋଗରାଇ ଓ ଜଳେଶ୍ୱର ବ୍ଲକ୍ ସମେତ ବାଲେଶ୍ୱର ପୌର ପରିଷଦ ଏବଂ ସୋର ଓ ନୀଳଗିରି ବିଜ୍ଞାପିତ ଅଞ୍ଚଳ ପରିଷଦର କ୍ଷତି ହୋଇଛି ।

ମୟୂରଭଞ୍ଜ ଜିଲ୍ଲାର ବଡ଼ସାହି, ଶାମାଖୁଣ୍ଟା, ବେତନଟୀ, ଜଶୀପୁର, ଠାକୁରମୁଣ୍ଡା, ଉଦଳା, କପ୍ତିପଦା, ଗୋପବନ୍ଧୁ ନଗର ଓ ଖୁଣ୍ଟା ବ୍ଲକର ପ୍ରଚୁର କ୍ଷତି ଘଟିଥିବା ଜଣାଯାଇଛି ।

ଏଠାରେ ସୂଚନା ଦିଆଯାଇପାରେ ଯେ ଅକ୍ଟୋବର ୧୭-୧୮ ତାରିଖରେ ହୋଇଥିବା ବାତ୍ୟାରେ ଗଂଜାମ ଜିଲ୍ଲାର ରଙ୍ଗେଇଲୁଣ୍ଡା, କୁକୁଡ଼ାଖଣ୍ଡି, ଦିଗପହଣ୍ଡି, ସାନଖେମଣ୍ଡି, ଚିକିଟି, ପାତ୍ରପୁର, ଛତ୍ରପୁର, ଗଞ୍ଜାମ, ଖଲ୍ଲିକୋଟ୍, କୋଦଳା, ପୁରୁଷୋତ୍ତମପୁର, ହିଞ୍ଜିଳିକାଟୁ, ପୋଲସରା, କବିସୂର୍ଯ୍ୟନଗର, ଭଞ୍ଜନଗର, ବେଲଗୁଣ୍ଠା, ଜଗନ୍ନାଥ ପ୍ରସାଦ, ବୁଗୁଡ଼ା, ଆସିକା, ସେରଗଡ଼, ଧରାକୋଟ ଓ ସୋରଡ଼ା, ରମ୍ଭା, ହିଞ୍ଜିଳିକାଟୁ, ଗୋପାଳପୁର, ବୁଗୁଡ଼ା, ପୋଲସରା, କୋଦଳା, ଦିଗପହଣ୍ଡି, ଚିକିଟି, ପୁରୁଷୋତ୍ତମପୁର, ଖଲ୍ଲିକୋଟ୍, ବେଲଗୁଣ୍ଠା ଓ ଗଞ୍ଜାମ ବିଜ୍ଞାପିତ ଅଞ୍ଚଳ ପରିଷଦର ବିପୁଳ କ୍ଷତି ଘଟିଛି ।

ଗଜପତି ଜିଲ୍ଲାର କାଶୀନଗର, ପାରଳାଖେମୁଣ୍ଡି, ରାୟଗଡ଼ା, ଗୁମ୍ମା, ନୂଆଗଡ଼, ଆର୍. ଉଦୟଗିରି ଓ ମୋହନା ବ୍ଲକ୍ କ୍ଷତିଗ୍ରସ୍ତ ହୋଇଛି ।

ଯାଜପୁର ଜିଲ୍ଲାର ଯାଜପୁର ପୌର ପରିଷଦ ଓ ଯାଜପୁର ରୋଡ୍ ବିଜ୍ଞାପିତ ଅଞ୍ଚଳ ପରିଷଦ କ୍ଷତିଗ୍ରସ୍ତ ହୋଇଛି ।

## ବାତ୍ୟା ଦ୍ୱାରା ରାଜ୍ୟର ୧୬,୭୦,୭୨୩ ହେକ୍ଟର ଜମିର ଧାନଚାଷ କ୍ଷତି

ନଭେମ୍ବର ୧୮ ତାରିଖ ସୁଦ୍ଧା ବାତ୍ୟାଜନିତ କ୍ଷୟକ୍ଷତିର ପ୍ରାଥମିକ ରିପୋର୍ଟ ଅନୁଯାୟୀ ୧୨ଟି ଜିଲ୍ଲାର ୧୬,୭୦,୭୨୩ ହେକ୍ଟର ଜମିର ଧାନଚାଷ ନଷ୍ଟ ହୋଇଥିବା ବେଳେ ୩୨,୯୫୬ ହେକ୍ଟର ଜମିର ପନିପରିବା ଜାତୀୟ ଫସଲ ସଂପୂର୍ଣ୍ଣ ଭାବେ କ୍ଷତି ଘଟିଛି । ଏଥିମଧ୍ୟରୁ ବାଲେଶ୍ୱର ଜିଲ୍ଲାରେ ସର୍ବାଧିକ ୨,୧୯,୧୩୫ ହେକ୍ଟର ଜମିର ଧାନଚାଷ ବ୍ୟାପକ କ୍ଷତି ଘଟିଥିବାର ଜଣାପଡ଼ିଛି । ପୁରୀ ଜିଲ୍ଲାରେ ୧,୫୨,୮୨୦ ହେକ୍ଟର ଧାନଚାଷ, ୯୮୪୫ ହେକ୍ଟର ପନିପରିବା ଜାତୀୟ ଫସଲର କ୍ଷତି ହୋଇଥିବା ବେଳେ କଟକ ଜିଲ୍ଲାରେ ୧,୯୬,୮୮୩ ହେକ୍ଟର ଜମିର ଧାନଚାଷ ସଂପୂର୍ଣ୍ଣ ନଷ୍ଟ ହୋଇଛି । କେନ୍ଦ୍ରାପଡ଼ା ଜିଲ୍ଲାରେ ୧,୬୨,୮୩୨ ହେକ୍ଟର ଧାନଚାଷ, ନୟାଗଡ଼ ଜିଲ୍ଲାରେ ୭୬,୦୭୨ ହେକ୍ଟର ଧାନ ଓ ୩୧୪୦ ହେକ୍ଟର ଜମିର ପନିପରିବା ଜାତୀୟ ଫସଲ ନଷ୍ଟ ହୋଇଛି ।

ଖୋର୍ଦ୍ଧା ଜିଲ୍ଲାରେ ୭୪,୩୦୭ ହେକ୍ଟର ଜମିର ଧାନ ଓ ୫୭୨୮ ହେକ୍ଟର ଜମିର ବିଭିନ୍ନ ପ୍ରକାର ପନିପରିବା ନଷ୍ଟ ହୋଇଥିବା ବେଳେ ଭଦ୍ରକ ଜିଲ୍ଲାରେ ୧,୮୩,୧୮୩ ହେକ୍ଟର ଜମିର ଧାନ ଫସଲ ନଷ୍ଟ ହୋଇଛି ।

କେନ୍ଦୁଝର ଜିଲ୍ଲାରେ ୧,୦୬,୭୪୦ ହେକ୍ଟର ଜମିର ଧାନ ଓ ୧୪,୨୪୩ ହେକ୍ଟର ଜମିର ଅନ୍ୟ ଜାତୀୟ ଫସଲ ନଷ୍ଟ ହୋଇଛି ।

ଢେଙ୍କାନାଳ ଜିଲ୍ଲାରେ ୧,୨୫,୪୨୨ ହେକ୍ଟର ଜମିର, ଜଗତସିଂହପୁର ଜିଲ୍ଲାରେ ୧,୦୦,୫୦୫ ହେକ୍ଟର, ଯାଜପୁର ଜିଲ୍ଲାରେ ୧,୮୭,୭୭୫ ହେକ୍ଟର ଏବଂ ମୟୂରଭଞ୍ଜ ଜିଲ୍ଲାରେ ୮୫,୦୪୯ ହେକ୍ଟର ଜମିର ଧାନଫସଲ କ୍ଷତି ଘଟିଛି ।

## ୧୪,୮୬,୫୯୫ ବାସଗୃହ କ୍ଷତିଗ୍ରସ୍ତ ଏବଂ ୩,୭୦,୨୯୭ଟି ଗୃହପାଳିତ ପଶୁଙ୍କ ମୃତ୍ୟୁ

ପ୍ରଳୟଙ୍କରୀ ସାମୁଦ୍ରିକ ଝଡ଼ ଓ ବନ୍ୟା ଦ୍ୱାରା ରାଜ୍ୟର ୧୪,୮୬,୫୯୫ଟି ବାସଗୃହ ସଂପୂର୍ଣ୍ଣ ଏବଂ ଆଂଶିକ ଭାବେ କ୍ଷତି ଘଟିଥିବାବେଳେ କଟକ ଜିଲ୍ଲାରେ ସର୍ବାଧିକ ୪,୩୩,୦୦୦ ଟି ବାସଗୃହର କ୍ଷତି ଘଟିଛି । ନଭେମ୍ବର ୧୮ ତାରିଖ ସୁଦ୍ଧା ମିଳିଥିବା ରିପୋର୍ଟ ଅନୁଯାୟୀ ସର୍ବମୋଟ୍ ୩,୭୦,୨୯୭ଟି ଗୃହପାଳିତ ପଶୁ ମୃତ୍ୟୁବରଣ କରିଥିବା ବେଳେ କେବଳ ଜଗତସିଂହପୁର ଜିଲ୍ଲାରେ ଗୃହପାଳିତ ପଶୁଙ୍କର ମୃତ୍ୟୁସଂଖ୍ୟା ୧,୧୦,୬୮୨ । ପୁରୀ ଜିଲ୍ଲାରେ ୧୦,୮୦୪ଟି, କେନ୍ଦ୍ରାପଡ଼ା ଜିଲ୍ଲାରେ ୬୫,୮୦୨ଟି, କେନ୍ଦୁଝର ଜିଲ୍ଲାରେ ୫୫,୨୦୦ଟି, ନୟାଗଡ଼ ଜିଲ୍ଲାରେ ୧୧,୧୯୦ଟି, ଖୋର୍ଦ୍ଧା ଜିଲ୍ଲାରେ ୯୫,୫୪୦ ଟି, ଭଦ୍ରକ ଜିଲ୍ଲାରେ ୨,୫୦,୦୦୦ଟି, ଯାଜପୁର ଜିଲ୍ଲାରେ ୧,୧୨,୬୧୦ ଟି, ବାଲେଶ୍ୱର ଜିଲ୍ଲାରେ ୯୨,୦୪୦ ଟି ଏବଂ ମୟୂରଭଞ୍ଜ ଜିଲ୍ଲାରେ ୯,୦୦୦ଟି ବାସଗୃହ କ୍ଷତିଗ୍ରସ୍ତ ହୋଇଥିବା ବେଳେ ପୁରୀ ଜିଲ୍ଲାରେ ୫୨,୭୬୪ଟି, କଟକ ଜିଲ୍ଲାରେ ୪୪,୧୩୭ଟି, କେନ୍ଦ୍ରାପଡ଼ା ଜିଲ୍ଲାରେ ୨୪,୨୦୭ଟି, ଖୋର୍ଦ୍ଧା ଜିଲ୍ଲାରେ ୫୩,୭୦୪ଟି, ଭଦ୍ରକ ଜିଲ୍ଲାରେ ୯୭୬୭ଟି, କେନ୍ଦୁଝର ଜିଲ୍ଲାରେ ୭୬୭୭ଟି, ଢେଙ୍କାନାଳ ଜିଲ୍ଲାରେ ୧୧,୦୨୭ଟି, ଯାଜପୁର ଜିଲ୍ଲାରେ ୧୭,୦୦୦ଟି, ବାଲେଶ୍ୱର ଜିଲ୍ଲାରେ ୩୮,୭୭୮ଟି ଏବଂ ମୟୂରଭଞ୍ଜ ଜିଲ୍ଲାରେ ୫୫୫ଟି ଗୃହପାଳିତ ପଶୁଙ୍କର ମୃତ୍ୟୁ ଘଟିଛି ।

## ରବି କାର୍ଯ୍ୟକ୍ରମ ପାଇଁ ସହାୟତା ନିମନ୍ତେ ସ୍ୱତନ୍ତ୍ର ରାଜ୍ୟସ୍ତରୀୟ ବ୍ୟାଙ୍କର୍ସ ମିଟ୍

ରାଜ୍ୟର ବାତ୍ୟା ବିପର୍ଯ୍ୟସ୍ତ ଅଞ୍ଚଳରେ ରବି କାର୍ଯ୍ୟକ୍ରମ ନିମନ୍ତେ ସହାୟତା ଯୋଗାଇଦେବା ପାଇଁ ୟୁକୋବ୍ୟାଙ୍କର ଆବାହକତ୍ୱରେ ରାଜ୍ୟସ୍ତରୀୟ ବ୍ୟାଙ୍କର୍ସମାନଙ୍କର ଏକ ସ୍ୱତନ୍ତ୍ର ବୈଠକ ଗତ ନଭେମ୍ବର ୧୮ ତାରିଖରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ହୋଇଯାଇଛି । ଏହି ବୈଠକରେ ଉଦ୍‌ବୋଧନ ଦେଇ ରାଜସ୍ୱମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ ସାମ୍ପ୍ରତିକ ପରିସ୍ଥିତିକୁ ଏକ ଆହ୍ୱାନ ଭାବେ ଗ୍ରହଣ କରି କ୍ଷତିଗ୍ରସ୍ତ ଅଞ୍ଚଳର ବିକାଶ ତଥା ରବିଚାଷ ପାଇଁ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିବାକୁ

ପରାମର୍ଶ ଦେଇଥିଲେ । ଏହି ବୈଠକ ବିପନ୍ନ ଅଂଚଳର ଲୋକମାନଙ୍କ ମଧ୍ୟରେ ନୂତନ ଆଶା ସଂଚାର କରିବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ଅର୍ଥମନ୍ତ୍ରୀ ଶ୍ରୀ ପଟ୍ଟନାୟକ ତାଙ୍କର ଅଭିଭାଷଣରେ ସେବା ମନୋବୃତ୍ତି ତଥା ମାନବବାଦୀ ଚିନ୍ତାଧାରା ସହିତ ବିପନ୍ନ ଲୋକମାନଙ୍କୁ ଋଣ ଯୋଗାଇ ଦେବା ପାଇଁ ପଦକ୍ଷେପ ନେବାକୁ ବ୍ୟାଙ୍କର୍ସମାନଙ୍କୁ ପରାମର୍ଶ ଦେଇଥିଲେ । ପ୍ରତ୍ୟେକ ବ୍ୟାଙ୍କ ବା କେତେକ ବ୍ୟାଙ୍କ୍ ମିଳିତ ଭାବରେ ଗୋଟିଏ ଗୋଟିଏ ଜିଲ୍ଲାରେ କୃଷିର ବିକାଶ ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନେବାକୁ ଅର୍ଥମନ୍ତ୍ରୀ ପରାମର୍ଶ ଦେଇଥିଲେ ଏବଂ ଋଣ ପରିଶୋଧ ସମୟ ବୃଦ୍ଧି ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ସ୍ୱତନ୍ତ୍ର ମୁଖ୍ୟ ଶାସନ ସଚିବ ତଥା କୃଷି ଉତ୍ପାଦନ କମିଶନର ଶ୍ରୀ ଭବାନୀମୋହନ ସେନାପତି କହିଲେ ଯେ ସାମ୍ପ୍ରତିକ ବାତ୍ୟାରେ ଲୋକମାନେ ସେମାନଙ୍କର ସବୁକିଛି ହରାଇ ଥିବାରୁ ଋଣ ଦେବା ସମୟରେ ବ୍ୟାଙ୍କମାନେ ଅତ୍ୟନ୍ତ କୋହଳ ମନୋଭାବ ନେଇ କାର୍ଯ୍ୟ କରିବା ଉଚିତ୍ । ବାତ୍ୟାରେ ଲୋକମାନଙ୍କର ଜମିପଟ୍ଟା ହଜିଯାଇଥିବାରୁ ଗ୍ରାମସେବକ ରେଜିଷ୍ଟର ଅନୁସାରେ ଋଣ ଦେବା ସହିତ କିଶାନ କାର୍ଡ଼ଧାରୀ ଏବଂ ବିନା କିଶାନ କାର୍ଡ଼ଧାରୀମାନଙ୍କୁ ଋଣ ପ୍ରଦାନ କରିବାକୁ ସେ ଅନୁରୋଧ କରିଥିଲେ ।

ଅତିରିକ୍ତ ମୁଖ୍ୟ ଶାସନ ସଚିବ (ଅର୍ଥ) ଶ୍ରୀ ପି.କେ.ମିଶ୍ର କୃଷି ଶିଳ୍ପ ନିଗମ ପରି ରାଜ୍ୟର ସାଧାରଣ ଉଦ୍ୟୋଗଗୁଡ଼ିକୁ କାର୍ଯ୍ୟକାରୀ ପୁଞ୍ଜି ଯୋଗାଇ ଦେବା ନିମନ୍ତେ ପରାମର୍ଶ ଦେଇଥିଲେ । ୟୁକୋବ୍ୟାଙ୍କର କାର୍ଯ୍ୟ ନିର୍ବାହୀ ନିର୍ଦ୍ଦେଶକ ସ୍ୱାଗତ ଭାଷଣ ଦେଇଥିଲେ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ବିଭିନ୍ନ ବିଭାଗର ଶାସନ ସଚିବ, ରିଜର୍ଭ ବ୍ୟାଙ୍କର ଆଂଚଳିକ ମ୍ୟାନେଜର ଓ ନାବାର୍ଡ଼ ସମେତ ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କର ପଦସ୍ଥ କର୍ମକର୍ତ୍ତାମାନେ ଯୋଗ ଦେଇଥିଲେ ।

# ପୁନଃବାସନ ଓ ପୁନର୍ଗଠନ

## ରାଜ୍ୟରେ ରିଲିଫ୍ ପ୍ରଶାସନ ବ୍ୟବସ୍ଥାର ଢାଞ୍ଚାଗତ ପରିବର୍ତ୍ତନ ହେବ

ରାଜ୍ୟର ରିଲିଫ୍, ପ୍ରଶାସନ ବ୍ୟବସ୍ଥାର ଢାଞ୍ଚାଗତ ପରିବର୍ତ୍ତନ କରାଯିବ ବୋଲି ସ୍ଥିର ହୋଇଛି । ଏହା ଫଳରେ ରିଲିଫ୍, ଥଇଥାନ ଓ ପୁନର୍ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇ ପାରିବ ବୋଲି କୁହାଯାଇଛି ।

ରାଜ୍ୟ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କ ଅଧ୍ୟକ୍ଷତାରେ ଗତ ନଭେମ୍ବର ୨୧ ତାରିଖରେ ଅନୁଷ୍ଠିତ ବୈଠକରେ ରାଜ୍ୟ ମନ୍ତ୍ରିମଣ୍ଡଳର ସଦସ୍ୟବୃନ୍ଦ ଓ ଉଚ୍ଚପଦସ୍ଥ ଅଫିସରମାନେ ଉପସ୍ଥିତ ଥିଲେ । ପ୍ରଳୟଙ୍କରୀ ବାତ୍ୟାବିପର୍ଯ୍ୟୟର ସମ୍ମୁଖୀନ ହେବା ପାଇଁ ରାଜ୍ୟ ସରକାର ଗ୍ରହଣ କରିଥିବା ପଦକ୍ଷେପକୁ ବୈଠକରେ ପ୍ରଶଂସା କରାଯାଇଥିଲା ।

ରିଲିଫ୍, ପ୍ରଶାସନ ବ୍ୟବସ୍ଥାର ଢାଞ୍ଚାଗତ ପରିବର୍ତ୍ତନ ସମ୍ପର୍କରେ ସୂଚନା ଦେଇ ମୁଖ୍ୟମନ୍ତ୍ରୀ ଡକ୍ଟର ଗମାଙ୍ଗ କହିଲେ ଯେ, ଏହି କାର୍ଯ୍ୟ ପାଇଁ ଏକ ଅଥରିଟି ଗଠନ କରାଯିବା ଉଚିତ ହେବ । ରିଲିଫ୍ ଓ ଥଇଥାନ ପାଇଁ ଆସୁଥିବା ଅର୍ଥ ଏହି ଅଥରିଟି ଗ୍ରହଣ କରିବ ଏବଂ ରିଲିଫ୍, ଥଇଥାନ ଓ ପୁନଃନିର୍ମାଣ କାର୍ଯ୍ୟ କରିବ । ଅଥରିଟି ଏହି କାର୍ଯ୍ୟ ସରକାରୀ ସଂସ୍ଥା ଜରିଆରେ କରିପାରିବ କିମ୍ବା ଅନ୍ୟ ସଂସ୍ଥାମାନଙ୍କୁ ଦେଇପାରିବ । ବର୍ତ୍ତମାନ ସ୍ୱତନ୍ତ୍ର ରିଲିଫ୍, କମିଶନର ସମସ୍ତ ରିଲିଫ୍ ଓ ଥଇଥାନ କାର୍ଯ୍ୟ ପାଇଁ ସମନ୍ୱୟ ରକ୍ଷା କରୁଛନ୍ତି । ତେଣୁ ଏହି ବ୍ୟବସ୍ଥାକୁ ଦୃଢ଼ କରିବାର ଆବଶ୍ୟକତା ପଡ଼ିଛି ।

ବୈଠକରେ ନିଷ୍ପତ୍ତି ଅନୁଯାୟୀ ଜିନିଷପତ୍ର ସଂଗ୍ରହ କରିବା, ଯୋଗାଣ ଓ ବଣ୍ଟନ କରିବା ପ୍ରଭୃତି ପାଞ୍ଚଟି ଉପବିଭାଗ ଗଠନ କରାଯିବ ଏବଂ ପ୍ରତ୍ୟେକ ଉପବିଭାଗ ଦାୟିତ୍ୱ ଜଣେ ଲେଖାଏଁ ଅତିରିକ୍ତ ଶାସନ ସଚିବଙ୍କ ଉପରେ ନ୍ୟସ୍ତ କରାଯିବ । ପ୍ରତ୍ୟେକ ଅତିରିକ୍ତ ଶାସନ ସଚିବଙ୍କୁ ସହାୟତା କରିବା ପାଇଁ ଅଧିକ ୪ରୁ ୫ ଜଣ ଲେଖାଏଁ ଅଫିସର ନିଯୁକ୍ତି ପାଇବେ । ବାତ୍ୟା ଓ ବନ୍ୟା ଦ୍ୱାରା ବିପନ୍ନ ହୋଇଥିବା ଜିଲ୍ଲାଗୁଡ଼ିକରେ ରିଲିଫ୍ ଓ ଥଇଥାନ କାର୍ଯ୍ୟ ଜଣେ ଜଣେ ମନ୍ତ୍ରୀ ଉପସ୍ଥିତ ରହି ତଦାରଖ କରିବେ । ଏହା ଫଳରେ ସବୁ ଅଞ୍ଚଳର ଖବର ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ସରକାରଙ୍କ ପାଖରେ ପହଞ୍ଚି ପାରିବ । ଶିବିରଗୃହ ନିର୍ମାଣ ତଥା ସଂଗେ ସଂଗେ ଅଫିସରମାନଙ୍କୁ ପଠାଇବା ସମ୍ଭବପର ହେବ ।

ମୁଖ୍ୟଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ ପ୍ରସ୍ତାବିତ ଢାଞ୍ଚାଗତ ପରିବର୍ତ୍ତନ ସଂପର୍କରେ ସୂଚନା ଦେଇଥିଲେ । ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ମଧ୍ୟରେ ସର୍ବଶ୍ରୀ କାହ୍ନୁଚରଣ ଲେଙ୍କା, ଭାଗବତ ପ୍ରସାଦ ମହାନ୍ତି, ଜଗନ୍ନାଥ ପଟ୍ଟନାୟକ ଓ ନିରଞ୍ଜନ ପଟ୍ଟନାୟକ ପ୍ରମୁଖ ଉପସ୍ଥିତ ଥିଲେ ।

## କେନ୍ଦ୍ରର ଆଉ ୩୦୦ କୋଟି ଟଙ୍କା ବାତ୍ୟା ସାହାଯ୍ୟ ମଞ୍ଜୁର

ଓଡ଼ିଶାର ବାତ୍ୟାବିଧ୍ୱସ୍ତ ଅଞ୍ଚଳରେ ବିପନ୍ନ ଲୋକଙ୍କ ଥଇଥାନ ଓ ଗୃହ ନିର୍ମାଣ ନିମନ୍ତେ କେନ୍ଦ୍ର ସରକାରଙ୍କ ପକ୍ଷରୁ ୩୦୦ କୋଟି ଟଙ୍କାର ସାହାଯ୍ୟ ମଞ୍ଜୁର କରାଯାଇଛି । କିନ୍ତୁ ଓଡ଼ିଶା ସରକାର ଏ ବାବଦରେ ୩୪୦ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରିଛନ୍ତି ।

କେନ୍ଦ୍ର ଅର୍ଥମନ୍ତ୍ରୀ ଯଶୋବନ୍ତ ସିହ୍ନା ଏହି ଅନୁଦାନ ସମ୍ପର୍କରେ ସାମ୍ବାଦିକମାନଙ୍କୁ ସୂଚନା ଦେଇ କହିଲେ, ଓଡ଼ିଶାର ବାତ୍ୟାବିଧ୍ୱସ୍ତ ଅଞ୍ଚଳରେ ରିଲିଫ୍ ଓ ଥଇଥାନ କାର୍ଯ୍ୟ ଲାଗି ରାଜ୍ୟ ସରକାରଙ୍କୁ ପର୍ଯ୍ୟାପ୍ତ ପରିମାଣର କେନ୍ଦ୍ରୀୟ ସହାୟତା ପ୍ରଦାନ ପାଇଁ କେନ୍ଦ୍ର ସରକାର ଅଙ୍ଗୀକାରବଦ୍ଧ । ବିପନ୍ନଙ୍କୁ ରିଲିଫ୍ ପ୍ରଦାନ ଓ ସେମାନଙ୍କ ଥଇଥାନ ଦିଗରେ ଅର୍ଥ କୌଣସି ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ । ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ ଅର୍ଥମନ୍ତ୍ରୀ ସିହ୍ନାଙ୍କୁ ସାକ୍ଷାତକରି ରିଲିଫ୍ କାର୍ଯ୍ୟ ସମ୍ପର୍କରେ ତାଙ୍କୁ ଅବଗତ କରାଇବା ପରେ ପରେ ଏହି ଅର୍ଥ ମଞ୍ଜୁର କରାଯାଇଥିଲା । ଅର୍ଥମନ୍ତ୍ରୀଙ୍କ ସହ ଆଲୋଚନା କାଳରେ ମୁଖ୍ୟମନ୍ତ୍ରୀ ଜଣାଇଥିଲେ ଯେ ପ୍ରଳୟଙ୍କରୀ ବାତ୍ୟାରେ ୧୬ଲକ୍ଷ ଘର ଭାଙ୍ଗିଛି । ଏ

ବାବଦରେ ବିପନ୍ନ ଲୋକଙ୍କୁ ଜରୁରୀ ସାହାଯ୍ୟ ପ୍ରଦାନ ନିମନ୍ତେ ୩୪୦ କୋଟି ଟଙ୍କା ଆବଶ୍ୟକ । କେନ୍ଦ୍ର ସରକାର ପୂର୍ବରୁ ମଞ୍ଜୁର କରିଥିବା ଅର୍ଥ ଅନ୍ୟ କାର୍ଯ୍ୟ ପାଇଁ ରଖାଯାଇଥିବାରୁ ଡଃ. ଗମାଙ୍ଗ ପୁନର୍ବାସନ ବ୍ୟବସ୍ଥା ଲାଗି ୩୦୦ କୋଟି ଟଙ୍କା ମାଗିଥିଲେ ଓ ଅର୍ଥମନ୍ତ୍ରୀ ସଙ୍ଗେ ସଙ୍ଗେ ତାହା ମଞ୍ଜୁର କରିଥିଲେ । ଡକ୍ଟର ଗମାଙ୍ଗ କହିଥିଲେ ଯେ ଏହି ଅର୍ଥକୁ ଯେପରି ଯଥାଶୀଘ୍ର ଉପଯୋଗ କରାଯାଇପାରିବ, ସେଥିଲାଗି ଉପଯୁକ୍ତ ସଂସ୍ଥା ସୃଷ୍ଟି କରାଯିବ ।

ଡଃ. ଗମାଙ୍ଗ ରିଲିଫ୍ ଓ ପୁନର୍ବାସନ କାର୍ଯ୍ୟରେ ସମନ୍ୱୟ ରକ୍ଷା ପାଇଁ ଗଠିତ ଉଚ୍ଚ କ୍ଷମତାପନ୍ନ ଟାସ୍କ ଫୋର୍ସର ଅଧ୍ୟକ୍ଷ ଜର୍ଜ ଫର୍ଣ୍ଣାଣ୍ଡିସ ଓ ଯୋଜନା କମିଶନର ଉପାଧ୍ୟକ୍ଷ କେ.ସି. ପନ୍ତଙ୍କୁ ମଧ୍ୟ ସାକ୍ଷାତ କରିଥିଲେ ।

ସେ କହିଥିଲେ ଯେ ବିପନ୍ନ ଲୋକଙ୍କୁ କେବଳ ଖାଦ୍ୟ ସାମଗ୍ରୀ ଯୋଗାଣ ନୁହେଁ, ଟାରପୁଲିନ୍, ଲୁଗାପଟା, କମ୍ବଳ ଓ ଔଷଧପତ୍ର ଯଥେଷ୍ଟ ପରିମାଣରେ ଯୋଗାଇ ଦେବା ଆବଶ୍ୟକ । ଅଧିକ କେନ୍ଦ୍ରୀୟ ସାହାଯ୍ୟ ତଥା ପୁନରୁଦ୍ଧାର କାର୍ଯ୍ୟ ଲାଗି ସେ ୧୦,୦୦୦ କୋଟି ଟଙ୍କାର ସହାୟତା ଲୋଡ଼ିଛନ୍ତି ।

ବାତ୍ୟାରେ ଗୃହ ନିର୍ମାଣ ବାବଦରେ ଏହି ୩ଶହ କୋଟି ଟଙ୍କାର ଆର୍ଥିକ ସହାୟତା ଗୃହନିର୍ମାଣ ଓ ସହରାଞ୍ଚଳ ବିକାଶ ନିଗମ (ହୁଡ଼କୋ) ଯୋଗାଇଦେବ । ହୁଡ଼କୋ ପକ୍ଷରୁ ଏ ସମ୍ପର୍କରେ କୁହାଯାଇଛି ଯେ, ଓଡ଼ିଶାର ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ରାଜ୍ୟ ସରକାରୀ କର୍ମଚାରୀମାନଙ୍କ ପାଇଁ ୬୦ ହଜାର ବାସଗୃହ ନିର୍ମାଣ ପାଇଁ ଅତିରିକ୍ତ ୩ଶହ କୋଟି ଟଙ୍କାର ଆର୍ଥିକ ସହାୟତା ପ୍ରଦାନ କରିବାକୁ ନିଷ୍ପତ୍ତି ନିଆଯାଇଛି । ଏହି ନିଷ୍ପତ୍ତିକୁ ହୁଡ଼କୋ ଅନୁମୋଦନ କରିଛି । ଏହା ପୂର୍ବରୁ ଓଡ଼ିଶାର ୧୨ଟି ବାତ୍ୟା କ୍ଷତିଗ୍ରସ୍ତ ଜିଲ୍ଲାରେ ୭୫ ହଜାର ଗୃହ ନିର୍ମାଣ ପାଇଁ ୧୮୭.୫୦ କୋଟି ଟଙ୍କାର କୋହଳ ଋଣ ସହାୟତା ପ୍ରଦାନ କରିବାକୁ ହୁଡ଼କୋ ଘୋଷଣା କରିଥିଲା । ଏହା ଫଳରେ ହୁଡ଼କୋ ଓଡ଼ିଶାର ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ମୋଟ ୧ଲକ୍ଷ ୩୫ ହଜାର ବାସଗୃହ ନିର୍ମାଣ ପାଇଁ ୪୮୭.୫୦ କୋଟି ଟଙ୍କା ଯୋଗାଇଦେବ । ଏଥିସହିତ ନିର୍ମାଣକେନ୍ଦ୍ର ଏବଂ ଆଦର୍ଶ ଗ୍ରାମ ପ୍ରତିଷ୍ଠା ଦିଗରେ ହୁଡ଼କୋ ୨୧୫ ଲକ୍ଷ ଟଙ୍କାର ଅନୁଦାନ ସହାୟତା ଯୋଗାଇଦେବ ।

## ଉପକୂଳ ଅଞ୍ଚଳରେ ସ୍ଥାୟୀ ବାତ୍ୟା ପ୍ରତିରୋଧକ ଘର ତିଆରି କରାଯିବ

ଓଡ଼ିଶାର ୪ ହଜାର ୮୦ କି.ମି. ଉପକୂଳ ଅଞ୍ଚଳରେ କ୍ରମାଗତ ଭାବେ ବାତ୍ୟା ଓ ବନ୍ୟା ଆଦି ପ୍ରାକୃତିକ ବିପର୍ଯ୍ୟୟ କାରଣରୁ ବହୁ ଧନଜୀବନ ସହ ଅପର୍ଯ୍ୟାପ୍ତ କ୍ଷତି ଘଟୁଅଛି । ଏହି ସବୁ ଅଞ୍ଚଳରେ ବୈଜ୍ଞାନିକ ପଦ୍ଧତିରେ ସ୍ଥାୟୀ ବାସଗୃହ ନିର୍ମାଣ କରିବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି ବୋଲି ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ କହିଛନ୍ତି ।

ଗତ ନଭେମ୍ବର ୧୫ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ଗମାଙ୍ଗ କେନ୍ଦ୍ରସଚିବାଳୟରେ ଏକ ଉଚ୍ଚସ୍ତରୀୟ ସମୀକ୍ଷା ବୈଠକରେ ଯୋଗଦେଇ କହିଥିଲେ ଯେ, ୨୮ ତାରିଖ ଦିନ ମହାପ୍ରଳୟଙ୍କରୀ ବାତ୍ୟାର ସୂଚନା ପାଇବା ସଙ୍ଗେ ସଙ୍ଗେ ସେ ସେନା ସହାୟତା ଲୋଡ଼ିଥିଲେ । ଅଭୂତପୂର୍ବ ବାତ୍ୟା ଫଳରେ ପାରାଦୀପଠାରୁ ବାଲେଶ୍ୱର, କଟକ, ଭୁବନେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଧ୍ୱଂସସ୍ତୂପରେ ପରିଣତ ହୋଇଥିବା ବେଳେ ବାତ୍ୟା ପରେ ପରେ ରାଜଧାନୀ ଭୁବନେଶ୍ୱରରେ ସଚଳ ଥିବା ଏକମାତ୍ର ଟେଲିଫୋନ୍‌ରେ ସେ ତୁରନ୍ତ ବିଭିନ୍ନ ରାଜ୍ୟ ସରକାର, କେନ୍ଦ୍ର ସରକାର ଓ ବିଦେଶୀ ସରକାରମାନଙ୍କୁ ସାହାଯ୍ୟ ପାଇଁ ଅନୁରୋଧ କରିଥିଲେ । ବାତ୍ୟାବିଧ୍ୱସ୍ତ ଅଞ୍ଚଳର ପୁନଃନିର୍ମାଣ ପାଇଁ ପ୍ରଚୁର ଆର୍ଥିକ ସମ୍ବଳ ଆବଶ୍ୟକ ଓ ଏଥିପାଇଁ କେନ୍ଦ୍ର ସରକାରଙ୍କ ସମେତ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କକୁ ଅନୁରୋଧ କରାଯାଇଛି ।

## ନାବାର୍ଡ଼ ପକ୍ଷରୁ ଅତିରିକ୍ତ ଶହେ କୋଟି ଟଙ୍କା ମଞ୍ଜୁର

ବାତ୍ୟା ଯୋଗୁଁ ଫସଲହାନି ହୋଇଥିବା ଦୃଷ୍ଟିରୁ ଓଡ଼ିଶା ପାଇଁ, ନାବାର୍ଡ଼ ଅତିରିକ୍ତ ୧୦୦ କୋଟି ୫ଲକ୍ଷ ଟଙ୍କାର ସ୍ୱଳ୍ପ ମିଆଦୀ ଋଣ ମଞ୍ଜୁର କରିଛି । ଏହି ଅତିରିକ୍ତ ସ୍ୱଳ୍ପମିଆଦୀ ଋଣ ସହିତ ନାବାର୍ଡ଼ର ଋଣ ପରିମାଣ ୩୧୧.୮୦ କୋଟି ଟଙ୍କାକୁ ବୃଦ୍ଧି ପାଇଛି ।

## ବାତ୍ୟାରେ ଗୃହଶୂନ୍ୟମାନଙ୍କ ପାଇଁ ଗୃହ ପୁନଃ ନିର୍ମାଣ ଓ ଥଇଥାନ ଯୋଜନା

ସମ୍ପ୍ରତି ଉପକୂଳବର୍ତ୍ତୀ ୧୨ଗୋଟି ଜିଲ୍ଲାରେ ମହାପ୍ରଳୟଙ୍କରୀ ବାତ୍ୟା ଓ ବନ୍ୟାରେ ଗୃହଶୂନ୍ୟ ଓ କ୍ଷତିଗ୍ରସ୍ତ ହୋଇଥିବା ଆର୍ଥିକ ଦୁର୍ବଳ ଶ୍ରେଣୀ ପରିବାରମାନଙ୍କ ପାଇଁ ଗୃହ ପୁନଃନିର୍ମାଣ ଓ ଥଇଥାନ ଯୋଜନା ଅନୁଯାୟୀ ଗଞ୍ଜାମ ଓ ଗଜପତି ଜିଲ୍ଲାକୁ ମିଶାଇ ମୋଟ ୭୫ ହଜାର ପକ୍କା ବାସଗୃହ ଯୋଗାଇ ଦେବାକୁ 'ହୁଡ଼କୋ' ୧୮୭.୫୦ କୋଟି ଟଙ୍କା ଋଣ ଆକାରରେ ଯୋଗାଇ ଦେଉଥିବା ବେଳେ ଏହି ଗୃହ ନିର୍ମାଣ କାର୍ଯ୍ୟ ଓଡ଼ିଶା ଗ୍ରାମ୍ୟ ଗୃହ ନିର୍ମାଣ ଉନ୍ନୟନ ନିଗମ ଦ୍ୱାରା କରାଯିବା ପାଇଁ ସ୍ଥିର କରାଯାଇଛି ।

ଗତ ନଭେମ୍ବର ୧୬ ତାରିଖରେ ପୂର୍ତ୍ତ, ନଗର ଉନ୍ନୟନ ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ସଚିବାଳୟଠାରେ ଉପରୋକ୍ତ କାର୍ଯ୍ୟର ସମୀକ୍ଷା କରିଥିଲେ । ଗୃହ ନିର୍ମାଣ କାର୍ଯ୍ୟ ଆସନ୍ତା ଡିସେମ୍ବର ମାସରୁ ଆରମ୍ଭ କରାଯିବା ପାଇଁ ସେ 'ହୁଡ଼କୋ' ଓ ଓଡ଼ିଶା ଗ୍ରାମ୍ୟ ଗୃହ ନିର୍ମାଣ ଉନ୍ନୟନ ନିଗମ ଅଧିକାରୀମାନଙ୍କୁ ପରାମର୍ଶ ଦେଇଥିଲେ ।

ସମୀକ୍ଷା ବୈଠକରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ଡି.କେ. ମିଶ୍ର, ଗୃହ ନିର୍ମାଣ ଓ ନଗର ଉନ୍ନୟନ ସଚିବ ଶ୍ରୀ ରାଜେନ୍ଦ୍ର ପଣ୍ଡା, ହୁଡ଼କୋର ଆସିଷ୍ଟାଣ୍ଟ ଚିଫ୍, ଲ ଶ୍ରୀ ଏ.କେ. ମହାପାତ୍ର, ଓଡ଼ିଶା ଗ୍ରାମ୍ୟ ଗୃହ ନିର୍ମାଣ ଉନ୍ନୟନ ନିଗମର ନିର୍ବାହୀ ନିର୍ଦ୍ଦେଶକ ଶ୍ରୀ ଅଶିତ୍ ଲିଙ୍ଗମ୍, ଭୁବନେଶ୍ୱର ମହାନଗର ନିଗମର ଚେୟାରମ୍ୟାନ, ଶ୍ରୀ ଜଗନ୍ନାଥ ମହାପାତ୍ର, ଡାଇରେକ୍ଟର ଅଫ୍ ଇଷ୍ଟେଟ୍ ଶ୍ରୀ ବି.କେ. ଧଳ, କଟକ ଓ ଭୁବନେଶ୍ୱର ଉନ୍ନୟନ ନିଗମର ଉପାଧ୍ୟକ୍ଷ ଓ ପୌର ପ୍ରଶାସନର ନିର୍ଦ୍ଦେଶକ ଶ୍ରୀ ସୁରେଶ ମହାନ୍ତି ସମେତ ଅନ୍ୟମାନେ ଯୋଗ ଦେଇଥିଲେ ।

## କେନ୍ଦ୍ରାପଡ଼ା ଜିଲ୍ଲାର କ୍ଷତିଗ୍ରସ୍ତ ସ୍କୁଲଗୃହ ପୁନଃନିର୍ମାଣ କାର୍ଯ୍ୟ କର୍ଣ୍ଣାଟକ ସରକାର କରିବେ

କେନ୍ଦ୍ରାପଡ଼ା ଜିଲ୍ଲାର ବାତ୍ୟା କ୍ଷତିଗ୍ରସ୍ତ ସ୍କୁଲ ଗୃହଗୁଡ଼ିକର ପୁନଃନିର୍ମାଣ କାର୍ଯ୍ୟକୁ କର୍ଣ୍ଣାଟକ ସରକାର ସର୍ବାଧିକ ପ୍ରାଥମିକତା ଦେବେ ବୋଲି କର୍ଣ୍ଣାଟକର ଶିକ୍ଷାମନ୍ତ୍ରୀ ଶ୍ରୀ ଆର୍.ଭି. ଦେଶପାଣ୍ଡେ କହିଛନ୍ତି । ଗତ ନଭେମ୍ବର ୧୬ ତାରିଖରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକଙ୍କୁ ସାକ୍ଷାତ କରିବା ଅବସରରେ ଶ୍ରୀ ଦେଶପାଣ୍ଡେ ଏହି ପ୍ରସ୍ତାବ ଦେଇଥିଲେ । ସ୍କୁଲ ଗୃହଗୁଡ଼ିକ ପକ୍କା ଛାତ ବିଶିଷ୍ଟ କରାଗଲେ ବାତ୍ୟା ସମୟରେ ଲୋକମାନଙ୍କୁ ଆଶ୍ରୟ ଯୋଗାଇ ଦିଆଯାଇ ପାରିବ ବୋଲି ବୈଠକରେ ମତ ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ କ୍ଷତିଗ୍ରସ୍ତ ଅଂଚଳରେ ଜଳସେଚନ ତଥା ଲୋକମାନଙ୍କୁ ପିଇବା ପାଣି ଯୋଗାଇ ଦେବା ନିମନ୍ତେ ନଳକୂପ ସ୍ଥାପନ କରିବା, ଚାଷୀମାନଙ୍କୁ ପାୱାରଟିଲର ଯୋଗାଇ ଦେବା ଏବଂ କ୍ଷତିଗ୍ରସ୍ତ ମତ୍ସ୍ୟଜୀବୀମାନଙ୍କୁ ବୋଟ ଓ ମାଛଧରା ଜାଲ ଯୋଗାଇଦେବା ନିମନ୍ତେ ଶ୍ରୀ ଦେଶପାଣ୍ଡେ ପ୍ରସ୍ତାବ ଦେଇଥିଲେ । କର୍ଣ୍ଣାଟକର ସରକାରୀ କର୍ମଚାରୀମାନେ ଓଡ଼ିଶାର ବାତ୍ୟା ବିପନ୍ନଙ୍କ ସହାୟତା ପାଇଁ ସେମାନଙ୍କର ଦିନକର ଦରମା ଏକ କୋଟି ଟଙ୍କା ପ୍ରଦାନ କରିବାକୁ ନିଷ୍ପତ୍ତି ନେଇଥିବା ବିଷୟ କର୍ଣ୍ଣାଟକର ମନ୍ତ୍ରୀ ପ୍ରକାଶ କରିଥିଲେ ।

ଏହି ଆଲୋଚନା ସମୟରେ ଅନ୍ୟମାନଙ୍କ ମଧ୍ୟରେ ରାଜ୍ୟ ସ୍ୱତନ୍ତ୍ର ରିଲିଫ୍ କମିଶନର ଓ କର୍ଣ୍ଣାଟକ ସରକାରଙ୍କ ଅର୍ଥ ବିଭାଗ ଶାସନ ସଚିବ ଶ୍ରୀ ସୁଭାଷ ଖୁଣ୍ଟିଆ ଉପସ୍ଥିତ ଥିଲେ ।

## ମଧ୍ୟପ୍ରଦେଶ ପ୍ରତିନିଧିଦଳଙ୍କ ଓଡିଶା ଗସ୍ତ

ଯାଜପୁର ଜିଲ୍ଲାକୁ ପୋଷ୍ୟ ଜିଲ୍ଲା ଭାବରେ ଗ୍ରହଣ କରିବା ପରେ ଗତ ନଭେମ୍ବର ୧୦ ତାରିଖରେ ମଧ୍ୟପ୍ରଦେଶ ସରକାର ଓ ପ୍ରଦେଶ କଂଗ୍ରେସ ପକ୍ଷରୁ ଓଡ଼ିଶା ବାତ୍ୟା ରିଲିଫ୍ ସହାୟତା ମୁଖ୍ୟ ଶ୍ରୀ ବିଦ୍ୟାଚରଣ ଶୁକ୍ଳା ମଧ୍ୟପ୍ରଦେଶ ବାଣିଜ୍ୟ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ସତ୍ୟନାରାୟଣ ଶର୍ମାଙ୍କ ସହ ଏକ ଉଚ୍ଚସ୍ତରୀୟ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କ ସହ ଯାଜପୁର ଜିଲ୍ଲା ପରିଦର୍ଶନରେ ଯାଇଥିଲେ ।

ଯାଜପୁର ଜିଲ୍ଲାର ବିଭିନ୍ନ ବାତ୍ୟାବିଧ୍ୱସ୍ତ ଅଞ୍ଚଳ ପରିଦର୍ଶନସାରି ଫେରିବା ପରେ ଶ୍ରୀ ଶୁକ୍ଳା ଓ ଶ୍ରୀ ଶର୍ମା କହିଥିଲେ ଯେ, ଯାଜପୁର ଜିଲ୍ଲାର ସର୍ବାଙ୍ଗୀନ ଉନ୍ନତି ପାଇଁ ମଧ୍ୟପ୍ରଦେଶ ସରକାର ଓ ପ୍ରଦେଶ କଂଗ୍ରେସ ପ୍ରତିଶ୍ରୁତିବଦ୍ଧ । ଏହି ଅଂଚଳରେ ବନ୍ୟା ପରବର୍ତ୍ତୀ ସମସ୍ତ ସହାୟତା କାର୍ଯ୍ୟକୁ ମଧ୍ୟପ୍ରଦେଶ ସରକାର ଅଗ୍ରାଧିକାର ଭିତ୍ତିରେ ଗ୍ରହଣ କରିବେ । ଯାଜପୁର ଜିଲ୍ଲାର ଶିକ୍ଷା, ସ୍ୱାସ୍ଥ୍ୟ, ପରିମଳ, ପାନୀୟଜଳ ବ୍ୟବସ୍ଥା, ବିଦ୍ୟୁତିକରଣ, ଗ୍ରାମ୍ୟ ସଡ଼କ ଓ ଗମନାଗମନ ବ୍ୟବସ୍ଥାର ପୁନଃଗଠନ, ବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକର ମରାମତି ଓ ପୁନଃନିର୍ମାଣ, ଗୃହ ନିର୍ମାଣ ଇତ୍ୟାଦି କାର୍ଯ୍ୟର ସମସ୍ତ ବ୍ୟବସ୍ଥା ମଧ୍ୟପ୍ରଦେଶ ସରକାରଙ୍କ ପକ୍ଷରୁ ହାତକୁ ନିଆଯିବ । ତତ୍‌କାଳ ବ୍ୟବସ୍ଥା ମଧ୍ୟରେ ବନ୍ୟା ଓ ବାତ୍ୟା ପରବର୍ତ୍ତୀ ଅବସ୍ଥାରେ ରିଲିଫ୍ କାର୍ଯ୍ୟ, ଖାଦ୍ୟ ବଣ୍ଟନ, ଚିକିତ୍ସା, ଔଷଧ, ଅସ୍ଥାୟୀ ବାସଗୃହ ନିର୍ମାଣ ପାଇଁ ପଲିଥିନ, ବସ୍ତ୍ର, କମ୍ବଳ, ଚୂଡ଼ା, ଚିନି, ଚାଉଳ, ଅଟା, ଆଳୁ, ପ୍ରଭୃତି ସହାୟତା ଯୋଗାଣ କାର୍ଯ୍ୟ ମଧ୍ୟପ୍ରଦେଶ ସରକାର ହାତକୁ ନେଇଛନ୍ତି ।

ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧ ଓ କଂଗ୍ରେସ ହାଇକମାଣ୍ଡଙ୍କ ନିର୍ଦ୍ଦେଶରେ ମଧ୍ୟପ୍ରଦେଶ ସରକାର ଯାଜପୁର ଜିଲ୍ଲାକୁ ପୋଷ୍ୟ ଜିଲ୍ଲା ଭାବରେ ଗ୍ରହଣ କରିଛନ୍ତି ବୋଲି ଶ୍ରୀ ବିଦ୍ୟା ଚରଣ ଶୁକ୍ଳା ମତବ୍ୟକ୍ତ କରିଥିଲେ । ପୋଷ୍ୟ ଜିଲ୍ଲାକୁ ଯୋଗାଇବାକୁ ଥିବା ସମସ୍ତ ଯୋଜନା ଓ କାର୍ଯ୍ୟାବଳୀକୁ ଯାଜପୁର ଜିଲ୍ଲାପାଳଙ୍କ ତତ୍ତ୍ୱାବଧାନରେ ମଧ୍ୟପ୍ରଦେଶ ସରକାର ପ୍ରତିନିଧି ସ୍ଥିର କରିବେ । ରାଜ୍ୟ ସରକାରଙ୍କ ଚାହିଦା ଓ ଆବଶ୍ୟକତାକୁ ଦୃଷ୍ଟିରେ ରଖି ଏକ ସମନ୍ୱୟ ଯୋଜନାରେ ମଧ୍ୟପ୍ରଦେଶ ସରକାର ଏହାକୁ କାର୍ଯ୍ୟକାରୀ କରାଇବେ ବୋଲି ଶ୍ରୀ ଶୁକ୍ଳା ସୂଚନା ପ୍ରଦାନ କରିଥିଲେ ।

ଏହି ପ୍ରତିନିଧି ଦଳରେ ଶ୍ରୀ ରାଜେନ୍ଦ୍ର ତିୱାରୀ, ମଧ୍ୟପ୍ରଦେଶ ଓଡ଼ିଆ ସମାଜର ସଭାପତି ଶ୍ରୀ ପୁରନ୍ଦର ମିଶ୍ର, ନବଭାରତ ଟାଇମ୍ସର ଶ୍ରୀ ରଞ୍ଜନ ମିଶ୍ର ପ୍ରମୁଖ ଓଡ଼ିଶା ଆସି ମୁଖ୍ୟମନ୍ତ୍ରୀଙ୍କ ସମେତ ରାଜସ୍ୱ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ, ପୂର୍ତ୍ତ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ହୃଦାନନ୍ଦ ସିଂହ, ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଓ ଶ୍ରୀ ସତ୍ୟକାନ୍ତ ମହାପାତ୍ର ସହିତ ଆଲୋଚନା କରିଥିଲେ ।

## ମୁଖ୍ୟମନ୍ତ୍ରୀଙ୍କ ସହ କେନ୍ଦ୍ର ଖାଉଟି ବ୍ୟାପାର ଓ ସାଧାରଣ ବଣ୍ଟନ ମନ୍ତ୍ରୀଙ୍କ ଆଲୋଚନା

ଗତ ନଭେମ୍ବର ୨୭ ତାରିଖରେ ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗ କେନ୍ଦ୍ର ଖାଉଟି ବ୍ୟାପାର ଓ ସାଧାରଣ ବଣ୍ଟନ ମନ୍ତ୍ରୀ ଶ୍ରୀ ଶାନ୍ତା କୁମାରଙ୍କ ସହ ବାତ୍ୟାଞ୍ଚଳରେ ବିପନ୍ନ ଲୋକମାନଙ୍କୁ ରିଲିଫ୍ ସାମଗ୍ରୀ ଯୋଗାଣ ଓ ସାଧାରଣ ବଣ୍ଟନ ବ୍ୟବସ୍ଥା ବିଷୟରେ ଆଲୋଚନା କରିଥିଲେ ।

ଏହି ଦାରୁଣ ବିପର୍ଯ୍ୟୟ ସମୟରେ ବିପନ୍ନମାନଙ୍କୁ ସହାୟତା ଯୋଗାଇ ଦେବା ନିମନ୍ତେ ରାଜ୍ୟ ସରକାରଙ୍କୁ ତାଙ୍କ ମନ୍ତ୍ରଣାଳୟ ତରଫରୁ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ ଯୋଗାଇ ଦିଆଯିବ ବୋଲି ପ୍ରକାଶ କରି ଶ୍ରୀ ଶାନ୍ତା କହିଲେ ଯେ, ବିପର୍ଯ୍ୟସ୍ତ ୧୪ଟି ଜିଲ୍ଲାର ୩୧ ଲକ୍ଷ ବିପନ୍ନ ପରିବାରଙ୍କୁ ପର୍ଯ୍ୟାପ୍ତ ପରିମାଣର ଖାଦ୍ୟ ସାମଗ୍ରୀ ଯୋଗାଇ ଦିଆଯିବ । ପ୍ରତ୍ୟେକ ପରିବାରକୁ ମାସକୁ ୨୦ କେ.ଜି. ଚାଉଳ ଓ ୧୦ କେ.ଜି. ଅଟା ଆସନ୍ତା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଯୋଗାଇ ଦିଆଯିବ ଏବଂ ଏହି ସୁବିଧା ଆଉ ୫ ମାସ ବୃଦ୍ଧି କରିବାକୁ ରାଜ୍ୟ ସରକାରଙ୍କ ଅନୁରୋଧକୁ ତାଙ୍କ ମନ୍ତ୍ରଣାଳୟ ସହୃଦୟତାର ସହ ବିଚାର କରିବ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ ।

ରାଜ୍ୟରେ ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ସୁସଂହତ ଓ ସୁଦୃଢ଼ କରାଯିବା ଉପରେ ଗୁରୁତ୍ୱାରୋପ କରି ସେ କହିଲେ ଯେ, ଭାରତୀୟ ଖାଦ୍ୟ ନିଗମରୁ ବିନା ମଧ୍ୟସ୍ଥତାରେ ସିଧାସଳଖ ରାଜ୍ୟ ଯୋଗାଣ ନିଗମ କରିଆରେ ଖାଦ୍ୟ ସାମଗ୍ରୀ ଲୋକମାନଙ୍କ ନିକଟରେ ପହଞ୍ଚାଇବା ଉଚିତ୍ । କେନ୍ଦ୍ର ତରଫରୁ ଭାରତୀୟ ଖାଦ୍ୟ ନିଗମ ଦ୍ୱାରା ଉଚ୍ଚମାନର ଚାଉଳ ଯୋଗାଣ ଉପରେ ସନ୍ତୋଷ ପ୍ରକାଶ କରି କହିଲେ ଯେ, ଏହା ଯେପରି ବିପନ୍ନମାନଙ୍କ ନିକଟରେ ଠିକ୍ ଭାବେ ପହଞ୍ଚେ ସେଥିପାଇଁ ଦୃଷ୍ଟି

ସରକାରଙ୍କ ତରଫରୁ ତାଆଶୁ ଦୃଷ୍ଟି ଦିଆଯିବା ଉଚିତ । ଭୁବନେଶ୍ୱର, କଟକ, ପୁରୀ ଓ ବାଲେଶ୍ୱରଠାରେ ୧ ଲକ୍ଷ ମେଟ୍ରିକ୍ ଟନ୍ କ୍ଷମତାର ଓ କେନ୍ଦ୍ରାପଡ଼ା, ଜଗତ୍‌ସିଂହପୁର, ଚାନ୍ଦବାଲି, ସୋରୋ, ଯାଜପୁର, ପ୍ରଭୃତି ସ୍ଥାନରେ ୧ ହଜାର ମେଟ୍ରିକ୍ ଟନ୍ କ୍ଷମତାର ଗୋଦାମ ଘର ନିର୍ମାଣ ନିମନ୍ତେ କେନ୍ଦ୍ର ସରକାର ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ବୋଲି ମନ୍ତ୍ରୀ ଶ୍ରୀ ଶାନ୍ତା କୁମାର ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ ଡ଼ଃ ଗମାଙ୍ଗ କେନ୍ଦ୍ରମନ୍ତ୍ରୀ ଶ୍ରୀ ଶାନ୍ତା କୁମାରଙ୍କୁ ମହାବାତ୍ୟାର ଭୟାବହତା ଓ ରାଜ୍ୟର କ୍ଷୟକ୍ଷତି ସମ୍ପର୍କରେ ଅବଗତ କରାଇଥିଲେ ଏବଂ କେନ୍ଦ୍ର ତରଫରୁ ଯୋଗାଇ ଦିଆଯାଉଥିବା ସାହାଯ୍ୟ ସହଯୋଗ ନିମନ୍ତେ ଧନ୍ୟବାଦ ଅର୍ପଣ କରିଥିଲେ ।

ବୈଠକରେ ଜଳସମ୍ପଦ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ ଶ୍ରୀ ମତଲୁବ ଅଲ୍ଲୀ, ରାଜସ୍ୱମନ୍ତ୍ରୀ ଶ୍ରୀଜଗନ୍ନାଥ ପଟ୍ଟନାୟକ, ଖାଦ୍ୟ ଯୋଗାଣ ଓ ଖାଉଟୀ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗଣେଶ୍ୱର ବେହେରା, କେନ୍ଦ୍ର ଖାଉଟି ବ୍ୟାପାର ଓ ସାଧାରଣ ବଣ୍ଟନ ସଚିବ, ରାଜ୍ୟ ମୁଖ୍ୟ ଶାସନ ସଚିବ, ଉନ୍ନୟନ କମିଶନର, କୃଷି ଉତ୍ପାଦନ କମିଶନର, ବରିଷ୍ଠ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଅଧିକାରୀ, ଭାରତୀୟ ଖାଦ୍ୟ ନିଗମ ଓ ରାଜ୍ୟ ଯୋଗାଣ ନିଗମର ବରିଷ୍ଠ ଅଧିକାରୀ ପ୍ରମୁଖ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## କେନ୍ଦ୍ର ପ୍ରତିରକ୍ଷା ମନ୍ତ୍ରୀ ଜର୍ଜ ଫର୍ଣ୍ଣାଣ୍ଡେଜ୍‌ଙ୍କ ରିଲିଫ୍ ଓ ଥଇଥାନ କାର୍ଯ୍ୟ ସମୀକ୍ଷା

ଗତ ନଭେମ୍ବର ୨୧ ତାରିଖ ରାଜଭବନଠାରେ କେନ୍ଦ୍ର ପ୍ରତିରକ୍ଷା ମନ୍ତ୍ରୀ ତଥା ଟାସ୍କ ଫୋର୍ସର ଅଧ୍ୟକ୍ଷ ଶ୍ରୀ ଜର୍ଜ ଫର୍ଣ୍ଣାଣ୍ଡେଜ୍ ଓଡ଼ିଶାର ରିଲିଫ୍, ଏବଂ ପୁନର୍ଗଠନ କାର୍ଯ୍ୟକ୍ରମ ସମ୍ପର୍କରେ ସମୀକ୍ଷା କରିଥିଲେ ।

ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗ ଏହି ବୈଠକରେ ଯୋଗ ଦେଇ ରିଲିଫ୍, ଏବଂ ପୁନର୍ଗଠନ ଓ ଭବିଷ୍ୟତ ଯୋଜନାଗୁଡ଼ିକ ସମ୍ପର୍କରେ ଅଧ୍ୟକ୍ଷ ଶ୍ରୀ ଫର୍ଣ୍ଣାଣ୍ଡେଜଙ୍କୁ ଅବଗତ କରାଇଥିଲେ । ଉପକୂଳ ଉନ୍ନୟନ ଯୋଜନା ସମ୍ପର୍କରେ ପ୍ରକାଶ କରି ମୁଖ୍ୟମନ୍ତ୍ରୀ ପରିବେଶର ସୁରକ୍ଷା ଏବଂ ସନ୍ତୁଳନ ନିମନ୍ତେ ବୃକ୍ଷରୋପଣ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱାରୋପ କରିଥିଲେ । ସାଧାରଣ ବଣ୍ଟନ ବ୍ୟବସ୍ଥା, କୃଷିର ଉନ୍ନତି, ସ୍ୱାସ୍ଥ୍ୟ, ପାନୀୟ ଜଳ ଯୋଗାଣ, ଗ୍ରାମାଞ୍ଚଳର ପୁନର୍ଗଠନ, ବିଦ୍ୟୁତ୍ ଯୋଗାଣ ଏବଂ ଶ୍ରମିକମାନଙ୍କୁ କାମଧନ୍ଦା ଏବଂ ଉପକୂଳଅଞ୍ଚଳର ପୁନର୍ଗଠନ ସମ୍ପର୍କରେ ବିସ୍ତୃତ ଆଲୋଚନା କରାଯାଇଥିଲା ।

ସାମ୍ପ୍ରତିକ ପରିସ୍ଥିତିରେ କ୍ଷତିଗ୍ରସ୍ତମାନଙ୍କୁ ଅତ୍ୟାବଶ୍ୟକୀୟ ପଲିଥିନ୍ ଏବଂ କପଡ଼ା ତୁରନ୍ତ ଯୋଗାଇ ଦିଆଯିବା ଉପରେ ମତ ପ୍ରକାଶ କରିଥିଲେ । ଟାସ୍କ ଫୋର୍ସର ଅଧ୍ୟକ୍ଷ ଶ୍ରୀ ଜର୍ଜ ଫର୍ଣ୍ଣାଣ୍ଡେଜ୍ ନିଜର ଅନୁଭୂତି ପ୍ରକାଶ କରି କହିଥିଲେ ଯେ, ଓଡ଼ିଶାର ବିପନ୍ନମାନଙ୍କୁ ସାହାଯ୍ୟ ସହଯୋଗ କରିବା ପାଇଁ ସମଗ୍ର ଦେଶ ଆମମାନଙ୍କ ପଛରେ ଅଛି । ବିପନ୍ନ ଅଞ୍ଚଳର ଉନ୍ନତି ଏବଂ ବାତ୍ୟାକ୍ଲିଷ୍ଟମାନଙ୍କ ଥଇଥାନ ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆଯିବ ।

ଏହି ସମୀକ୍ଷା ବୈଠକରେ ଅନ୍ୟମାନଙ୍କ ମଧ୍ୟରେ କେନ୍ଦ୍ର ମନ୍ତ୍ରୀ ଶ୍ରୀ ଜୁଏଲ୍ ଓରାମ୍, ରାଜସ୍ୱ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ, ମୁଖ୍ୟ ଶାସନ ସଚିବ ତଥା ଉନ୍ନୟନ କମିଶନର ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ, କୃଷି ଉତ୍ପାଦନ କମିଶନର, ବିଭିନ୍ନ ବିଭାଗର ଶାସନ ସଚିବ, ଅତିରିକ୍ତ ଶାସନ ସଚିବ, କେନ୍ଦ୍ର ସରକାରଙ୍କ ବିଭିନ୍ନ ମନ୍ତ୍ରଣାଳୟରୁ ଆସିଥିବା ବରିଷ୍ଠ ଅଧିକାରୀମାନେ ଯୋଗ ଦେଇଥିଲେ ।

## ବିଭିନ୍ନ ରାଜ୍ୟ ସରକାର ଓଡ଼ିଶାର ବାତ୍ୟାକ୍ଲିଷ୍ଟ ଜିଲ୍ଲାଗୁଡ଼ିକୁ ପୋଷ୍ୟଜିଲ୍ଲାଭାବେ ଗ୍ରହଣ କରିବାକୁ ନିଷ୍ପତ୍ତି

ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗଙ୍କ ଅନୁରୋଧକ୍ରମେ ବାତ୍ୟା, ବନ୍ୟା ଓ ସାମୁଦ୍ରିକ ଜୁଆରରେ ଧ୍ୱସ୍ତବିଧ୍ୱସ୍ତ ଉପକୂଳବର୍ତ୍ତୀ ଜିଲ୍ଲା ଗୁଡ଼ିକର ବିପନ୍ନ ଲୋକମାନଙ୍କ ରିଲିଫ୍ ଓ ଥଇଥାନ କାର୍ଯ୍ୟ ଚାଲୁରହିବା ଏବଂ ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ନିମନ୍ତେ ଜଗତସିଂହପୁର ଜିଲ୍ଲାକୁ ମହାରାଷ୍ଟ୍ର ସରକାର, କେନ୍ଦ୍ରାପଡ଼ା ଜିଲ୍ଲାକୁ କର୍ଣ୍ଣାଟକ ସରକାର, ବାଲେଶ୍ୱର ଜିଲ୍ଲାକୁ ଅରୁଣାଚଳ ପ୍ରଦେଶ ସରକାର, ଯାଜପୁର ଜିଲ୍ଲାକୁ ମଧ୍ୟପ୍ରଦେଶ ସରକାର, ପୁରୀ ଜିଲ୍ଲାକୁ ଦିଲ୍ଲୀ ସରକାର, ଭଦ୍ରକ ଜିଲ୍ଲାକୁ ରାଜସ୍ଥାନ ସରକାର, ମୟୂରଭଞ୍ଜ ଜିଲ୍ଲାକୁ ନାଗାଲାଣ୍ଡ ସରକାର, କେନ୍ଦୁଝର ଜିଲ୍ଲାକୁ ଗୋଆ ସରକାର ଏବଂ ଗଞ୍ଜାମ ଜିଲ୍ଲାକୁ ଆନ୍ଧ୍ରପ୍ରଦେଶ ସରକାର ପୋଷ୍ୟଜିଲ୍ଲା ଭାବେ ଗ୍ରହଣ କରିବାକୁ ଘୋଷଣା କରିଛନ୍ତି ।

ବିଭିନ୍ନ ରାଜ୍ୟର ପ୍ରଦେଶ କଂଗ୍ରେସ କମିଟି ମଧ୍ୟରୁ ମଧ୍ୟ ବାତ୍ୟା କ୍ଷତିଗ୍ରସ୍ତ ଜିଲ୍ଲାଗୁଡ଼ିକରେ ରିଲିଫ୍ ଓ ଥଇଥାନ କାର୍ଯ୍ୟ ଚାଲୁ କରାଯିବ ବୋଲି ଅଖିଳ ଭାରତ କଂଗ୍ରେସ୍ କମିଟିର ସାଧାରଣ ସମ୍ପାଦକ ଶ୍ରୀ ଓସକାର ଫର୍ଣ୍ଣାଣ୍ଡିସ୍ ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗଙ୍କୁ ଜଣାଇଛନ୍ତି ।

ଏହି ମଧ୍ୟରେ ମହାରାଷ୍ଟ୍ର ସରକାର ପୋଷ୍ୟ ଜିଲ୍ଲା ଜଗତସିଂହପୁର, କର୍ଣ୍ଣାଟକ ସରକାର କେନ୍ଦ୍ରାପଡ଼ା, ମଧ୍ୟପ୍ରଦେଶ ସରକାର ଯାଜପୁର, ରାଜସ୍ଥାନ ସରକାର ଭଦ୍ରକ ଜିଲ୍ଲାକୁ ଆବଶ୍ୟକୀୟ ରିଲିଫ୍ ସାମଗ୍ରୀ ଯୋଗାଣ କରି ରିଲିଫ୍ ଏବଂ ପୁନର୍ଗଠନ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି ।

## ବିପତ୍ତିର ସାଥୀ

### ରାଜ୍ୟ ବେସାମରିକ ପ୍ରତିରକ୍ଷା ସ୍ୱେଚ୍ଛାସେବୀ ବାହିନୀର ମହତ୍ୱପୂର୍ଣ୍ଣ କାର୍ଯ୍ୟ

ଅକ୍ଟୋବର ୨୯-୩୦ରେ ସଂଘଟିତ ମହାପ୍ରଳୟକାରୀ ବାତ୍ୟାର କରାଳ ଜିହ୍ୱା, ଉପକୂଳବର୍ତ୍ତୀ ଓଡ଼ିଶାର ସମସ୍ତ ଶିରୀ ଲୁଟିଆ ଦେଇ ନିଜର ସର୍ବଗ୍ରାସୀ କ୍ଷୁଧାକୁ ପ୍ରଶମିତ କଲା ହଜାର ହଜାର ନରନାରୀ, ଶିଶୁ, ବୃଦ୍ଧ, ବୃଦ୍ଧା ତଥା ଲକ୍ଷ ଲକ୍ଷ ଗୃହପାଳିତ ପଶୁପକ୍ଷୀମାନଙ୍କର ଜୀବନର ପ୍ରତିଦାନରେ । ସବୁଜିମା ଭରା ସ୍ଥାନ ପରିଣତ ହୋଇ ଯାଇଥିଲା ବୃକ୍ଷଲତା ବିହୀନ ତଥା ମାନବ ଓ ପଶୁପକ୍ଷୀମାନଙ୍କର ଭୂତ ରୁଦ୍ର ତାଣ୍ଡବର ଶ୍ମଶାନରେ । ତା' ପରେ ଆରମ୍ଭ ହୋଇଥିଲା-ମହାବାତ୍ୟାର

ଜଳାଳ ଜଳରୁ ରକ୍ଷା ପାଇଥିବା ଲୋକମାନଙ୍କର ବଞ୍ଚି ରହିବାର ଆପ୍ରାଣ ଚେଷ୍ଟା । ସେତେବେଳେ ଅତ୍ୟାବଶ୍ୟକ ଥିଲା ଖାଦ୍ୟ ଓ ପାନୀୟ ଜଳ । ତା' ପରେ ଆବଶ୍ୟକ ଥିଲା ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ, ପରିମଳ ବ୍ୟବସ୍ଥା, ଔଷଧର ବ୍ୟବସ୍ଥା ତଥା ବିସ୍ତୀର୍ଣ୍ଣ ଅଞ୍ଚଳରେ ପଡ଼ିଥିବା ଲକ୍ଷ ଲକ୍ଷ ଶବ ସଂସ୍କାରର ବ୍ୟବସ୍ଥା ।

ଓଡ଼ିଶାର ବାତ୍ୟାଗ୍ରସ୍ତ ଶହ ଶହ ବର୍ଗମାଇଲ୍ ଅଞ୍ଚଳରେ ବିକ୍ଷିପ୍ତ ହଜାର ହଜାର ମୃତଦେହ ଓ ଲକ୍ଷ ଲକ୍ଷ ପଶୁ ଶବ ପଚିସଢ଼ି ଅତ୍ୟନ୍ତ ଗଳିତ ଅବସ୍ଥା ପ୍ରାପ୍ତ ହୋଇଥିବାରୁ ସେଗୁଡ଼ିକର ସତ୍କାର ଅତ୍ୟାବଶ୍ୟକ ହୋଇପଡ଼ିଲା । ଏ ଦିଗରେ ଭୁବନେଶ୍ୱର ବେସାମରିକ ପ୍ରତିରକ୍ଷା ସଙ୍ଗଠନ ପ୍ରଥମ ପଦକ୍ଷେପ ନେଇ ଆଗୁଆ କାର୍ଯ୍ୟ ଆରମ୍ଭ କରିଥିଲା । ରାଜ୍ୟର ବେସାମରିକ ପ୍ରତିରକ୍ଷା ସଂସ୍ଥାର ନିର୍ଦ୍ଦେଶକ ଶ୍ରୀଯୁକ୍ତ କୁଳମଣି ଦେଓଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନଭେମ୍ବର ୬, ୧୯୯୯ ଠାରୁ ଏହି ସଙ୍ଗଠନର ୧୨୦ ଜଣ ସ୍ୱେଚ୍ଛାସେବୀ ଏକ ଆଗୁଆ ବାହିନୀ ଭାବରେ ଜଗତସିଂହପୁର ତଥା କେନ୍ଦ୍ରାପଡ଼ା ଜିଲ୍ଲା ଅଞ୍ଚଳରେ ଭୀଷଣ ଦୁର୍ଗନ୍ଧପୂର୍ଣ୍ଣ ଗଳିତ ଶବଗୁଡ଼ିକର ସଂସ୍କାର କାର୍ଯ୍ୟ ତତ୍ପରତାର ସହିତ ଆରମ୍ଭ କରିଥିଲେ । ଜଳାକ୍ରାନ୍ତ ବିଭିନ୍ନ ଦୁର୍ଗମ ଅଞ୍ଚଳରେ ଏହି ଶବଦାହ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ନିମନ୍ତେ ନଭେମ୍ବର ୮ ତାରିଖରେ ବାୟୁସେନାର ସହାୟତାକ୍ରମେ ୨୨ ଜଣ ବେ.ପ୍ର.ସ୍ୱେଚ୍ଛାସେବୀଙ୍କୁ ହେଲିକପ୍ଟର ଯୋଗେ ଏରସମା ଅଞ୍ଚଳର ଦୁର୍ଗମ ଜିମିଲୋ ପଡ଼ିଆଠାରେ ଅବତରଣ କରାଯାଇଥିଲା । ଶବଦାହ କାର୍ଯ୍ୟ ସମସ୍ତ ପ୍ରତିକୂଳ ପରିବେଶ, ଉତ୍କଟ ଦୁର୍ଗନ୍ଧମୟ ବାତାବରଣ, ମହାମାରୀର ଆଶଙ୍କା ସତ୍ତ୍ୱେ ଆଗେଇ ଚାଲିଥିଲା । ଜଳାକ୍ରାନ୍ତ ଅଞ୍ଚଳଗୁଡ଼ିକୁ ସେନାବାହିନୀର ଡଙ୍ଗା ତଥା ଦେଶୀ ଡଙ୍ଗା ଦ୍ୱାରା ବେ.ପ୍ର. ସ୍ୱେଚ୍ଛାସେବୀମାନେ ଯାଇ ସେଠାରେ ମଧ୍ୟ ଶବ ସଂସ୍କାର କାର୍ଯ୍ୟ ସଂପାଦନ କରିଥିଲେ । ପରେ ପୁଣି ବେ.ପ୍ର. ସ୍ୱେଚ୍ଛାସେବୀମାନଙ୍କର ଏକ ଦଳକୁ ଏରସମା ଅଞ୍ଚଳର ପଲିକଣ୍ଠା ଗ୍ରାମଠାରେ ଆକାଶ ମାର୍ଗରୁ ଅବତରଣ କରାଯାଇଥିଲା । ସେଠାରେ ସ୍ୱେଚ୍ଛାସେବୀମାନେ ଶହ ଶହ ଶବକୁ ପୋଡ଼ିଥିଲେ ଓ ପୋତିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ୧୫୦ ଜଣ ବେ.ପ୍ର. ସ୍ୱେଚ୍ଛାସେବୀଙ୍କୁ ବାଲିକୁଦା ଓ ଏରସମାଠାରେ ଅବସ୍ଥାପିତ କରାଯାଇ ବହୁ ଦୂରଦୂରାନ୍ତ ଗ୍ରାମ ଯଥା- ବୋରିକିନା, ଘୋଡ଼ା, କୋଣଲବେଡା, ନାଉଗାଁ, ଶୋରା, ଅମ୍ବିକୀ, ହାଟିଆପାଳ, ନଗରୀ, ଜପା, ପଲ୍ଲୀକଣ୍ଠା, କିରାଲଲୋ, ଅନ୍ଧାରୀ, ପଦ୍ମପୁର, କୋଟିଲାବେଡା, କୋଠୀ, ପାଇକଆନନ୍ଦ-ଇତ୍ୟାଦିରେ ମୃତ ଶରୀରଗୁଡ଼ିକୁ ଦାହ କରାଯାଇଥିଲା ଓ ସ୍ଥଳ ବିଶେଷରେ ପୋତି ଦିଆଯାଇଥିଲା । ସ୍ଥାନୀୟ ଗ୍ରାମବାସୀମାନଙ୍କ ସହାୟତାରେ, ଆବଶ୍ୟକସ୍ଥଳେ, ଜଳ ପ୍ରଦୂଷଣ ଓ ସଂକ୍ରାମକ ରୋଗ ନିରାକରଣ ନିମନ୍ତେ ବ୍ଲିଚିଂ ପାଉଡ଼ର ତଥା ଅନ୍ୟାନ୍ୟ ବିଶୋଧକ ସାହାଯ୍ୟରେ ବିଶୋଧନ କାର୍ଯ୍ୟ ସମ୍ପାଦନ କରାଯାଇଥିଲା । ସ୍ୱେଚ୍ଛାସେବୀମାନଙ୍କର ଅକ୍ଳାନ୍ତ ପରିଶ୍ରମ, ଭୁବନେଶ୍ୱର ବେ.ପ୍ର. ସଂସ୍ଥାର ଉପ ନିୟନ୍ତ୍ରକଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ତଥା ରାଜ୍ୟ ବେ.ପ୍ର. ସଂସ୍ଥାର ନିର୍ଦ୍ଦେଶକଙ୍କର ସଫଳ ସଂଚାଳନା ଯୋଗୁଁ ଗତ ନଭେମ୍ବର ୧୫ ତାରିଖ ସନ୍ଧ୍ୟାସୁଦ୍ଧା ବେ.ପ୍ର. ସ୍ୱେଚ୍ଛାସେବୀମାନେ ଉପରୋକ୍ତ ଅଞ୍ଚଳଗୁଡ଼ିକରେ ମୋଟ ୨୧୨୬ ସଂଖ୍ୟକ ପଶୁଶବ ତଥା ୨୮୯ ମନୁଷ୍ୟ ଶବସତ୍କାର କରିବାକୁ ସକ୍ଷମ ହୋଇଛନ୍ତି । ଏହି କାର୍ଯ୍ୟକ୍ରମରେ ତାଳଚେର, ରାଉରକେଲା ଓ ଭୁବନେଶ୍ୱର ବେ.ପ୍ର. ସଙ୍ଗଠନର ଯଥାକ୍ରମେ ୧୦, ୨୫ ଓ ୧୧୫ ଜଣ ସ୍ୱେଚ୍ଛାସେବୀ ଅଂଶଗ୍ରହଣ କରିଥିଲେ ।

ଏତଦ୍‌ବ୍ୟତୀତ ମହାରାଷ୍ଟ୍ରର ଦଳେରୁ ମଧ୍ୟ ୧୩୨ ଜଣ ବେସାମରିକ ପ୍ରତିରକ୍ଷା ସ୍ୱେଚ୍ଛାସେବୀ ଏରସମା ଅଞ୍ଚଳର କୁଜ କେଠି ଏବଂ ଆମ୍ବିକିଠାରେ ଗତ ୧୬ ତାରିଖରୁ ରହି ସେ ଅଞ୍ଚଳରେ ଶବଦାହ କାର୍ଯ୍ୟ କରୁଛନ୍ତି । ମଧ୍ୟପ୍ରଦେଶ ସରକାର ଇତିମଧ୍ୟରେ ୧୫୦୦ ଗୃହରକ୍ଷୀ ମଧ୍ୟ ପଠାଇଛନ୍ତି । ସେମାନେ କୁଜଙ୍ଗ ଏବଂ ଏରସମା ଅଞ୍ଚଳରେ ଶବଦାହ କାର୍ଯ୍ୟରେ ଲିପ୍ତ ଅଛନ୍ତି । ମହାରାଷ୍ଟ୍ରର ବେସାମରିକ ପ୍ରତିରକ୍ଷା ସ୍ୱେଚ୍ଛାସେବୀ ଏବଂ ମଧ୍ୟପ୍ରଦେଶର ଗୃହରକ୍ଷାବାହିନୀ ଏଯାବତ୍ ପ୍ରାୟ ୪୮୫୦ଟି ଶବଦାହ କରିଥିବା ବେସାମରିକ ପ୍ରତିରକ୍ଷା ସଂସ୍ଥାର, ନିର୍ଦ୍ଦେଶକ ଶ୍ରୀକୁଳମଣି ଦେଓଙ୍କ ସୂତ୍ରରୁ ଜଣାପଡ଼ିଛି ।

## ପଞ୍ଜାବ ନେସନାଲ ବ୍ୟାଙ୍କର ଗୃହ ନିର୍ମାଣ ସହାୟତା ଯୋଜନା

ରାଜ୍ୟର ବାତ୍ୟା ବିପନ୍ନ ଜିଲ୍ଲାଗୁଡ଼ିକର ବାସିନ୍ଦା ହୋଇଥିବା ସରକାରୀ ଓ ଅର୍ଦ୍ଧ-ସରକାରୀ କର୍ମଚାରୀମାନଙ୍କୁ ଗୃହ ନିର୍ମାଣରେ ଆର୍ଥିକ ସହାୟତା ଯୋଗାଇ ଦେବା ପାଇଁ ପଞ୍ଜାବ ନେସ୍‌ନାଲ ବ୍ୟାଙ୍କ ପକ୍ଷରୁ ଏକ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ କରାଯାଇଛି ।

ଏହି ଯୋଜନା ଅନୁଯାୟୀ ୧୦ ହଜାର ଟଙ୍କାରୁ ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସହାୟତା ଋଣ ଆକାରରେ ବାର୍ଷିକ ୧୬.୩୫ ପ୍ରତିଶତ ସୁଧ ହାରରେ ଯୋଗାଇ ଦିଆଯିବ । ଏହି ଋଣ ପାଇବା ନିମନ୍ତେ କର୍ମଚାରୀଙ୍କୁ କୌଣସି ଜମିଜମା ସଂକ୍ରାନ୍ତୀୟ କାଗଜପତ୍ର ଦର୍ଶାଇବା ଆବଶ୍ୟକ ହେବ ନାହିଁ । କେବଳ ସେମାନଙ୍କ ମାସିକ ଦରମା ପ୍ରମାଣ ପତ୍ର ଓ ତାଙ୍କ ନିଯୁକ୍ତିକାରୀଙ୍କଠାରୁ ଋଣ ଆଦାୟ ଦାୟିତ୍ୱ ନେବାର ସମ୍ମତି ପତ୍ର ଆବଶ୍ୟକ ଅଟେ । କୌଣସି କର୍ମଚାରୀ ଯଦି ଘରଡ଼ିହ ସଂକ୍ରାନ୍ତୀୟ କାଗଜପତ୍ର(ପଟା ପାଉତି ଇତ୍ୟାଦି) ଦର୍ଶାନ୍ତି, ତେବେ ସେ କ୍ଷେତ୍ରରେ ସୁଧହାର ବାର୍ଷିକ ୧୨.୨୪ ପ୍ରତିଶତ ହେବ । ଏହି ଋଣ ୬୦ଟି ମାସିକ କିସ୍ତିରେ ସଂପୃକ୍ତ କର୍ମଚାରୀଙ୍କ ଦରମାରୁ ଆଦାୟ କରାଯିବ ବୋଲି ଏହି ଯୋଜନାରେ ବ୍ୟବସ୍ଥା ରହିଛି । ଏହି ଋଣ ପାଇବା ପାଇଁ ଦରଖାସ୍ତ ଫର୍ମ ପଞ୍ଜାବ ନେସ୍‌ନାଲ ବ୍ୟାଙ୍କର ଯେ କୌଣସି ଶାଖାରୁ ମିଳିପାରିବ ।

## ବାତ୍ୟାକ୍ଳିଷ୍ଟ ବିପନ୍ନମାନଙ୍କ ସହାୟତା ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ

ଓଡ଼ିଶାର ବାତ୍ୟାକ୍ଳିଷ୍ଟ ବିପନ୍ନମାନଙ୍କ ସହାୟତା ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ବହୁ ଅନୁଷ୍ଠାନ, ବ୍ୟକ୍ତି ବିଶେଷ ମୁକ୍ତହସ୍ତରେ ଦାନ କରି ସେମାନଙ୍କର ବଦାନ୍ୟତା ପ୍ରଦର୍ଶନ କରି ବାତ୍ୟାର୍ତ୍ତମାନଙ୍କ ପ୍ରତି ସମବେଦନା ଜ୍ଞାପନ କରିଛନ୍ତି ।

କାଣ୍ଡିଗା ଏବଂ ଅନୁଯା ଓଗ୍ରା ନାମକ ଦୁଇଜଣ ନାବାଳକ ସେମାନଙ୍କ ଜନ୍ମଦିବସ ଏବଂ ରକ୍ଷାବନ୍ଧନ ଉତ୍ସବରେ ମିଳିଥିବା ଉପହାରରୁ ସଂଗୃହୀତ ୨୦୦୦ ଟଙ୍କା ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରିଛନ୍ତି ।

ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ ଶ୍ରୀ ଦିଗ୍‌ବିଜୟ ସିଂହ ୮୨ ଲକ୍ଷ ୫୧ ହଜାର ଟଙ୍କା, ଗୋଆର ମୁଖ୍ୟମନ୍ତ୍ରୀ ଶ୍ରୀ ଲୁଇଜିନ୍ ହୋ ଫେଲେରିଓ ୫୦ ଲକ୍ଷ ଟଙ୍କା , ପୁରୀର ଡେ଼ଭଲପ୍‌ମେଣ୍ଟ ଏଜୁକେଶନ ସୋସାଇଟି ତରଫରୁ ୨୫ ହଜାରଟଙ୍କା, ରିଓଟିଣ୍ଟୋ ଇଣ୍ଡିଆ ପ୍ରାଇଭେଟ୍ ଲିମିଟେଡ୍ ତରଫରୁ ଶ୍ରୀ ପୁନିତ୍ ଗୁପ୍ତା ୧୦ ଲକ୍ଷ, କରମଣ୍ଡଳ ଫର୍ଟିଲାଇଜର ଲିଃ ଓ ଇ.ଆଇ.ଡ଼ି. ଇଣ୍ଡିଆ ଲିଃ ତରଫରୁ ମହାପରିଚାଳକ ଶ୍ରୀ ଏମ୍.ଏନ୍. ଶେଖର ରାଜପା ୨ ଲକ୍ଷ ୨୫ ହଜାର, କଟକ କେନ୍ଦ୍ରୀୟ ସମବାୟ ବ୍ୟାଙ୍କ କର୍ମଚାରୀ ସଂଘ ତରଫରୁ କାର୍ଯ୍ୟକାରୀ ସଭାପତି ଶ୍ରୀ ଅଜୟ ମହାନ୍ତି ୨୫ ହଜାର ୧୦୦ ଟଙ୍କା, ଇଣ୍ଡିଆନ୍ ଅଏଲ୍ କର୍ପୋରେସନ ତରଫରୁ ୧୫ ଲକ୍ଷ ଟଙ୍କା ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରାଯାଇଛି ।

ଅରୁଣାଚଳ ପ୍ରଦେଶ ସରକାରଙ୍କ ତରଫରୁ ମୁଖ୍ୟମନ୍ତ୍ରୀଙ୍କ କମିଶନର ତଥା ଶାସନ ସଚିବ ଶ୍ରୀ ଗିରିଜା ଶଙ୍କର ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗଙ୍କୁ ଭେଟି ୫୦ ଲକ୍ଷ ଟଙ୍କାର ଚେକ୍ ପ୍ରଦାନ କରିଛନ୍ତି ।

ପୂର୍ବରୁ ଅରୁଣାଚଳ ପ୍ରଦେଶ ତରଫରୁ ୧୫ ଲକ୍ଷ ଟଙ୍କା ଦିଆଯାଇଥିଲା । ଏହାକୁ ମିଶାଇ ଅରୁଣାଚଳ ପ୍ରଦେଶ ସରକାରଙ୍କ ତରଫରୁ ଓଡ଼ିଶାର ବାତ୍ୟା ବିପନ୍ନମାନଙ୍କ ସହାୟତା ନିମନ୍ତେ ୬୫ ଲକ୍ଷ ଟଙ୍କା ଆର୍ଥିକ ସହାୟତା ଦିଆଯାଇଛି ।

## ପାଣ୍ଠି ସଂଗ୍ରହ ଓ ସୁବିନିଯୋଗ ପାଇଁ କମିଟି ଗଠନ

ବାତ୍ୟା ବିପନ୍ନମାନଙ୍କ ସହାୟତା ନିମନ୍ତେ ମୁଖ୍ୟମନ୍ତ୍ରୀ ଡ଼କ୍ଟର ଗିରିଧର ଗମାଙ୍ଗ ବିଭିନ୍ନ ରାଜ୍ୟ, ସରକାରୀ ଓ ବେସରକାରୀ ପ୍ରତିଷ୍ଠାନ, ଜାତୀୟ ଓ ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ସଙ୍ଗଠନ ଏବଂ ସମଗ୍ର ବିଶ୍ୱର ସଚେତନ ନାଗରିକମାନଙ୍କୁ ମୁକ୍ତ ହସ୍ତରେ ଦାନ କରିବା ପାଇଁ ଅନୁରୋଧ କରିଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ ଅର୍ଥ ରାଶି ଉପରେ ଶତକଡ଼ା ଶହେ ପ୍ରତିଶତ ଆୟକର ଛାଡ଼ ଥିବାରୁ ବିଭିନ୍ନ ଦିଗରୁ ଅର୍ଥରାଶି ଆସିବାରେ ଲାଗିଛି ।

ଓଡ଼ିଶାର ବିପନ୍ନମାନଙ୍କ ଥଇଥାନ ଏବଂ ପୁନର୍ଗଠନ କାର୍ଯ୍ୟ ନିମନ୍ତେ ଅନ୍ୟୂନ ୫୦୦ କୋଟି ଟଙ୍କାର ଆବଶ୍ୟକତା ଥିବାରୁ ଏହି ଅର୍ଥରାଶିକୁ ଦାନସୂତ୍ରରେ ସଂଗ୍ରହ କରାଯିବା ଲକ୍ଷ୍ୟ ନେଇ ମୁଖ୍ୟମନ୍ତ୍ରୀ ଡ଼କ୍ଟର ଗମାଙ୍ଗ ଏକ କମିଟି ଗଠନ କରିଛନ୍ତି । ସଂଗୃହୀତ ଅର୍ଥର ସୁବିନିଯୋଗ ଲକ୍ଷ୍ୟ ନେଇ ଏହି କମିଟି ଗଠନ କରାଯାଇଛି । ସାଧାରଣ ଉଦ୍ୟୋଗର ସଚିବ ଶ୍ରୀ ବିଦ୍ୟାର୍ଥୀ ପ୍ରଧାନ ଏହି କମିଟିର ଅଧ୍ୟକ୍ଷ ଥିବାବେଳେ ଇସ୍ପାତ ଓ ଖଣି ସଚିବ ଶ୍ରୀ ଉପେନ୍ଦ୍ର ନାଥ ବେହେରା ଏବଂ ଉତ୍କଳୋର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଅସିତ୍ କୁମାର ତ୍ରିପାଠୀ ସଭ୍ୟ ରହିଛନ୍ତି ।

## କର୍ଣ୍ଣାଟକ ଶିକ୍ଷମନ୍ତ୍ରୀଙ୍କ ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନା

ଗତ ନଭେମ୍ବର ୧୬ ତାରିଖରେ କର୍ଣ୍ଣାଟକର ବୃହତ ଏବଂ ମଧ୍ୟମ ଶିଳ୍ପମନ୍ତ୍ରୀ ଶ୍ରୀ ଆର.ଭି. ଦେଶପାଣ୍ଡେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ଭେଟି କର୍ଣ୍ଣାଟକ ସରକାରଙ୍କ ତରଫରୁ କେନ୍ଦ୍ରାପଡ଼ାକୁ ପୋଷ୍ୟ ଜିଲ୍ଲାଭାବେ ଗ୍ରହଣ କରାଯାଇ ବିପନ୍ନମାନଙ୍କୁ ଯୋଗାଇ ଦିଆଯାଉଥିବା ରିଲିଫ୍ ସଂପର୍କରେ ଅବଗତ କରାଇଥିଲେ । ବାତ୍ୟାକ୍ଳିଷ୍ଟ ବିପନ୍ନମାନଙ୍କୁ କର୍ଣ୍ଣାଟକ ରାଜ୍ୟସରକାରଙ୍କ ତରଫରୁ ତାରପୋଲିନ, ଔଷଧ, ଶାଢ଼ୀ, ଧୋତି, କୁକୁଲସ୍, ବ୍ଲାଙ୍କେଟ୍ସ ଇତ୍ୟାଦି ଯୋଗାଇ ଦିଆଯାଇଛି ବୋଲି ପ୍ରକାଶ କରି ଅନ୍ୟାନ୍ୟ ଆବଶ୍ୟକୀୟ, ସାହାଯ୍ୟ ଯୋଗାଇ ଦେବାକୁ ତାଙ୍କ ସରକାର ପ୍ରସ୍ତୁତ ଅଛନ୍ତି ବୋଲି ଶ୍ରୀ ଦେଶପାଣ୍ଡେ ପ୍ରକାଶ କରିଥିଲେ । ମୁଖ୍ୟମନ୍ତ୍ରୀ ଡଃ. ଗମାଙ୍ଗ ସ୍କୁଲ ଏବଂ କଲେଜ ଗୃହଗୁଡ଼ିକୁ ବାତ୍ୟା ଏବଂ ବନ୍ୟା ପ୍ରତିରୋଧକ କରି ତୋଳିବା ନିମନ୍ତେ ଆବଶ୍ୟକୀୟ ପଦକ୍ଷେପ ନେବାକୁ କର୍ଣ୍ଣାଟକ ସରକାରଙ୍କୁ ଅନୁରୋଧ କରିଥିଲେ । ପ୍ରତିବର୍ଷ ବନ୍ୟା, ବାତ୍ୟା ଯୋଗୁଁ ଓଡ଼ିଶାର ବିପୁଳ କ୍ଷୟକ୍ଷତି ହେଉଥିବା ଦୃଷ୍ଟିରୁ ବାତ୍ୟା ଓ ବନ୍ୟା ପ୍ରତିରୋଧକ ଗୃହ ନିର୍ମାଣ ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱାରୋପ କରିଥିଲେ ।

ଏହି ଆଲୋଚନା ସମୟରେ ରାଜସ୍ୱମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ, ଉଚ୍ଚଶିକ୍ଷାମନ୍ତ୍ରୀ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି, ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ଭୁପିନ୍ଦର ସିଂ ପ୍ରମୁଖ ଉପସ୍ଥିତ ଥିଲେ ।

## ବାତ୍ୟାବିଧ୍ୱସ୍ତ ଜିଲ୍ଲାଗୁଡ଼ିକରେ କାର୍ଡ଼ ପିଛା ୨୦ କି.ଗ୍ରା. ଚାଉଳ ରିହାତି ଦରରେ ୫ ମାସ ପାଇଁ ଯୋଗାଣ

ଗଂଜାମ ଓ ୧୨ ଗୋଟି ଉପକୂଳବର୍ତ୍ତୀ ବାତ୍ୟାବିଧ୍ୱସ୍ତ ଜିଲ୍ଲାଗୁଡ଼ିକରେ ପ୍ରତି ପଡ଼ିକାର୍ଡ଼ ପିଛା ମାସକୁ ୨୦କି.ଗ୍ରା. ଚାଉଳ ଆଗାମୀ ୫ ମାସ ପାଇଁ ରିହାତି ମୂଲ୍ୟରେ ଯୋଗାଇ ଦିଆଯିବ ବୋଲି ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଜଣାଇଛନ୍ତି ।

ଉଲ୍ଲେଖଯୋଗ୍ୟ ଯେ, ଏଥିପାଇଁ ମୁଖ୍ୟମନ୍ତ୍ରୀ ଡକ୍ଟର ଗମାଙ୍ଗ ପ୍ରଧାନମନ୍ତ୍ରୀ ଶ୍ରୀ ବାଜପେୟୀଙ୍କୁ ପତ୍ର ମାଧ୍ୟମରେ ଅନୁରୋଧ କରିଥିଲେ । ପ୍ରଧାନମନ୍ତ୍ରୀ କେନ୍ଦ୍ରସରକାରଙ୍କ ନିଷ୍ପତ୍ତି ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଛନ୍ତି ।

## ମୁଖ୍ୟମନ୍ତ୍ରୀଙ୍କ ବାତ୍ୟାବିଧ୍ୱସ୍ତ କେନ୍ଦ୍ରାପଡ଼ା ଓ ଏରସମା ଅଂଚଳ ଗସ୍ତ

ଗତ ନଭେମ୍ବର ୧୬ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ ବାତ୍ୟାବିଧ୍ୱସ୍ତ କେନ୍ଦ୍ରାପଡ଼ା ଜିଲ୍ଲା ଏବଂ ଯାଜପୁର ଜିଲ୍ଲା ଗସ୍ତ କରିଥିଲେ ।

କେନ୍ଦ୍ରାପଡ଼ା ଏବଂ ମହାକାଳପଡ଼ା ବ୍ଲକର ଜାମନଗର ଗସ୍ତ କରି ମୁଖ୍ୟମନ୍ତ୍ରୀ କେନ୍ଦ୍ରାପଡ଼ାଠାରେ ରିଲିଫ୍ ଏବଂ ଉଦ୍ଧାର କାର୍ଯ୍ୟର ସମୀକ୍ଷା କରିଥିଲେ । ବିପନ୍ନମାନଙ୍କୁ ଯେପରି ରିଲିଫ୍ ସାମଗ୍ରୀ ଠିକ୍ ଭାବେ ମିଳିପାରିବ ସେଥିପ୍ରତି ଯଥେଷ୍ଟ ଧ୍ୟାନ ଦେବାକୁ ସେ ଜିଲ୍ଲାପାଳଙ୍କୁ କଡ଼ା ନିର୍ଦ୍ଦେଶ ଦେଇଛନ୍ତି । ବିପନ୍ନମାନଙ୍କୁ ସାକ୍ଷାତ କରି ସେ ରିଲିଫ୍ ଯୋଗାଣ ସଂପର୍କରେ ମଧ୍ୟ ପଚାରି ବୁଝିଥିଲେ ।

ପରେ ପରେ ମୁଖ୍ୟମନ୍ତ୍ରୀ ଯାଜପୁର ଜିଲ୍ଲାର କ୍ଷତିଗ୍ରସ୍ତ ସୁନ୍ଦରପୁର ଗସ୍ତ କରିଥିଲେ । ସେଠାରେ ବାତ୍ୟା କ୍ଷୟକ୍ଷତି ଅଂଚଳ ପରିଦର୍ଶନ କରି ଜିଲ୍ଲାପାଳଙ୍କ ସହ ରିଲିଫ୍ ଯୋଗାଣ ସଂପର୍କରେ ଆଲୋଚନା କରି ବିପନ୍ନମାନଙ୍କୁ ଯେପରି ଶୀଘ୍ର ରିଲିଫ୍ ମିଳେ ସେଥିପ୍ରତି ଯତ୍ନବାନ ହେବାକୁ ନିର୍ଦ୍ଦେଶ ଦେଇଥିଲେ ।

ଏହି ଗସ୍ତ କାଳରେ ରାଜ୍ୟ ସଭା ସଦସ୍ୟ, ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଏବଂ ରାଜସ୍ୱମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ ପ୍ରଭୃତି ମୁଖ୍ୟମନ୍ତ୍ରୀଙ୍କ ସହ ବାତ୍ୟାବିପନ୍ନ ଅଂଚଳ ବୁଲି ଦେଖିଥିଲେ ।

ଗତ ନଭେମ୍ବର ୧୪ ତାରିଖରେ ଡକ୍ଟର ଗିରିଧର ଗମାଙ୍ଗ ବାତ୍ୟା ବିପନ୍ନ ଏରସମା ଅଂଚଳ ଗସ୍ତ କରିଥିଲେ । ଏରସମା, ଜଗନ୍ନାଥପୁର ଠାରେ ରିଲିଫ୍ ବଣ୍ଟନ କେନ୍ଦ୍ର ପରିଦର୍ଶନ କରିବା ସଙ୍ଗେ ସଙ୍ଗେ ରିଲିଫ୍ ଯୋଗାଣ ଏବଂ ବଣ୍ଟନ ସଂପର୍କରେ ଜିଲ୍ଲାପାଳ, ଉପଜିଲ୍ଲାପାଳ, କର୍ତ୍ତବ୍ୟରତ ସରକାରୀ ଓ ବେସରକାରୀ କର୍ମକର୍ତ୍ତାମାନଙ୍କ ସହ ଆଲୋଚନା କରିଥିଲେ ।

ମୁଖ୍ୟମନ୍ତ୍ରୀଙ୍କ ସହ କୃଷି ଜଳସଂପଦ ମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ, ରାଜସ୍ୱମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ ମଧ୍ୟ ବାତ୍ୟାବିଧ୍ୱସ୍ତ ଅଂଚଳ ଗସ୍ତ କରିଥିଲେ ।

## ତାମିଲନାଡ଼ୁରୁ ଦ୍ୱିତୀୟ ରିଲିଫ୍ ଟ୍ରେନ୍

ତାମିଲନାଡୁ ସରକାର ପଠାଉଥିବା ଦ୍ୱିତୀୟ ରିଲିଫ୍ ଟ୍ରେନ୍‌ଟି ଭୁବନେଶ୍ୱରରେ ପହଞ୍ଚିଛି । ୨୦ଟି ୱାଗନ୍ ବିଶିଷ୍ଟ ଏହି ରିଲିଫ୍ ଟ୍ରେନ୍‌ରେ ୧୦ଲକ୍ଷ ୭୭ ହଜାର ଶାଢ଼ୀ ଓ ଧୋତି ଏବଂ ୩୫ ଟନ୍ ଗୁଣ୍ଡ ଦୁଗ୍ଧ ଆସିଛି । ଏହା ଓଡ଼ିଶାର ବାତ୍ୟାକ୍ଳିଷ୍ଟ ଲୋକମାନଙ୍କ ପାଇଁ ତାମିଲନାଡୁ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିବା ୪.୫୦ କୋଟି ଟଙ୍କା ରିଲିଫ୍ ସାହାଯ୍ୟର ଅଂଶ ବିଶେଷ ।

ସୂଚନାଯୋଗ୍ୟ ଯେ ତାମିଲନାଡୁ ରିଲିଫ୍ ସାମଗ୍ରୀ ନେଇ ପୂର୍ବରୁ ଗୋଟିଏ ଟ୍ରେନ୍ ଆସିଥିଲା । ଏତଦ୍‌ବ୍ୟତୀତ ତାମିଲନାଡୁ ସରକାର ପଠାଉଥିବା ୧୦୦ ଜଣ ଡାକ୍ତର ଓ ପାରା ମେଡ଼ିକାଲ ଷ୍ଟାଫ୍ ବର୍ତ୍ତମାନ କେନ୍ଦ୍ରାପଡ଼ା, ପୁରୀ, କଟକ ଓ କେନ୍ଦୁଝର ଜିଲ୍ଲାର ବାତ୍ୟାଞ୍ଚଳରେ ସ୍ୱାସ୍ଥ୍ୟସେବା କାର୍ଯ୍ୟ ଚାଲୁ ରଖିଛନ୍ତି । ତାମିଲନାଡୁ ସରକାରଙ୍କର ସମାଜ ମଙ୍ଗଳ ସଚିବ ଶ୍ରୀ ଶକ୍ତିକାନ୍ତ ଦାସ, ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାନ କରି ତାମିଲନାଡୁର ଆସୁଥିବା ରିଲିଫ୍ ସାମଗ୍ରୀ ବଣ୍ଟନର ସଂଯୋଜନା କରୁଛନ୍ତି ।

## ଦିବ୍ୟ ଜୀବନ ସଂଘ ପକ୍ଷରୁ ଶବସତ୍କାର

ଦିବ୍ୟଜୀବନ ସଂଘ, ଋଷିକେଶ ତରଫରୁ ସ୍ୱାମୀ ଚିଦାନନ୍ଦ ବାତ୍ୟାବିଧ୍ୱସ୍ତ ଏରସମା ବ୍ଲକ୍‌ର ଗୋଡ଼ା ପଞ୍ଚାୟତରେ ରହି ସେବାକାର୍ଯ୍ୟ ପରିଚାଳନା କରୁଛନ୍ତି । ଏହି ସେବା କାର୍ଯ୍ୟ ପାଇଁ କୁଆଁର ବେଢା ଗ୍ରାମରେ ସେବା ଶିବିର ସ୍ଥାପନ କରାଯାଇଛି । ସଂଘ ତରଫରୁ ଗଡ଼ହରିଶପୁର, ଚନ୍ଦ୍ରପୁର, ଜାନକୀଦେଇପୁର ଓ ଗୋଡ଼ା ପଂଚାୟତରେ ୧୦୦୦ ରୁ ଉର୍ଦ୍ଧ୍ୱ ଲୋକଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯାଉଛି ।

ବ୍ରହ୍ମପୁର, କଟକ, ଭୁବନେଶ୍ୱର, ଆଦିକାରୁ ଆସିଥିବା ଏହି ସଂଘର ପ୍ରାୟ ୩୦ଜଣ ସ୍ୱେଚ୍ଛାସେବୀ ମଣିଷ, ଗୋରୁ ଗାଈଙ୍କ ଶବ ସତ୍କାର କାର୍ଯ୍ୟ ଗତ ୮ ତାରିଖରୁ ଆରମ୍ଭ କରିଛନ୍ତି । ସେହିଦିନ ପ୍ରାୟ ୩୦୦ଟି ଗାଈଗୋରୁ ମଢ଼ା ଓ ୩୦ଟି ମଣିଷ ଶବ ସତ୍କାର କରି ସାରିଛନ୍ତି । ୧୧ ଓ ୧୨ ତାରିଖରେ କୁଆଁର ବେଢା ଗ୍ରାମ, ଗଡେଶ୍ୱରର ପ୍ରାୟ ୨୦ଜଣ ସଦସ୍ୟ ଓ ଭୁବନେଶ୍ୱର 'ସିଭିଲ୍ ଡିଫେନ୍ସ'ର ସ୍ୱେଚ୍ଛାସେବୀମାନଙ୍କ ସହ ମିଶି ଆର୍ଡଗୀ ଗ୍ରାମଠାରେ ୧୬୦ ଟି ଗୋରୁ ଗାଈ ଓ ୧୫ଟି ମଣିଷ ଶବ ସତ୍କାର ଏହି ସଂଘ ତରଫରୁ କରାଯାଇଛି । ସତ୍ୟସାଇ ସେବା ସମିତି ସହ ମିଶି ଜାନକୀଦେଈପୁର ଓ ବଳରାମପୁର ଠାରେ ପ୍ରାୟ ୭୦ଟି ଗାଈ ଗୋରୁ ଓ ୩ ଟି ମଣିଷ ଶବ ସତ୍କାର କରାଯାଇଛି । ଏହି ସଂଘ ଭୁବନେଶ୍ୱର ମ୍ୟୁନିସିପାଲିଟି ମେହେନ୍ତରଙ୍କ ସହିତ ମିଶି ମଢ଼ା ସତ୍କାର କରିଛନ୍ତି ବୋଲି ସେକ୍ରେଟେରୀ ଶ୍ରୀ ଭାଗୀରଥି ମହାପାତ୍ର ଜଣାଇଛନ୍ତି ।

## ଏରସମା ବ୍ଲକରେ ପର୍ଯ୍ୟାପ୍ତ ପରିମାଣରେ ରିଲିଫ୍ ସାମଗ୍ରୀ

ଗତ ପ୍ରଳୟଙ୍କରୀ ବାତ୍ୟାରେ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଥିବା ଏରସମା ଅଞ୍ଚଳରେ ପର୍ଯ୍ୟାପ୍ତ ପରିମାଣରେ ରିଲିଫ୍ ସାମଗ୍ରୀ ଯୋଗାଇ ଦିଆଯାଉଛି ବୋଲି ଏରସମା ବ୍ଲକ ଦାୟିତ୍ୱରେ ଥିବା ଅଫିସର ଶ୍ରୀ ଦିଗମ୍ବର ମହାନ୍ତି ପ୍ରକାଶ କରିଛନ୍ତି ।

ଗତ ୧୧ ତାରିଖରେ ସୂଚନା ଓ ଲୋକ ସଂପର୍କ ବିଭାଗ ଶାସନ ସଚିବ ଶ୍ରୀ ଜୟନ୍ତ କୁମାର ଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରାଜ୍ୟସ୍ତରୀୟ ସାମ୍ବାଦିକମାନେ ଏରସମା ବାତ୍ୟାଞ୍ଚଳ ପରିଦର୍ଶନରେ ଯାଇଥିଲେ । ଏରସମା ବ୍ଲକ୍‌ର ରିଲିଫ ଦାୟିତ୍ୱରେ ଥିବା ଅଫିସର ଦିଗମ୍ବର ମହାନ୍ତି ସାମ୍ବାଦିକମାନଙ୍କୁ କହିଲେ ଯେ ନଭେମ୍ବର ୫ ତାରିଖରେ ରିଲିଫ୍ ଦାୟିତ୍ୱ ଗ୍ରହଣ କରିବା ପରେ ୬ ତାରିଖରେ ରିଲିଫ୍ ଯୋଗାଣ କାର୍ଯ୍ୟ ତ୍ୱରାନ୍ୱିତ କରୁଛନ୍ତି । ବ୍ଲକ୍‌ର ୨୪ଟି ପଞ୍ଚାୟତରେ ଏକ ଲକ୍ଷ ୭୦ ହଜାର ଲୋକ ସଂପୂର୍ଣ୍ଣ ଭାବରେ କ୍ଷତିଗ୍ରସ୍ତ ହୋଇଥିବା ବେଳେ ୧୦ ଫୁଟରୁ ବନ୍ୟାଜଳ ମାଡ଼ିଆସିବା ଯୋଗୁଁ ପ୍ରାୟ ସମସ୍ତଙ୍କ ଘରଦ୍ୱାର ଭାଙ୍ଗିପଡ଼ିଛି ବୋଲି ଶ୍ରୀ ମହାନ୍ତି କହିଛନ୍ତି । ଗତ ୮ ଦିନ ହେବ ରିଲିଫ୍ ସାମଗ୍ରୀ ବିଭିନ୍ନ ପଞ୍ଚାୟତକୁ ପର୍ଯ୍ୟାପ୍ତ ପରିମାଣରେ ଯୋଗାଇ ଦିଆଗଲାଣି । ଏହି ରିଲିଫ୍ ସାମଗ୍ରୀରେ ଚାଉଳ, ଡାଲି, ଚୁଡ଼ା, କିରୋସିନି, କେୟାରର ଆସିଥିବା ମକ୍କାଚୁଡ଼ା, ଖାଇବା ତେଲ ସହ ଧୋତି, ଶାଢ଼ୀ, ବେଡ୍‌ସିଟ୍ ଲୋକମାନଙ୍କୁ ଯୋଗାଇ ଦିଆଯାଉଛି ବୋଲି ସୂଚନା ଦେଇ ଶ୍ରୀ ମହାନ୍ତି କହିଲେ ଯେ, ବିଭିନ୍ନ ଗ୍ରାମପଞ୍ଚାୟତରେ ସରପଞ୍ଚମାନଙ୍କଠାରୁ ମିଳିଥିବା ତଥ୍ୟ ଅନୁଯାୟୀ ସବୁଠାରୁ ଏହାଠାରୁ ବ୍ଲକ୍‌ରେ ବହୁତ ଲୋକ ମରିଛନ୍ତି ଏବଂ ପ୍ରାୟ ୫୦ ହଜାର ଗୋରୁଗାଈ ମରିଛନ୍ତି । ବିପନ୍ନ ଲୋକମାନଙ୍କ ପାଇଁ ଚିକିତ୍ସା ବ୍ୟବସ୍ଥା କରାଯାଇ ଚାରୋଟି ମେଡ଼ିକାଲ ଦଳ କାର୍ଯ୍ୟ କରୁଛନ୍ତି । ୧୩ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏରସମା ବ୍ଲକ୍‌ରେ ରହି ରିଲିଫ୍ କାର୍ଯ୍ୟ ତ୍ୱରାନ୍ୱିତ କରୁଛନ୍ତି । ଏରସମା ବ୍ଲକ୍‌ର ଯେଉଁସବୁ ପଞ୍ଚାୟତକୁ ଯିବା ପାଇଁ ଯାତାୟାତର ସୁବିଧା ଏ ପର୍ଯ୍ୟନ୍ତ ହୋଇପାରିନାହିଁ, ସେସବୁ ନାଗାକୁ ନାଉନ୍ ବୋଟ୍,

ସର୍କିଳାଙ୍କ ଦ୍ୱାରା ରିଲିଫ୍ କାର୍ଯ୍ୟ କରାଯାଉଛି । ବର୍ତ୍ତମାନ ସୁଦ୍ଧା ପଡ଼ିରହିଥିବା ଶବଗୁଡ଼ିକ ପୋଡ଼ିବା ପାଇଁ ଜିଲ୍ଲା ମ୍ୟୁନିସିପାଲ୍ କର୍ପୋରେସନର ୨୦୦ ଜଣ ମେହେନ୍ତର ଏଠାରେ ରହି ଶବଦାହ କାର୍ଯ୍ୟ କରିବା ସହିତ ମୃତ ଗୋରୁଗାଈଙ୍କୁ ପୋତିବା ଓ ପୋଡ଼ିବା କାର୍ଯ୍ୟ କରୁଛନ୍ତି । ଶ୍ରୀ ମହାନ୍ତି କହିଲେ ଯେ ପ୍ରାୟ ୨୦୦ ବେସାମରିକ ପ୍ରତିରକ୍ଷା ବାହିନୀ ମୁତୟନ କରାଯାଇଛି ।

ଏରସମା ବ୍ଲକ୍‌ରେ ମହାମାରୀ, ହଇଜା ରୋଗ ବ୍ୟାପିନାହିଁ । ପର୍ଯ୍ୟାପ୍ତ ପରିମାଣରେ ଲୋକମାନଙ୍କୁ ଔଷଧ ଯୋଗାଇ ଦିଆଯାଉଛି । ଜଳ ବିଶୋଧନ କରିବା ପାଇଁ ହାଲୋଜେନ୍ ବଟିକା, ବ୍ଲିଚିଂପାଉଡ଼ର ଯୋଗାଇ ଦିଆଯାଉଛି । ୨୦୦ ନଳକୂପର ଆବଶ୍ୟକତା ରହିଛି ବୋଲି ଶ୍ରୀ ମହାନ୍ତି ପ୍ରକାଶ କରିଥିଲେ ।

ଗୋରଖପୁର ଗୀତାପ୍ରେସ ସଂସ୍ଥା ତରଫରୁ ସୂଚନା ଓ ଲୋକସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ଦୁର୍ଗାମାଧବ ଦାଶଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏରସମାଠାରେ ପ୍ରାୟ ଏକ ହଜାର ବାତ୍ୟା ବିପନ୍ନ ଲୋକଙ୍କୁ ଖାଦ୍ୟଦ୍ରବ୍ୟ ଯୋଗାଇ ଦିଆଯାଇଥିଲା ।

## ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳର ଶିଶୁମାନଙ୍କୁ ବିସ୍କୁଟ୍ ବଣ୍ଟନ

ପ୍ରଳୟଙ୍କରୀ ବାତ୍ୟାଜନିତ କ୍ଷତିଗ୍ରସ୍ତ ଜିଲ୍ଲାଗୁଡ଼ିକର ବିପନ୍ନ ଶିଶୁମାନଙ୍କ ପାଇଁ ନଭେମ୍ବର ୧୨ ତାରିଖ ସୁଦ୍ଧା ରାଜ୍ୟରେ ପହଞ୍ଚିଥିବା ୩୩.୦୮ ମେଟ୍ରିକ୍ ଟନ୍ ଉଚ୍ଚ ପୁଷ୍ଟିଯୁକ୍ତ ବିସ୍କୁଟ୍ ମଧ୍ୟରୁ ୩୦.୦୮ ମେଟ୍ରିକ୍ ଟନ୍ ବିସ୍କୁଟ୍ ବଣ୍ଟନ କରାଯାଇଛି । ତନ୍ମଧ୍ୟରୁ ଜଗତସିଂହପୁର ଜିଲ୍ଲାର ଏରସମା ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୧.୪୮ ମେଟ୍ରିକ୍ ଟନ୍ ଓ ବାଲିକୁଦା ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୧.୪୦ ମେଟ୍ରିକ୍ ଟନ୍ ଏବଂ ଯାଜପୁର ଜିଲ୍ଲାର ବିଞ୍ଝାରପୁର ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୭.୨୦ ମେଟ୍ରିକ୍ ଟନ୍ ବିସ୍କୁଟ୍ ବଣ୍ଟନ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ଏହି ବଣ୍ଟନ ପ୍ରକ୍ରିୟା ମୁଖ୍ୟତଃ ଜଗତସିଂହପୁର, ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ଚାଲୁ ରହିଥିଲା ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।

## ରିଲିଫ୍ ପାଣ୍ଠିକୁ ପୂର୍ତ୍ତମନ୍ତ୍ରୀ ଶ୍ରୀ ସିଂହଙ୍କ ୧୨ ହଜାର ଟଙ୍କା ଦାନ

ପୂର୍ତ୍ତ, ନଗର ଉନ୍ନୟନ ତଥା ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ବାତ୍ୟା କ୍ଷତିଗ୍ରସ୍ତ ଲୋକମାନଙ୍କ ସହାୟତା ନିମନ୍ତେ ତାଙ୍କର ଏକମାସର ଦରମା ୧୨ ହଜାର ଟଙ୍କାର ଚେକ୍ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରିଛନ୍ତି ।

## ନନ୍ଦନକାନନ ପ୍ରାଣୀ ଉଦ୍ୟାନକୁ କେନ୍ଦ୍ରୀୟ ଚିଡ଼ିଆଖାନା କର୍ତ୍ତୃପକ୍ଷଙ୍କଠାରୁ ସହାୟତା

ପ୍ରଳୟଙ୍କରୀ ବାତ୍ୟାରେ ନନ୍ଦନକାନନ ପ୍ରାଣୀ ଉଦ୍ୟାନ ଧ୍ୱସ୍ତବିଧ୍ୱସ୍ତ ହୋଇ ଏହାର ପ୍ରଭୂତ କ୍ଷତି ହୋଇଛି । ୧୩ଟି ସ୍ତନ୍ୟପାୟୀ ଜୀବ ୨୨ଟି ପକ୍ଷୀ ମୃତ୍ୟୁବରଣ କରିବା ସହିତ ୫୨ଟି ସ୍ତନ୍ୟପାୟୀ ପ୍ରାଣୀ, ୫୮ଟି ପକ୍ଷୀ ଓ ୩୨ଟି ସରୀସୃପ ଭାଙ୍ଗି ଯାଇଥିବା ଜନ୍ତୁଗୃହ ମଧ୍ୟରୁ ବାହାରକୁ ପଳାଇ ଯାଇଛନ୍ତି । ସିଂହ, ବାଘ, ଭାଲୁ, ଚିତା, କଲରାପତ୍ରିଆ ବାଘ କିମ୍ବା କୁମ୍ଭୀର ଇତ୍ୟାଦି ମାଂସଭୋଜୀ ପ୍ରାଣୀ ଚିଡ଼ିଆଖାନା ବାହାରକୁ ଖସି ପଳାଇ ଯାଇ ପାରି ନାହାନ୍ତି । ବିଜୁଳି ଓ ଜଳ ଯୋଗାଣ ବ୍ୟବସ୍ଥା ଏହି ପ୍ରାଣୀ ଉଦ୍ୟାନରେ ବିଶେଷ ଭାବେ ବାଧାପ୍ରାପ୍ତ ହୋଇଛି ଓ ଏଗୁଡ଼ିକର ମରାମତି ତଥା ପୁନଃନିର୍ମାଣ କାର୍ଯ୍ୟ ଯୁଦ୍ଧକାଳୀନ ଭିତ୍ତିରେ କରାଯାଉଛି ।

ଗତ ନଭେମ୍ବର ୯ ତାରିଖ ଦିନ କେନ୍ଦ୍ରୀୟ ଚିଡ଼ିଆଖାନା କର୍ତ୍ତୃପକ୍ଷଙ୍କ ସଭ୍ୟ-ସଚିବ ଶ୍ରୀ ସି.ଆର୍.ସିହ୍ନା ନନ୍ଦନକାନନ ପରିଦର୍ଶନ କରି ଉକ୍ତ କର୍ତ୍ତୃପକ୍ଷଙ୍କ ସହିତ କ୍ଷୟକ୍ଷତି ସମ୍ବନ୍ଧରେ ଆଲୋଚନା କରିଛନ୍ତି ଓ ପ୍ରାଥମିକ ଅନୁଦାନ ଭାବେ ୨୦ ଲକ୍ଷ ଟଙ୍କାର ଏକ ବ୍ୟାଙ୍କ୍ ଡ୍ରାଫ୍ଟ ପ୍ରଦାନ କରିଛନ୍ତି । କ୍ଷୟକ୍ଷତି ସମ୍ବନ୍ଧରେ ସବିଶେଷ ତଥ୍ୟ ମିଳିଲା ପରେ ଅଧିକ ଅନୁଦାନ ଦେବା ପାଇଁ ମଧ୍ୟ ପ୍ରତିଶ୍ରୁତି ଦେଇଛନ୍ତି ।

ଜୀବଜନ୍ତୁମାନଙ୍କୁ ବର୍ତ୍ତମାନ ଯଥାସାଧ୍ୟ, ଜଳଯୋଗାଣ ତଥା ସ୍ୱାସ୍ଥ୍ୟସେବା ଯୋଗାଇ ଦେଇ ସେମାନଙ୍କୁ ସୁସ୍ଥ ରଖିବା ପାଇଁ ଚେଷ୍ଟା କରାଯାଉଛି । ନନ୍ଦନକାନନର ପୁନଃନିର୍ମାଣ ପାଇଁ ପ୍ରାୟ ୩.୫୦ କୋଟି ଟଙ୍କା ଦରକାର ହୋଇପାରେ । ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ ନହେବା ପର୍ଯ୍ୟନ୍ତ ନନ୍ଦନକାନନକୁ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ ରଖିବା ପାଇଁ ନିଷ୍ପତ୍ତି ନିଆଯାଇଛି- ବୋଲି ନନ୍ଦନକାନନ ପ୍ରାଣୀ ଉଦ୍ୟାନ ନିର୍ଦ୍ଦେଶକ ଜଣାଇଛନ୍ତି ।

## ଦିବ୍ୟ ଜୀବନ ସଂଘ ପକ୍ଷରୁ ବାତ୍ୟା ବିଧ୍ୱସ୍ତ ଅଞ୍ଚଳରେ ସେବା କାର୍ଯ୍ୟ

ବାତ୍ୟା ପ୍ରକୋପରେ କ୍ଷତିଗ୍ରସ୍ତ ଅଞ୍ଚଳମାନଙ୍କରେ ଦିବ୍ୟ ଜୀବନ ସଂଘ, ଋଷିକେଶର କର୍ମକର୍ତ୍ତା ଓ ସଭ୍ୟମାନେ ସେବାକାର୍ଯ୍ୟ ସୁଚାରୁ ରୂପେ କରୁଥିବାର ଖବର ମିଳିଛି । ଦିବ୍ୟ ଜୀବନ ସଂଘର ସଭାପତି ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ ନିର୍ଦ୍ଦେଶ କ୍ରମେ ସଂଘର ସଭ୍ୟମାନେ ଏରସମା ବ୍ଲକ୍ ଅନ୍ତର୍ଗତ ଗୋଡ଼ା ଗ୍ରାମ ପଞ୍ଚାୟତରେ କୁଆଁରବେଦୀ ସ୍କୁଲରୁ ରିଲିଫ୍ ସେବା କାର୍ଯ୍ୟ ପରିଚାଳନା କରୁଛନ୍ତି । ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ଦୁର୍ଗାମାଧବ ଦାଶ, ଜଗତସିଂହପୁର ଜିଲ୍ଲାପାଳ ଶ୍ରୀ ନୀତିଶ ଚନ୍ଦ୍ର ଓ ରିଲିଫ୍ କାର୍ଯ୍ୟ ପରିଚାଳନା ଦାୟିତ୍ୱରେ ଥିବା ଓ.ଏସ୍.ଡ଼ି. ଶ୍ରୀ ଦିଗମ୍ବର ମହାନ୍ତିଙ୍କ ପ୍ରସ୍ତାବ ପ୍ରସ୍ତାବ କ୍ରମେ ଗୋଡ଼ା ପଞ୍ଚାୟତକୁ ଏକ ପୋଷ୍ୟ ଗ୍ରାମ ଭାବରେ ଗ୍ରହଣ କରାଯାଉଛି । ସଂଘର କଟକ, ଭୁବନେଶ୍ୱର, ଆସ୍କା ଓ ବ୍ରହ୍ମପୁର ଶାଖା ପକ୍ଷରୁ ଏଠାରେ ପହଞ୍ଚିଥିବା ୬୨ ଜଣ ସ୍ୱେଚ୍ଛାସେବୀ ଶବଦାହ, ପାନୀୟ ଜଳଯୋଗାଣ, ଔଷଧ ବଣ୍ଟନ, ସ୍ୱାସ୍ଥ୍ୟସେବା ଆଦି କାର୍ଯ୍ୟରେ ନିୟୋଜିତ ଅଛନ୍ତି । ରାଉରକେଲା ଦିବ୍ୟଜୀବନ ସଂଘ ପକ୍ଷରୁ ଆସିଥିବା ଚୂଡ଼ା, ଗୁଡ଼, ଚିଆସିଲି, ମହମବତୀ, ବିସ୍କୁଟ ପ୍ୟାକେଟ୍ ବାତ୍ୟା ପ୍ରପୀଡ଼ିତ ଲୋକଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । ଏହି କାର୍ଯ୍ୟକ୍ରମରେ ଶ୍ରୀ ବସନ୍ତ କୁମାର ସାହୁ, ଶ୍ରୀ ଭାଗୀରଥି ମହାପାତ୍ର, ଶ୍ରୀ ଗଣେଶ୍ୱର ଦାସ, ଶ୍ରୀ ଆଦିତ୍ୟ ଚିଣ୍ଡାକ, ଶ୍ରୀ ବୀରକିଶୋର ଦାସ, ଶ୍ରୀ ପ୍ରଭାକର ଦାସ, ଚୌଧୁରୀ ଗୌରହରି ମିଶ୍ର, ସାମ୍ବାଦିକ ଶ୍ରୀ ପଦ୍ମନାଭ କୁମାର ମହାନ୍ତିଙ୍କ ସମେତ ୬୨

ଜଣ ସ୍ୱେଚ୍ଛାସେବୀ ସହାୟତା କରୁଛନ୍ତି । ସହରକନ୍ଦା, ଭଜାଖିଆ, ଶାଳିଓ, ଘୋଡ଼ା, ହରିଜନବସ୍ତି, ଆଉରିଙ୍ଗା, ମାଛପଡ଼ା, ବୀରକିଶୋରପୁର ଗ୍ରାମମାନଙ୍କରେ ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ ଉପସ୍ଥିତିରେ ରିଲିଫ୍ କାର୍ଯ୍ୟ ଚାଲୁ ରହିଛି । ଆସ୍କାର କାହ୍ନୁଚରଣ ଚୌଧୁରୀ, ବ୍ରହ୍ମପୁରର ପ୍ରକାଶ ଚନ୍ଦ୍ର ରଥ ଓ ବ୍ରହ୍ମଚାରୀ ରବି କୁମାର, ଭୁବନେଶ୍ୱରର କୃଷ୍ଣଚନ୍ଦ୍ର ତ୍ରିପାଠୀ, ସବ୍ୟସାଚୀ ମିଶ୍ର, ଆଲୋକ ଦାସ, ଜ୍ୟୋତିରଞ୍ଜନ ଦାସ ଓ ରାଧେଶ୍ୟାମ ଦାସ, କଟକର ପ୍ରଫେସର ହୃଦାନନ୍ଦ ରାୟ, ଅଧ୍ୟାପକ ପ୍ରଶାନ୍ତ କୁମାର ମିଶ୍ର, ନଟବର ସାହୁ, ଅଧିର ଖଟୁଆ, ଜାନୀପ୍ରସନ୍ନ ଶତପଥୀ ଓ ଶ୍ୟାମ ସୁନ୍ଦର ନାୟକ ପ୍ରମୁଖ ଏହି ସ୍ୱେଚ୍ଛାସେବୀ ଦଳରେ ମୁଖ୍ୟ ଭୂମିକା ଗ୍ରହଣ କରୁଛନ୍ତି । ଏହାଛଡ଼ା ମାଛିପଡ଼ା, ରାଜପୁର, ବୀରକିଶୋରପୁର, ଟାପୁର ଗ୍ରାମ ନିକଟରେ ପଡ଼ିଥିବା ଶତାଧିକ ଗାଈଗୋରୁଙ୍କ ଶବକୁ ବ୍ଲିଚିଂ ପାଉଡ଼ର ପକାଇ ଓ ମାଟିପୋତି ପରିବେଶକୁ ନିର୍ମଳ କରିବାରେ ପ୍ରବୃତ୍ତ ଅଛନ୍ତି । କୁଆଁରବେଦୀ ସ୍ଥଳଠାରେ ଦୈନିକ ଏକ ହଜାରରୁ ଉର୍ଦ୍ଧ୍ୱ ବାତ୍ୟା ବିପନ୍ନ ଲୋକଙ୍କୁ ରନ୍ଧାଖାଦ୍ୟ ଯୋଗାଇ ଦିଆଯାଉଛି ।

## କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସ୍ୱାସ୍ଥ୍ୟ ସେବା ସମ୍ପର୍କରେ ଆଲୋଚନା

ଓଡ଼ିଶାରେ ଘଟିଯାଇଥିବା ପ୍ରଳୟଙ୍କାରୀ ଝଡ଼ବାତ୍ୟା ପରେ ଦେଖା ଦେଇଥିବା ବିଭିନ୍ନ ସ୍ୱାସ୍ଥ୍ୟ ସମସ୍ୟାର ନିରାକରଣ ଦିଗରେ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦିଆଯିବ ବୋଲି କେନ୍ଦ୍ର ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଏନ୍.ଟି.ସାନମୁଗମ୍ ପ୍ରକାଶ କରିଛନ୍ତି । ଗତ ନଭେମ୍ବର ୧୧ ତାରିଖରେ ରାଜ୍ୟ ସଚିବାଳୟଠାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ଆଲୋଚନା ସଭାରେ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ କେନ୍ଦ୍ର ସରକାର ରାଜ୍ୟକୁ ବିପୁଳ ପରିମାଣରେ ବ୍ଲିଚିଂ ପାଉଡ଼ର, ହାଲୋଜିନ୍ ଟାବ୍ଲେଟ୍, ସାଲାଇନ୍ ଏବଂ ଆବଶ୍ୟକୀୟ ଔଷଧପତ୍ର ଯୋଗାଇ ଦେବେ ବୋଲି ପ୍ରକାଶ କରିଥିଲେ ।

ରାଜ୍ୟ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ, ସ୍ୱାସ୍ଥ୍ୟ ସଚିବ କୁମାରୀ ମୀନା ଗୁପ୍ତା ପ୍ରଳୟଙ୍କାରୀ ସାମୁଦ୍ରିକ ବାତ୍ୟା ତଥା ବନ୍ୟାରେ ହୋଇଥିବା କ୍ଷୟକ୍ଷତି ସମ୍ପର୍କରେ ଅବଗତ କରାଇଥିଲେ । ରାଜ୍ୟର ୧୨ଟି ଜିଲ୍ଲାରେ ଥିବା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ସବ୍‌ସେଣ୍ଟର ତଥା ଜିଲ୍ଲା ଚିକିତ୍ସାଳୟ, ରାଜ୍ୟରେ ଥିବା ୩ଟି ମେଡ଼ିକାଲ କଲେଜ ମଧ୍ୟରୁ ବ୍ରହ୍ମପୁର ଓ କଟକ ମେଡ଼ିକାଲ କଲେଜ ଓ ଔଷଧପତ୍ରର ବିପୁଳ କ୍ଷୟକ୍ଷତି ଘଟିଛି ବୋଲି ପ୍ରକାଶ କରିବା ସଙ୍ଗେ ସଙ୍ଗେ ବାତ୍ୟା ପ୍ରପୀଡ଼ିତ ଲୋକମାନଙ୍କ ସ୍ୱାସ୍ଥ୍ୟରକ୍ଷା ଦିଗରେ ନିଆଯାଇଥିବା ପଦକ୍ଷେପ ସମ୍ପର୍କରେ ଆଲୋଚନା କରିଥିଲେ । କେନ୍ଦ୍ରମନ୍ତ୍ରୀ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ପରିଦର୍ଶନ କରିଥିଲେ ।

ଗତ ନଭେମ୍ବର ୧୨ ତାରିଖରେ କେନ୍ଦ୍ର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଏନ୍.ଟି. ସାମୁଗାମ୍ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ସାକ୍ଷାତ କରି ଓଡ଼ିଶାର ବାତ୍ୟା ବିଧ୍ୱସ୍ତ ବିପନ୍ନମାନଙ୍କ ସ୍ୱାସ୍ଥ୍ୟସେବା ସମ୍ପର୍କରେ ଆଲୋଚନା କରିଥିଲେ । ବାତ୍ୟା ବିଧ୍ୱସ୍ତ ଅଞ୍ଚଳମାନଙ୍କରେ କ୍ଷତିଗ୍ରସ୍ତ ସ୍ୱାସ୍ଥ୍ୟକେନ୍ଦ୍ରଗୁଡ଼ିକର ମରାମତି, ପୁନର୍ନିର୍ମାଣ, ପର୍ଯ୍ୟାପ୍ତ ପରିମାଣରେ ଔଷଧ ଓ ପ୍ରତିଷେଧକ ଯୋଗାଣ, ସଂକ୍ରାମକ ରୋଗ ପ୍ରତିରୋଧ ପାଇଁ ଆବଶ୍ୟକୀୟ ସତର୍କତାମୂଳକ ପଦକ୍ଷେପ ନିମନ୍ତେ କେନ୍ଦ୍ର ସରକାର ଏବଂ ସ୍ୱେଚ୍ଛାସେବୀ ସଙ୍ଗଠନମାନଙ୍କର ପୂର୍ଣ୍ଣ ସହଯୋଗ ଏକାନ୍ତ ଆବଶ୍ୟକ ବୋଲି ମୁଖ୍ୟମନ୍ତ୍ରୀ ଡକ୍ଟର ଗମାଙ୍ଗ ମତବ୍ୟକ୍ତ କରିଥିଲେ ।

କେନ୍ଦ୍ର ସରକାରଙ୍କଠାରୁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଉଦ୍ଦେଶ୍ୟରେ ରାଜ୍ୟର ବକେୟା ପ୍ରାପ୍ୟ ଅନ୍ୟୂନ ୩୦ କୋଟି ଟଙ୍କା ତୁରନ୍ତ ପ୍ରଦାନ କରିବା ସହ ବାତ୍ୟାକ୍ଲିଷ୍ଟ ଜନତାଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ୱାସ୍ଥ୍ୟ ଯୋଜନା ପ୍ରସ୍ତୁତ କରି କାର୍ଯ୍ୟକାରୀ କରାଇବା ପାଇଁ ମୁଖ୍ୟମନ୍ତ୍ରୀ କେନ୍ଦ୍ର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀଙ୍କୁ ଅନୁରୋଧ କରିଥିଲେ ।

## ମୁଖ୍ୟମନ୍ତ୍ରୀଙ୍କ ବାତ୍ୟାବିଧ୍ୱସ୍ତ ନନ୍ଦନକାନନ ପରିଦର୍ଶନ

ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ ଗତ ନଭେମ୍ବର ୧୨ ତାରିଖରେ ନନ୍ଦନକାନନ ବୁଲି ଦେଖିଥିଲେ । ସବୁଜ ନନ୍ଦନକାନନ ଶ୍ରୀହୀନ ହୋଇପଡ଼ିଛି ଏବଂ ଏହାକୁ ପୁନରୁଦ୍ଧାର ନିମନ୍ତେ ଯଥେଷ୍ଟ ସମୟ ଆବଶ୍ୟକ ବୋଲି ବିଭାଗୀୟ କର୍ମକର୍ତ୍ତାମାନେ ପ୍ରକାଶ କରିଥିଲେ । ଏହି ଗସ୍ତ କାଳରେ ଅନ୍ୟମାନଙ୍କ ମଧ୍ୟରେ ଜଙ୍ଗଲ ବିଭାଗ ଶାସନ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ ପ୍ରମୁଖ ଉପସ୍ଥିତ ଥିଲେ ।

## ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ସୁଶ୍ରୀ ଫ୍ରିଡ଼ା ଟପ୍‌ନୋଙ୍କ ୨୧ ହଜାର ଟଙ୍କା ଦାନ

ସାଂସଦ ସୁଶ୍ରୀ ଫ୍ରିଡ଼ା ଟପ୍‌ନୋ ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗଙ୍କୁ ତାଙ୍କ ବାସଭବନରେ ଭେଟି ବାତ୍ୟା କ୍ଷତିଗ୍ରସ୍ତ ଲୋକମାନଙ୍କ ସହାୟତା ନିମନ୍ତେ ୨୧ ହଜାର ଟଙ୍କା ପ୍ରଦାନ କରିଛନ୍ତି ।

## କର୍ଣ୍ଣାଟକରୁ ଏକ କୋଟି ଟଙ୍କାର ରିଲିଫ୍ ସାମଗ୍ରୀ

କର୍ଣ୍ଣାଟକ ରାଜ୍ୟ ତରଫରୁ ବାତ୍ୟା ପ୍ରପୀଡ଼ିତ କେନ୍ଦ୍ରାପଡ଼ା ଜିଲ୍ଲାକୁ ପୋଷ୍ୟ ଜିଲ୍ଲାଭାବେ ଗ୍ରହଣ କରିବାପରେ ବାତ୍ୟାକ୍ଲିଷ୍ଟ ବିପନ୍ନମାନଙ୍କ ସହାୟତା ନିମନ୍ତେ ୧ କୋଟି ଟଙ୍କାର ଆବଶ୍ୟକୀୟ ସାମଗ୍ରୀ ପଠାଯାଇଛି । ଗତ ନଭେମ୍ବର ୧୦ ତାରିଖରେ ୧୦ ଗୋଟି ଟ୍ରକ୍ ବୋଝେଇ ରିଲିଫ୍ ସାମଗ୍ରୀ ପହଞ୍ଚିବାପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗ କଳିଙ୍ଗ ଷ୍ଟାଡ଼ିୟମଠାରେ ସେମାନଙ୍କୁ ସ୍ୱାଗତ ଜଣାଇଥିଲେ । ଏହି ରିଲିଫ୍ ସାମଗ୍ରୀ ମଧ୍ୟରେ ତାର୍ପୋଲିନ୍, ଚଟିଚିଡ଼ା, ଚିଆସିଲି, ମହମବତୀ ଇତ୍ୟାଦି ଅର୍ନ୍ତଭୁକ୍ତ । ମୁଖ୍ୟମନ୍ତ୍ରୀ ଡଃ. ଗମାଙ୍ଗ ଏହି ରିଲିଫ୍ ସାମଗ୍ରୀ ରାଜ୍ୟ ତରଫରୁ ଆନୁଷ୍ଠାନିକ ଭାବେ ଗ୍ରହଣ କରିବା ପରେ ସେ ସବୁ କେନ୍ଦ୍ରାପଡ଼ା ଜିଲ୍ଲାକୁ ଯୋଗାଣ କରାଯାଇଥିଲା ।

## କଲିକତା ରାମକୃଷ୍ଣ ବିବେକାନନ୍ଦ ମିଶନ ପକ୍ଷରୁ ରିଲିଫ୍ ପ୍ରଦାନ

ଉଚ୍ଚଶିକ୍ଷାମନ୍ତ୍ରୀ ଶ୍ରୀ ଭାଗବତ ମହାନ୍ତି ସମ୍ପ୍ରତି ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଶ୍ରୀ ଜ୍ୟୋତିବସୁଙ୍କ ସହିତ ଆଲୋଚନା କରି କେନ୍ଦ୍ରାପଡ଼ା ଅଞ୍ଚଳକୁ ରିଲିଫ୍

ଯୋଗାଇ ଦେବା ପାଇଁ ଅନୁରୋଧ କରିଥିଲେ । ତଦନୁସାରେ ହରିହରପୁରଠାରେ ଅବସ୍ଥାପିତ ରାମକୃଷ୍ଣ ବିବେକାନନ୍ଦ ମିଶନ୍ ତରଫରୁ ଶ୍ରୀ ମନୋରଞ୍ଜନ ମହାନ୍ତିଙ୍କ ନେତୃତ୍ୱରେ ଦୁଇ ଟ୍ରିପ୍ ରିଲିଫ୍ ସାମଗ୍ରୀ କେନ୍ଦ୍ରାପଡ଼ାର ବାତ୍ୟା ଅଂଚଳରେ ବଂଟନ କରାଯାଇଛି ।

ମିଶନ୍‌ର କର୍ମକର୍ତ୍ତାମାନେ ସ୍ଥାନୀୟ ବିପନ୍ନ ଜନତାଙ୍କ ସହିତ ପ୍ରତ୍ୟକ୍ଷ ଭାବରେ ମିଶି ଚାଉଳ, ଚୂଡ଼ା, ଆଳୁ, ପିଆଜ, ଛତୁଆ, ଚିନି, ଲୁଙ୍ଗି, ଗାମୁଛା, ଶାଢ଼ୀ, ମିଲ୍‌କ ପାଉଡ଼ର, ମହମବତୀ, ଦିଆସିଲି ଆଦି ବଣ୍ଟନ କରିଥିଲେ ।

## ବାତ୍ୟା କ୍ଷତିଗ୍ରସ୍ତ ଅଂଚଳରେ ଦୀର୍ଘସ୍ଥାୟୀ ଉନ୍ନୟନ ପାଇଁ ମୁଖ୍ୟମନ୍ତ୍ରୀଙ୍କୁ 'କେୟାର'ର ପ୍ରତିଶ୍ରୁତି

ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧକ୍ରମେ କ୍ଷତିଗ୍ରସ୍ତ ବିପନ୍ନ ଲୋକମାନଙ୍କୁ ସମସ୍ତ ସହାୟତା ଯୋଗାଇ ଦେବା ପାଇଁ 'କେୟାର' ସମେତ ବହୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ସଂଗଠନ ଆଗେଇ ଆସିଛନ୍ତି ।

ଗତ ନଭେମ୍ବର ୮ ତାରିଖରେ 'କେୟାର' ଭାରତର ରାଷ୍ଟ୍ରୀୟ ନିର୍ଦ୍ଦେଶକ ଟମ୍ ଆଲସିଡ଼ୋ ଓ କେୟାର ଓଡ଼ିଶାର ରାଜ୍ୟ ନିର୍ଦ୍ଦେଶକ ଶ୍ରୀ ବସନ୍ତ ମହାନ୍ତି ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗଙ୍କୁ ସାକ୍ଷାତ କରି ପ୍ରଳୟଙ୍କରୀ ବାତ୍ୟାରେ କ୍ଷତିଗ୍ରସ୍ତ ବିପନ୍ନମାନଙ୍କ ପାଇଁ ଦୀର୍ଘସ୍ଥାୟୀ ଉତ୍ଥାନ ଯୋଜନା ଓ ଏହାର ପରିଚାଳନା ସଂପର୍କରେ ବିଶଦ୍ ଭାବରେ ଆଲୋଚନା କରିଥିଲେ । ଓଡ଼ିଶାର ଆଠଟି କ୍ଷତିଗ୍ରସ୍ତ ବ୍ଲକ୍ ଯଥା - ଏରସମା, ଜଗତସିଂହପୁର, ଅସ୍ତରଙ୍ଗ, ବାଲିକୁଦା, କୁଜଙ୍ଗ, ମହାକାଳପଡ଼ା, ରାଜନଗର, ମାର୍ଶାଘାଇରେ ସମନ୍ୱିତ ଉନ୍ନୟନ ପାଇଁ ସ୍ୱାସ୍ଥ୍ୟ, ପରିମଳ, ବାସଗୃହ, ଗୋଷ୍ଠୀ ବିକାଶ, କୃଷି, ମତ୍ସ୍ୟଚାଷ ସମେତ ସ୍ୱୟଂ ସହାୟକ ଗୋଷ୍ଠୀ ଗଠିବାରେ ସାହାଯ୍ୟ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରାଯିବ ବୋଲି ଆଲୋଚନା ବେଳେ ପ୍ରକାଶ ପାଇଥିଲା । କେୟାର ରାଜ୍ୟ ନିର୍ଦ୍ଦେଶକ ଏହି ସମସ୍ତ ପ୍ରକଳ୍ପର-ବିକାଶରେ 'କେୟାର' ତରଫରୁ ଅକୁଣ୍ଠ ଚିତ୍ତରେ ସମସ୍ତ ସାହାଯ୍ୟ, ସହଯୋଗ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ଏହି ଆଲୋଚନା ବୈଠକରେ ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀ ବଳରାମ ଝାକର ପ୍ରମୁଖ ଉପସ୍ଥିତ ଥିଲେ ।

## ସମ୍ବଲପୁର ବସ୍ତ୍ରାଳୟ ହସ୍ତତନ୍ତ ସମବାୟ କର୍ମଚାରୀମାନଙ୍କ ଏକଦିନର ଦରମା ଦାନ

ଓଡ଼ିଶାର ବାତ୍ୟା ବିପନ୍ନମାନଙ୍କୁ ସହାୟତା ଯୋଗାଇ ଦେବାପାଇଁ ସମ୍ବଲପୁରୀ ବସ୍ତ୍ରାଳୟ, ହସ୍ତତନ୍ତ ସମବାୟ ସମିତି ଲିଃ., ବରଗଡ଼ର କର୍ମଚାରୀମାନେ ସେମାନଙ୍କର ଏକ ଦିନର ଦରମା ଟ. ୨୩,୫୫୧.୦୦ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରିଛନ୍ତି । ସମ୍ବଲପୁର ବସ୍ତ୍ରାଳୟ ହସ୍ତତନ୍ତ ସମବାୟ ସମିତି ତରଫରୁ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଆର୍.ସି. ରଥ ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗଙ୍କୁ ତାଙ୍କ ସରକାରୀ ବାସଭବନରେ ଭେଟି ଏହି ଅର୍ଥରାଶିକୁ ପ୍ରଦାନ କରିଥିଲେ ।

## ପାରସ ଫାର୍ମାସିଉଟିକାଲସ୍ ତରଫରୁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ୧୫ ଲକ୍ଷ ୪୩ ହଜାର ଟଙ୍କା ପ୍ରଦାନ

ଓଡ଼ିଶାର ବାତ୍ୟା ବିପନ୍ନଙ୍କ ସାହାଯ୍ୟ ନିମନ୍ତେ ପାରସ ଫାର୍ମାସିଉଟିକାଲସ୍ ତରଫରୁ ଅଧ୍ୟକ୍ଷ ଓ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଗିରିଶ ପଟେଲ ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗଙ୍କୁ ତାଙ୍କ କାର୍ଯ୍ୟାଳୟଠାରେ ଭେଟି ୧୫ ଲକ୍ଷ ୪୩ ହଜାର ଟଙ୍କାର ଚେକ୍ ପ୍ରଦାନ କରିଛନ୍ତି । ଏଥିସହିତ ତାଙ୍କ ସଂସ୍ଥା ପକ୍ଷରୁ ବାତ୍ୟା ବିପନ୍ନଙ୍କ ନିମନ୍ତେ ଏକ ହଜାର କମ୍ବଳ, ପଲିଥିନ୍ ଓ ଔଷଧ ପ୍ରଦାନ କରାଯିବ ବୋଲି ଶ୍ରୀ ପଟେଲ ପ୍ରକାଶ କରିଛନ୍ତି ।

## ବାତ୍ୟାକ୍ଲିଷ୍ଟଙ୍କ ପାଇଁ ଖଦୀ କମିଶନ୍‌ଙ୍କ ସହାୟତା

ଖଦୀ କମିଶନ୍ ଅଧ୍ୟକ୍ଷ ଡଃ ମହେଶ ପ୍ରସାଦ ଶର୍ମା ଗତ ନଭେମ୍ବର ୪ ତାରିଖରେ ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗଙ୍କୁ ସଚିବାଳୟଠାରେ ସାକ୍ଷାତ କରି ବାତ୍ୟାକ୍ଲିଷ୍ଟ କାରିଗରମାନଙ୍କୁ କମିଶନଙ୍କ ତରଫରୁ ତୁରନ୍ତ ସାହାଯ୍ୟ ଓ ପୁନର୍ବାସ ନିମନ୍ତେ ସହାୟତା ଯୋଗାଇ ଦିଆଯିବ ବୋଲି କହିଛନ୍ତି । ଖଦୀ କମିଶନ୍‌ଙ୍କ ପକ୍ଷରୁ ଖୁବ୍ ଶୀଘ୍ର ଟ୍ରକ୍ ବୋଝେଇ ଲୁଗାପଟା ଓ କମ୍ବଳ ଇତ୍ୟାଦି ଆସି ଓଡ଼ିଶାରେ ପହଞ୍ଚିବ ବୋଲି ଡଃ. ଶର୍ମା କହିଥିଲେ । ଆଲୋଚନା ବେଳେ ଡଃ. ଶର୍ମା କହିଲେ ଯେ ବାତ୍ୟା ବିପର୍ଯ୍ୟସ୍ତଙ୍କ ପାଇଁ ସ୍ୱତନ୍ତ୍ର ଥଇଥାନ ସହାୟତା ନିମନ୍ତେ ସି.ବି.ସି. ଯୋଜନାରେ ୧୦୦ କୋଟି ଟଙ୍କା ଋଣ ସହାୟତା ଯୋଗାଇ ଦିଆଯିବ ଏବଂ କାରିଗରମାନଙ୍କ ପାଇଁ ପୂର୍ବ ପ୍ରଚଳିତ ସହାୟତା ବ୍ୟବସ୍ଥାକୁ ସ୍ୱତନ୍ତ୍ର ଭାବରେ ଓଡ଼ିଶା ପାଇଁ ପୁନଃ ପ୍ରଚଳନ କରାଯିବ । ଓଡ଼ିଶା ଖଦୀ ବୋର୍ଡ଼ ସଚିବଙ୍କଠାରୁ ପୂର୍ଣ୍ଣାଙ୍ଗ ପ୍ରସ୍ତାବ ପାଇବା ପରେ ଏହି ସହାୟତା ଯୋଗାଇ ଦିଆଯିବ ବୋଲି ସେ କହିଥିଲେ ।

## ଅର୍ଥମନ୍ତ୍ରୀଙ୍କ ଏକମାସର ଦରମା ଦାନ

ଅର୍ଥମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଓଡ଼ିଶାର ବାତ୍ୟା ବିପନ୍ନମାନଙ୍କ ସହାୟତା ନିମନ୍ତେ ନବଗଠିତ "ଓଡ଼ିଶା ସାଇକ୍ଲୋନ୍ ରିଲିଫ୍ ଆଣ୍ଡ ରିକନ୍‌ଷ୍ଟ୍ରକସନ୍ ଫଣ୍ଡ"କୁ ତାଙ୍କର ଏକ ମାସର ଦରମା ୧୦,୨୫୭ ଟଙ୍କା ଦାନ କରିଛନ୍ତି ।

ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ଏହି ଅର୍ଥରାଶି ପ୍ରଦାନ କରି ମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ ଏଭଳି ପାଣ୍ଠି ଗଠନର ଆବଶ୍ୟକତା ଅତ୍ୟନ୍ତ ଜରୁରୀ । ରାଜ୍ୟରେ ଯେଉଁଭଳି କ୍ଷୟକ୍ଷତି ହୋଇଛି, ତାକୁ ଭରଣା କରିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର । ସେଥିପାଇଁ ମନ୍ତ୍ରୀ, ବିଧାୟକ, ସରକାରୀ କର୍ମଚାରୀମାନେ ସେମାନଙ୍କର ଏକ ଦିନର ଦରମାଠାରୁ ଆରମ୍ଭ କରି ଯଥା ସମ୍ଭବ ସାମର୍ଥ୍ୟ ଅନୁସାରେ ବିପନ୍ନମାନଙ୍କ ସାହାଯ୍ୟାର୍ଥେ ଏହି ପାଣ୍ଠିକୁ ଦାନ କରିବାକୁ ସେ ନିବେଦନ କରିଥିଲେ ।

## ମହାରାଷ୍ଟ୍ର ସରକାରଙ୍କ ୫ କୋଟି ଦାନ

ଓଡ଼ିଶାର ବାତ୍ୟାବିପନ୍ନମାନଙ୍କ ସହାୟତା ନିମନ୍ତେ ମହାରାଷ୍ଟ୍ର ସରକାର ୫କୋଟି ଟଙ୍କା, ୨ କୋଟି ଟଙ୍କାର ଔଷଧ, ଧୋତି ଓ ଚଦର, ୫ ଲକ୍ଷ ଟଙ୍କାର ଚୁଡ଼ା, ବିସ୍କୁଟ ଏବଂ ୩୦ ହଜାର ଟଙ୍କାର ଟିଆସିଲି ଏବଂ ମହମବତୀ ଇତ୍ୟାଦି ଦାନ କରିଛନ୍ତି ।

ଗତ ନଭେମ୍ବର ୯ ତାରିଖ ମହାରାଷ୍ଟ୍ର ସରକାରଙ୍କ ତରଫରୁ ରାଜ୍ୟ ଘରୋଇ ମନ୍ତ୍ରୀ ଶ୍ରୀ କୃପା ଶଙ୍କର ସିଂ, ଘରୋଇ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ଗୋପାଳ ଚନ୍ଦ୍ର ତ୍ରିପାଠୀ, ରାଜସ୍ୱ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ନନ୍ଦଲାଲ୍ ପ୍ରଧାନ ପ୍ରମୁଖ ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗଙ୍କୁ ଭେଟି ଏହି ଅର୍ଥ ରାଶିକୁ ଚେକ୍ ଆକାରରେ ପ୍ରଦାନ କରି ମହାରାଷ୍ଟ୍ର ସରକାରଙ୍କ ତରଫରୁ ଯୋଗାଇ ଦିଆଯାଇଥିବା ଅନ୍ୟାନ୍ୟ ଆବଶ୍ୟକୀୟ ସାହାଯ୍ୟ ସଂପର୍କରେ ପ୍ରକାଶ କରିଥିଲେ । ତତ୍ ସଙ୍ଗେ ସଙ୍ଗେ ମହାରାଷ୍ଟ୍ର ମନ୍ତ୍ରୀ ପରିଷଦର ସଦସ୍ୟମାନେ ସେମାନଙ୍କର ଏକ ମାସର ଦରମା ଓଡ଼ିଶାର ବିପନ୍ନମାନଙ୍କ ସାହାଯ୍ୟ ପାଇଁ ଦାନ କରିବେ ବୋଲି ସିଦ୍ଧାନ୍ତ ଗ୍ରହଣ କରାଯାଇଥିବା ବିଷୟ ମଧ୍ୟ ପ୍ରକାଶ କରିଥିଲେ ।

'ଓଡ଼ିଶା ରିଲିଫ୍ ପାଣ୍ଠି' ନାମରେ ମହାରାଷ୍ଟ୍ର ସରକାର ଏକ ପାଣ୍ଠି ଗଠନ କରିଥିବା ପ୍ରକାଶ କରି ମନ୍ତ୍ରୀ ଶ୍ରୀ କୃପା ଶଙ୍କର ସିଂ କହିଲେ ଯେ ଓଡ଼ିଶାରେ ଏଭଳି ପ୍ରଳୟଙ୍କାରୀ ବାତ୍ୟା ଏବଂ ବନ୍ୟା ଅତ୍ୟନ୍ତ ଦୁର୍ଭାଗ୍ୟଜନକ ଏବଂ ଦୁଃଖଦାୟକ । ବାତ୍ୟା କ୍ଷତିଗ୍ରସ୍ତମାନଙ୍କ ସାହାଯ୍ୟାର୍ଥେ ମହାରାଷ୍ଟ୍ର ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ନିଆଯାଇଥିବା ଅନ୍ୟାନ୍ୟ ସହାୟତା ମଧ୍ୟରେ ଜଗତ୍‌ସିଂହପୁର ଜିଲ୍ଲାରେ ସମ୍ପୂର୍ଣ୍ଣ ରିଲିଫ୍ ଏବଂ ପୁନର୍ଗଠନ କାର୍ଯ୍ୟକ୍ରମକୁ ମହାରାଷ୍ଟ୍ର ସରକାର ହାତକୁ ନେବା ଏକ ଉଲ୍ଲେଖନୀୟ ବିଷୟ । ଏହି ଜିଲ୍ଲାରେ ରିଲିଫ୍ ଏବଂ ଉଦ୍ଧାର କାର୍ଯ୍ୟ ତୁରନ୍ତ ଆରମ୍ଭ କରାଯିବ ବୋଲି ମନ୍ତ୍ରୀ ଶ୍ରୀ ସିଂ ପ୍ରକାଶ କରିଥିଲେ ।

## ବ୍ୟାଙ୍କ ଅଫ୍ ଇଣ୍ଡିଆ ତରଫରୁ ୨୧ ଲକ୍ଷ ଟଙ୍କା ଦାନ

ଓଡ଼ିଶାର ବାତ୍ୟାକ୍ଳିଷ୍ଟ ବିପନ୍ନମାନଙ୍କ ସାହାଯ୍ୟାର୍ଥେ ବ୍ୟାଙ୍କ ଅଫ୍ ଇଣ୍ଡିଆ ତରଫରୁ ୨୧ ଲକ୍ଷ ଟଙ୍କା ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରାଯାଇଛି ।

ବ୍ୟାଙ୍କ ଅଫ୍ ଇଣ୍ଡିଆର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଏସ୍. ରାଜଗୋପାଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ତାଙ୍କ ସଚିବାଳୟସ୍ଥ ପ୍ରକୋଷ୍ଠରେ ଭେଟି ଏହି ଚେକ୍ ପ୍ରଦାନ କରିଛନ୍ତି ।

ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଆଡ୍‌ମିନିଷ୍ଟ୍ରେସନ୍‌ର ନିର୍ଦ୍ଦେଶକ ଶ୍ରୀ ଏନ୍. ସି. ଗୁପ୍ତା ବାତ୍ୟାକ୍ଳିଷ୍ଟମାନଙ୍କ ସାହାଯ୍ୟାର୍ଥେ ୫୧ ହଜାର ଟଙ୍କାର ଚେକ୍ ମୁଖ୍ୟମନ୍ତ୍ରୀ ଡକ୍ଟର ଗମାଙ୍ଗଙ୍କୁ ପ୍ରଦାନ କରିଛନ୍ତି ।

## ବ୍ୟାଙ୍କ ଅଫ୍ ବରୋଦାର କର୍ମଚାରୀମାନଙ୍କ ଏକ ଦିନର ଦରମା ଦାନ

ବ୍ୟାଙ୍କ ଅଫ୍ ବରୋଦାର କର୍ମଚାରୀମାନେ ସେମାନଙ୍କର ଏକଦିନର ଦରମା ୨୦ ଲକ୍ଷ ଟଙ୍କା ବାତ୍ୟାକ୍ଳିଷ୍ଟ ବିପନ୍ନମାନଙ୍କ ସାହାଯ୍ୟାର୍ଥେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରିଛନ୍ତି ।

ବ୍ୟାଙ୍କ ଅଫ୍ ବରୋଦାର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ଶ୍ରୀ କେ. କାନ୍ନନ୍, ଡେପୁଟି ଜେନେରାଲ ମ୍ୟାନେଜର ଏବଂ ଆଞ୍ଚଳିକ ପରିଚାଳକ ପ୍ରମୁଖ ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ଭେଟି ଏହି ଚେକ୍ ପ୍ରଦାନ କରିବା ସଙ୍ଗେ ସଙ୍ଗେ ବ୍ୟାଙ୍କ ତରଫରୁ ବିପନ୍ନମାନଙ୍କ ସାହାଯ୍ୟାର୍ଥେ ୫୦ ଲକ୍ଷ ଟଙ୍କାର ରିଲିଫ୍ ସାମଗ୍ରୀ ଯୋଗାଇ ଦିଆଯିବା ବିଷୟ ପ୍ରକାଶ କରିଥିଲେ ।

ଓଡ଼ିଶାର ବାତ୍ୟାପ୍ରପୀଡ଼ିତମାନଙ୍କ ସାହାଯ୍ୟ ନିମନ୍ତେ ମାଲକାନଗିରି ଜିଲ୍ଲା ମାତିଲି ପଞ୍ଚାୟତ ସମିତିର ଜନସାଧାରଣ ୫୨ ହଜାର ଟଙ୍କା, ଓଡ଼ିଶା ଗ୍ରାମ ପଞ୍ଚାୟତ ସମିତି କର୍ମଚାରୀ ସଂଘ (ମାଲକାନଗିରି ଜିଲ୍ଲା ଶାଖା) ୮ ହଜାର ଟଙ୍କା ଓ ମାଲକାନଗିରି ଜିଲ୍ଲା ଏନ୍.ଏମ୍.ଆର୍. ପାଚିକା ସହାୟକ ଓ ଜଗୁଆଳି ସଂଘ ୨୧୦୦ ଟଙ୍କା ମୁଖ୍ୟମନ୍ତ୍ରୀଙ୍କ ପାଣ୍ଠିକୁ ଦାନ କରିଛନ୍ତି ।

## ବାତ୍ୟାବିପନ୍ନଙ୍କ ନିମନ୍ତେ ହଜୁର ମହାରାଜ୍ ଗୁରମିତ ରାମ ରହିମ ସିଂହଜୀଙ୍କ ସହାୟତା

ହରିଆନାର ସଚ୍ଚା ସୌଦା ସିରସା ଆଶ୍ରମର ହଜୁର ମହାରାଜ ଗୁରମିତ ରାମ ରହିମ ସିଂହଜୀ ଓଡ଼ିଶାର ବାତ୍ୟା ଓ ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କର ସହାୟତା ନିମନ୍ତେ ୧୬୦୦୦ କ୍ୱିଣ୍ଟାଲ ଖାଦ୍ୟସାମଗ୍ରୀ ଓ ୫ ଜଣ ଡାକ୍ତରଙ୍କ ସମେତ ଏକ ୩୦ ଜଣିଆ ସେବାଦଳ ପଠାଇଛନ୍ତି । ଗତ ୧୮ ତାରିଖରେ ସେମାନେ ପହଞ୍ଚିବା ପରେ ଚାଉଳ, ଅଟା ଓ ବିସ୍କୁଟ୍ ବଣ୍ଟନ ସହ ସ୍ୱାସ୍ଥ୍ୟସେବା କାର୍ଯ୍ୟରେ ନିୟୋଜିତ ଅଛନ୍ତି । ୧୯ ତାରିଖରେ ରାଜ୍ୟ ସରକାରଙ୍କ ପରାମର୍ଶକ୍ରମେ ସେମାନେ ୨୮୦ ଟ୍ରକ ଖାଦ୍ୟ ସାମଗ୍ରୀ ବଣ୍ଟନ କରି ସାରିଲେଣି ଓ ବଣ୍ଟନ କାର୍ଯ୍ୟ ଚାଲୁ ରହିଛି ଏବଂ ଏହି କାର୍ଯ୍ୟରେ ରାଜ୍ୟ ସରକାର ପୂର୍ଣ୍ଣ ସହଯୋଗ କରୁଛନ୍ତି ବୋଲି ଆଶ୍ରମର ମ୍ୟାନେଜର ଶ୍ରୀ ପି.ଲାଲ୍. ପ୍ରକାଶ କରିଛନ୍ତି ।

## କୋରାପୁଟ ପଞ୍ଚବଟୀ ଗ୍ରାମ୍ୟ ବ୍ୟାଙ୍କ କର୍ମଚାରୀମାନଙ୍କର ଦାନ

କୋରାପୁଟ ପଞ୍ଚବଟୀ ଗ୍ରାମ୍ୟ ବ୍ୟାଙ୍କର କର୍ମଚାରୀମାନେ ସେମାନଙ୍କର ଏକ ଦିନର ଦରମା ୧ ଲକ୍ଷ ୪୫ ହଜାର ୮୫୫ ଟଙ୍କା ୯୫ ପଇସା ଓଡ଼ିଶାର ବାତ୍ୟାକ୍ଳିଷ୍ଟ ବିପନ୍ନମାନଙ୍କର ସହାୟତା ନିମନ୍ତେ ଦାନ କରିଛନ୍ତି ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗଙ୍କୁ ଭେଟି ସେମାନେ ଏହି ଅର୍ଥରାଶିକୁ ଚେକ୍ ଆକାରରେ ପ୍ରଦାନ କରିଛନ୍ତି ।

## ବାତ୍ୟାଦୁର୍ଗତଙ୍କ ନିମନ୍ତେ ମିଥୁନ ଚକ୍ରବର୍ତ୍ତୀଙ୍କ ୫୧ ହଜାର ଟଙ୍କା ଦାନ

ବିଶିଷ୍ଟ ଚଳଚ୍ଚିତ୍ର ଅଭିନେତା ଶ୍ରୀ ମିଥୁନ ଚକ୍ରବର୍ତ୍ତୀ ଓଡ଼ିଶାର ବାତ୍ୟାକ୍ଳିଷ୍ଟମାନଙ୍କ ସାହାଯ୍ୟ ପାଇଁ ୫୧ହଜାର ଟଙ୍କା ଦାନ କରିଛନ୍ତି । ତାଙ୍କ ତରଫରୁ ବିଶିଷ୍ଟ ଚଳଚ୍ଚିତ୍ର ପ୍ରଯୋଜକ ତଥା ନିର୍ଦ୍ଦେଶକ ଶ୍ରୀ ମନମୋହନ ମହାପାତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ଭେଟି ଏହି ଚେକ୍ ପ୍ରଦାନ କରିଥିଲେ । ମୁଖ୍ୟମନ୍ତ୍ରୀଙ୍କୁ ଏକ ପତ୍ର ପଠାଇ ଚଳଚ୍ଚିତ୍ର ଅଭିନେତା ଶ୍ରୀ ଚକ୍ରବର୍ତ୍ତୀ ବାତ୍ୟାବିପନ୍ନଙ୍କ ନିମନ୍ତେ ଅଧିକ ସାହାଯ୍ୟ ସହଯୋଗ ଯୋଗାଇ ଦେବାପାଇଁ ଚେଷ୍ଟା ଅବ୍ୟାହତ ରହିବ ବୋଲି ପ୍ରକାଶ କରିଛନ୍ତି ।

# ବାତ୍ୟା ଅଞ୍ଚଳରେ ରାଜ୍ୟ ସରକାରଙ୍କ ତରଫରୁ ନିଆଯାଇଥିବା ପଦକ୍ଷେପ

ବାତ୍ୟା ଅଞ୍ଚଳରେ ଜନସାଧାରଣଙ୍କୁ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ନଭେମ୍ବର ୩୦ ତାରିଖ ସୁଦ୍ଧା ୨୧୦ଟି ନୂଆ ଗଭୀର ନଳକୂପ ବସାଯାଇଛି । ସେଥି ମଧ୍ୟରୁ କେନ୍ଦ୍ରାପଡ଼ା ଜିଲ୍ଲାରେ ୩୩ଟି, ଜଗତସିଂହପୁରରେ ୧୬ଟି, ପୁରୀରେ ୨୫ଟି, ଖୋର୍ଦ୍ଧାରେ ୫୦ଟି ଏବଂ କଟକ ଜିଲ୍ଲାରେ ୬ଟି ଅନ୍ତର୍ଭୁକ୍ତ । ଆଉ ୭୭ଟି ଅଧିକ ନଳକୂପର କାର୍ଯ୍ୟ ଯଥା: ପୁରୀରେ ୬୭ଟି ଓ ଜଗତସିଂହପୁରରେ ୧୦ଟି ବସାଇବା କାର୍ଯ୍ୟ ଆଗେଇ ଚାଲିଛି ।

ଜଗତସିଂହପୁର ଜିଲ୍ଲାରେ ୧୧୬ଟି ମାଗଣା ରନ୍ଧନ କେନ୍ଦ୍ର ପ୍ରତିଷ୍ଠା କରାଯାଇ ତା ୨୯.୧୧.୯୯ ସୁଦ୍ଧା ୯୩୫୦୦ ଜଣଙ୍କୁ ମାଗଣା ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଇଛି । ଯାଜପୁର ଜିଲ୍ଲାରେ ୬୧୬ଟି କେନ୍ଦ୍ର ଖୋଲାଯାଇ ୧,୫୩,୪୨୦ ଜଣଙ୍କୁ, କଟକ ଜିଲ୍ଲାରେ ୪୩ଟି କେନ୍ଦ୍ର ଖୋଲାଯାଇ ୧୨,୭୦୦ ଜଣଙ୍କୁ, ପୁରୀ ଜିଲ୍ଲାରେ ବେସରକାରୀ ସ୍ତରରେ ୨ଟି କେନ୍ଦ୍ର ଖୋଲାଯାଇ ୯୧୫୦ ଜଣଙ୍କୁ, ଭଦ୍ରକ ଜିଲ୍ଲାରେ ୨୦ଟି କେନ୍ଦ୍ର ଖୋଲାଯାଇ ୨,୦୦୦ ଜଣଙ୍କୁ ଓ କେନ୍ଦ୍ରାପଡ଼ା ଠାରେ ୪୦୧ଟି କେନ୍ଦ୍ର ଖୋଲାଯାଇ ୩,୪୦,୬୧୦ ଜଣଙ୍କୁ ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଇଛି ।

ଗଞ୍ଜାମ ଓ ଗଜପତି ଜିଲ୍ଲା ସମେତ ୧୪ଟି ଜିଲ୍ଲାରେ ୨୦,୨୨,୯୦୫ଟି ନୂଆ ଧୋତି ଓ ଶାଢ଼ୀ, ୧୫,୩୪,୪୮୬ ନୂଆ, ପୁରୁଣା ପୋଷାକ, ୯୫୧୩୮ଟି କମ୍ବଳ, ୮୨,୮୫୦ ବିଛଣା ଚାଦର, ୬୪,୧୪୫ଟି ବାସନକୁସନ, ୭୩,୯୧୦୪ଟି ପଲିଥିନ ଯୋଗାଇ ଦିଆଯାଇଛି ।

ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ରିହାତି ଦରରେ କୃଷକମାନଙ୍କୁ ୮୭୧୮.୬ କୁଇଣ୍ଟାଲ ବିଭିନ୍ନ ପ୍ରକାର ବିହନ ଯଥା: ମୁଗ, ବିରି, ଧାନ, ଗହମ, ସୂର୍ଯ୍ୟମୁଖୀ, ଚିନାବାଦାମ ବିହନ ଯୋଗାଇ ଦିଆଯାଇଛି ।

ବାତ୍ୟାଅଞ୍ଚଳରେ ୧୦,୨,୨୭୪ଟି ଶବସତ୍କାର କରାଯିବା ସଙ୍ଗେ ସଙ୍ଗେ ୩୯,୫,୦୯୯ ଆହତ ପଶୁଙ୍କୁ ଚିକିତ୍ସା କରାଯାଇଛି ଓ ୧୫୬୪ ମେଟ୍ରିକ୍ ଟନ୍ ଗୋଖାଦ୍ୟ ମଧ୍ୟ ଯୋଗାଇ ଦିଆଯାଇଛି ।

## ବାତ୍ୟା ବିପନ୍ନ ଶିଶୁମାନଙ୍କୁ ଉଚ୍ଚ ପୁଷ୍ଟିଯୁକ୍ତ ବିସ୍କୁଟ୍ ବଣ୍ଟନ

ବାତ୍ୟାଗ୍ରସ୍ତ ଜିଲ୍ଲାଗୁଡ଼ିକର ବିପନ୍ନ ଶିଶୁମାନଙ୍କ ପାଇଁ ଗତ ନଭେମ୍ବର ୧୮ ତାରିଖ ୱାର୍ଲଡ୍ ଫୁଡ୍ ପ୍ରୋଗ୍ରାମ୍ ତରଫରୁ ୧୯୧.୪୦ ମେଟ୍ରିକ୍ ଟନ୍ ଉଚ୍ଚ ପୁଷ୍ଟିଯୁକ୍ତ ବିସ୍କୁଟ୍ ବଣ୍ଟନ କରାଯାଇଛି । ତନ୍ମଧ୍ୟରୁ ବାଲିକୁଦା ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୩୬ ମେଟ୍ରିକ୍ ଟନ୍, ବିଶ୍ୱନାଥପୁର ଶିଶୁ ବିକାଶ ପ୍ରକଳ୍ପକୁ ୨୮.୮ ମେଟ୍ରିକ୍ ଟନ୍, ଦଶରଥପୁର ଶିଶୁ ବିକାଶ ପ୍ରକଳ୍ପକୁ ୨୧.୬୦ ମେଟ୍ରିକ୍ ଟନ୍, ଏରସମା ଶିଶୁ ବିକାଶ ପ୍ରକଳ୍ପକୁ ୨୫.୮ ମେଟ୍ରିକ୍ ଟନ୍, ଆଳି ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୪.୪୦ ମେଟ୍ରିକ୍ ଟନ୍, ବରୀ ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୪.୪୦ ମେଟ୍ରିକ୍ ଟନ୍, କୁଜଙ୍ଗ ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୪.୪୦ ମେଟ୍ରିକ୍ ଟନ୍, ରାଜନଗର ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୪.୪୦ ମେଟ୍ରିକ୍ ଟନ୍, ଅସ୍ତରଙ୍ଗ ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୧୪.୪୦ ମେଟ୍ରିକ୍ ଟନ୍ ଓ ରଘୁନାଥପୁର ସମନ୍ୱିତ ଶିଶୁ ବିକାଶ ପ୍ରକଳ୍ପକୁ ୭.୨୦ ମେଟ୍ରିକ୍ ଟନ୍ ବିସ୍କୁଟ ବଣ୍ଟନ କରାଯାଇଛି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।

## ଆକାଶ ମାର୍ଗରୁ ରାଜ୍ୟପାଳଙ୍କ ବାତ୍ୟାଗ୍ରସ୍ତ ଅଂଚଳ ପରିଦର୍ଶନ

ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ଏମ୍.ଏମ୍. ରାଜେନ୍ଦ୍ରନ୍ ଗତ ନଭେମ୍ବର ୧୬ ତାରିଖରେ ହେଲିକପ୍ଟର ଯୋଗେ ଓଡ଼ିଶାର ବାତ୍ୟାଗ୍ରସ୍ତ ଅଞ୍ଚଳ ପରିଦର୍ଶନ କରିଥିଲେ । କାକଟପୁର, ଜଗତସିଂହପୁର, ଏରସମା ଏବଂ ପାରାଦ୍ୱୀପ ଅଞ୍ଚଳରେ ହୋଇଥିବା କ୍ଷୟକ୍ଷତି ସମ୍ପର୍କରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ, ଅର୍ଥ ବିଭାଗ ଏବଂ ପଞ୍ଚାୟତିରାଜ ବିଭାଗର ଶାସନ ସଚିବ ଏହି ଗସ୍ତ ସମୟରେ ରାଜ୍ୟପାଳଙ୍କୁ ଅବଗତ କରାଇଥିଲେ । ଗସ୍ତ ଶେଷ କରି ଭୁବନେଶ୍ୱର ଫେରିବା ସମୟରେ ଶ୍ରୀ ରାଜେନ୍ଦ୍ରନ୍ ଭୁବନେଶ୍ୱର ବିମାନ ଘାଟିଠାରେ ଥିବା ବିଭିନ୍ନ ରିଲିଫ୍ ସାମଗ୍ରୀ ବୁଲି ଦେଖିଥିଲେ । ରାଜ୍ୟପାଳଙ୍କ ସହଧର୍ମିଣୀ ଶ୍ରୀମତୀ ସୁଶୀଳା ରାଜେନ୍ଦ୍ରନ୍ ମଧ୍ୟ ବାତ୍ୟା ଗ୍ରସ୍ତ ଅଞ୍ଚଳ ପରିଦର୍ଶନ କରିଥିଲେ ।

## ମୁଖ୍ୟମନ୍ତ୍ରୀଙ୍କ ବାତ୍ୟାକ୍ଲିଷ୍ଟ ଅଞ୍ଚଳ ଗସ୍ତ ଓ ବିପନ୍ନମାନଙ୍କୁ ବସ୍ତ୍ର ବଣ୍ଟନ

ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ ଗତ ନଭେମ୍ବର ୨୨ ତାରିଖରେ ଟାଙ୍ଗୀ-ଚୌଦ୍ୱାର ନିର୍ବାଚନ ମଣ୍ଡଳୀର କାଳିଆବୋଦା ଏବଂ ପଦ୍ମପୁର ଗସ୍ତ କରି ବିପନ୍ନମାନଙ୍କୁ ରିଲିଫ୍ ସାମଗ୍ରୀ ବଣ୍ଟନ ସମ୍ପର୍କରେ ବ୍ୟକ୍ତିଗତ ଭାବେ ତଦାରଖ କରିବା ସଙ୍ଗେ ସଙ୍ଗେ ପଦ୍ମପୁରଠାରେ ବାତ୍ୟାକ୍ଲିଷ୍ଟମାନଙ୍କୁ ଲୁଗାପଟା ବଣ୍ଟନ କରିଥିଲେ । ପଦ୍ମପୁରର ଆଖପାଖ କ୍ଷତିଗ୍ରସ୍ତ ଗ୍ରାମଗୁଡ଼ିକୁ ବୁଲି ଦେଖିବା ସଙ୍ଗେ ସଙ୍ଗେ ଲୋକମାନଙ୍କର ସୁବିଧା ଅସୁବିଧା ସମ୍ପର୍କରେ ପଚାରି ବୁଝିଥିଲେ । ମୁଖ୍ୟମନ୍ତ୍ରୀଙ୍କ ସହ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ସାଂସଦ ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ, କୃଷି ଓ ଜଳସମ୍ପଦ ମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ, ରାଜସ୍ୱମନ୍ତ୍ରୀ ଜଗନ୍ନାଥ ପଟ୍ଟନାୟକ, ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା, ପି.ସି.ସି.ର ସଭାପତି ଶ୍ରୀ ହେମାନନ୍ଦ ବିଶ୍ୱାଳ ପ୍ରମୁଖ ବାତ୍ୟାକ୍ଲିଷ୍ଟ ଅଞ୍ଚଳ ଗସ୍ତ କରିଥିଲେ ।

# ମହାବାତ୍ୟାରେ ବିଭିନ୍ନ ଜିଲ୍ଲାରେ କ୍ଷୟକ୍ଷତି

(ନଭେମ୍ବର ୩୦ ତାରିଖ ସୁଦ୍ଧା)

| ଜିଲ୍ଲାର ନାମ | ବ୍ଲକ/ ପୌର ପରିଷଦ | କ୍ଷତିଗ୍ରସ୍ତ ଗ୍ରାମ | ମୃତବ୍ୟକ୍ତି | ନିଖୋଜ ବ୍ୟକ୍ତି | ଆହତ ବ୍ୟକ୍ତି | ପଶୁ ସମ୍ପଦ କ୍ଷୟକ୍ଷତି | କ୍ଷତିଗ୍ରସ୍ତ ଗୃହ | କ୍ଷତିଗ୍ରସ୍ତ ଜନସଂଖ୍ୟା (ଲକ୍ଷ ହିସାବରେ) | ଶସ୍ୟହାନୀ ହୋଇଥିବା ଅଞ୍ଚଳ (ହେକ୍ଟର ହିସାବରେ) | |
|---|---|---|---|---|---|---|---|---|---|---|
| | | | | | | | | | ଧାନ | ଅନ୍ୟ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ |
| ପୁରୀ | ୧୧/୪ | ୧୭୧୪ | ୩୦୧ | X | ୨୪୦ | ୫୨୭୬୪ | ୧୩୪୮୪୧ | ୧୫.୦୦ | ୧୫୨୮୨୦ | ୯୮୬୫ |
| କଟକ | ୧୪/୪ | ୧୯୭୭ | ୪୭୧ | X | ୧୫୯୪ | ୬୨୧୧୪ | ୪୩୩୦୦୦ | ୨୩.୬୭ | ୧୯୬୮୮୩ | X |
| କେନ୍ଦ୍ରାପଡ଼ା | ୯/୨ | ୧୫୬୭ | ୪୬୯ | X | X | ୭୭୪୫୩ | ୨୭୯୦୯୧ | ୧୪.୦୦ | ୧୬୨୮୩୨ | X |
| ନୟାଗଡ଼ | ୨ | ୩୫୦ | ୩ | X | X | X | ୧୧୧୯୦ | ୧.୬୦ | ୬୯୨୧୨ | ୩୫୧୦ |
| ଖୋର୍ଦ୍ଧା | ୮/୩ | ୧୧୬୭ | ୯୧ | ୫ | ୨୦୧ | ୫୩୭୦୪ | ୯୫୫୪୦ | ୧୩.୧୧ | ୭୪୩୦୨ | ୫୭୨୮ |
| ଭଦ୍ରକ | ୬/୨ | ୧୩୫୬ | ୯୮ | ୨୮ | X | ୯୭୭୭ | ୧୧୬୮୮୦ | ୧୩.୪୭ | ୧୮୩୧୮୩ | X |
| କେନ୍ଦୁଝର | ୩/୧ | ୫୪୬ | ୩୧ | ୧ | X | ୮୬୦୬ | ୫୫୨୦୦ | ୨.୫୦ | ୧୦୭୭୪୦ | ୧୪୨୪୯ |
| ଢେଙ୍କାନାଳ | ୮/୩ | ୭୭୭ | ୫୫ | X | X | ୧୧୦୨୭ | ୬୨୨୩୦ | ୦୦.୨୦ | ୧୭୫୪୨୨ | X |
| ଜଗତ୍‌ସିଂହପୁର | ୮/୨ | ୧୩୦୮ | ୮୧୧୯ | X | X | ୧୧୦୬୮୨ | ୨୮୪୩୩୭ | ୧୨.୦୦ | ୧୦୦୫୦୫ | X |
| ଯାଜପୁର | ୧୦/୨ | ୧୧୬୦ | ୧୮୮ | ୬ | ୪୭୨ | ୧୯୦୮୨ | ୨୪୯୮୯୩ | ୧୫.୫୦ | ୧୮୭୨୨୫ | X |
| ବାଲେଶ୍ୱର | ୮/୩ | ୧୭୪୮ | ୪୯ | X | X | ୩୮୭୭୮ | ୯୬୮୩୦ | ୧୨.୨୬ | ୨୧୯୧୩୫ | X |
| ମୟୂରଭଞ୍ଜ | ୯/୨ | ୩୪୧ | ୧୦ | X | X | ୫୫୫ | ୯୫୦୦ | ୧.୯୮ | ୨୨୧୨୨୨ | X |
| ମୋଟ | ୯୬/୨୮ | ୧୪୦୦୦ | ୯୮୮୫ | ୪୦ | ୨୫୦୭ | ୪୪୪୫୩୧ | ୧୮୨୮୫୩୨ | ୧୨୫.୬୯ | ୧୮୧୦୦୯୧ | ୩୭୯୫୬ |

## ୧୯୯୯ ଅକ୍ଟୋବର ୧୭, ୧୮ ତାରିଖରେ ହୋଇଥିବା ବାତ୍ୟାଜନିତ କ୍ଷୟକ୍ଷତି

| | | | | | | | | | | |
|---|---|---|---|---|---|---|---|---|---|---|
| ଗଞ୍ଜାମ | ୨୨/୧୮ | ୩୧୬୨ | ୧୯୬ | ୩ | ୪୦୨ | ୧୦୫୧୬ | ୩୨୨୦୦୦ | ୨୧.୬୦ | ୯୨୪୯୬ | ୨୨୦୯ |
| ଗଜପତି | ୬ | ୨୪୫ | ୨ | X | X | X | ୬୬୧ | ୧.୫୦ | ୨୩୫୪ | X |
| ଖୋର୍ଦ୍ଧା | ୪/୨ | ୬୦ | ୪ | X | ୪ | ୬୨ | ୬୦୪୫ | ୧.୩୨ | ୧୩୫୨୮ | ୨୫୦ |
| ପୁରୀ | ୧୧/୩ | ୧୭୧୪ | ୨ | X | X | X | ୨୭୭୪ | ୧୩.୦୫ | ୩୫୪୪୨ | X |

# ଯୁଗେ ଯୁଗେ ଓଡ଼ିଶାର ମାଟି ଓ ମଣିଷ

• ଡକ୍ଟର ହରେକୃଷ୍ଣ ମହତାବ

ପ୍ରତିବର୍ଷ ବୈଶାଖ ଆରମ୍ଭରେ ପଞ୍ଜିକାର ଯେତେବେଳେ ଏହି ଦେଶର କୌଣସି ଗଜପତି ଗୌଡ଼େଶ୍ୱର କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ନବକୋଟୀଶ୍ୱର ପ୍ରତାପୀ ରାଜାଙ୍କ ନାମରେ ପ୍ରଚଳିତ ସମ୍ବତ୍ସରର ଶୁଭାଶୁଭ ଫଳ ଶୁଣାଏ, ସେତେବେଳେ ଓଡ଼ିଶାର ଅସଂଖ୍ୟ ଅଧିବାସୀଙ୍କ ମନରେ ସେଇ ହଜି ଯାଇଥିବା ଦିନଗୁଡ଼ିକର ବିଷଣ୍ଣ ସ୍ମୃତି ଝଲସି ଉଠେ । ତାଙ୍କୁ ବିଶ୍ୱାସ ହୁଏ ନାହିଁ ଯେ ସେ ସେଇ ବୀରତ୍ୱପୂର୍ଣ୍ଣ ପରମ୍ପରା ଓ ପିଢ଼ିର ବଂଶଧର । ସେ କଳ୍ପନା କରିପାରେ ନାହିଁ କି ସେଇ ଜନ୍ମଭୂମି ଦିନେ ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତୃତ ଥିଲା । ଶତାବ୍ଦୀ ପରେ ଶତାବ୍ଦୀ ବିତିଯାଇଛି ଏବଂ କଳିଙ୍ଗ, କଙ୍ଗୋଦ, ତ୍ରିକଳିଙ୍ଗ, ସପ୍ତକଳିଙ୍ଗ ଓ ଉତ୍କଳ ଦେଶର ବୀର ସନ୍ତାନମାନଙ୍କ ଶୌର୍ଯ୍ୟ, ବୀର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ଏହି ଭୂମି ବିଭୂତିତର ଓ ପରିପୁଷ୍ଟ ହୋଇଛି । ତାର ବିଶ୍ୱାସ ହୁଏନା ଯେ ସେ ସେଇ କଳିଙ୍ଗ ବୀରର ପ୍ରତିଭୂ । ସେଇ ଉତ୍କଳ ଶିଳ୍ପୀର ଅନୁଜ । ସେଇ କଙ୍ଗୋଦ-ସନ୍ତାନର ଉତ୍ତର-ପୁରୁଷ । ସେଇ ଓଡ୍ର ଦେଶର ପ୍ରାଣ ପ୍ରତିଷ୍ଠାତା ଓଡ଼ିଆ । ଆଜି ଏହି ପତନର ତମସାଚ୍ଛନ୍ନ ନିଶୀଥ ପ୍ରହରରେ ତାର ପୂର୍ବପୁରୁଷଙ୍କ ଆତ୍ମା ଖୋଜି ହେଉଛି– ତାମ୍ରଲିପ୍ତ, ତୋଷାଳି, କୀରଣ ସୁବର୍ଣ୍ଣ, ଦେଉଳିଦୋଳ, ମଞ୍ଜୁଷା, ରାଜମହେନ୍ଦ୍ରୀର ଉପାନ୍ତରେ ହଜି ଯାଇଥିବା ସ୍ମୃତିକୁ ।

ତାର ଏହି ସୁଜଳା ସୁଫଳା-ଶସ୍ୟ ଶ୍ୟାମଳା ଜନ୍ମଭୂମି ନଦୀ ମାତୃକା । ଅନାଦି କାଳରୁ ପ୍ରବାହିତ ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ଋଷିକୁଲ୍ୟା, ସୁବର୍ଣ୍ଣରେଖାର ଉର୍ବର ମୃତ୍ତିକାରେ ଗଠିତ ତାର ସମତଳ ଉପକୂଳ । ଈଷତ୍ ଲାଲ ପୀତ ରଙ୍ଗର ମିଶ୍ରଣରେ ନିର୍ମିତ ଏହି ପଟ୍ଟ ମାଟି, ବସନ୍ତର କୁସୁମ ସମ୍ଭାରରେ, କୋଇଲିର କୁହୁ ତାନରେ, ଉଷ୍ଣ ମନ୍ଦ ମଳୟରେ, ମରୀଚିକାର ମାୟାରେ, ଆଦ୍ୟ ଆଷାଢ଼ର ଅନନ୍ତ ଆକାଶରେ ଆଚ୍ଛାଦିତ ନୂତନ ମେଘର ସମ୍ଭାରରେ, ଶରତର ଜ୍ୟୋତ୍ସ୍ନା ବିଧୌତ ପୂର୍ଣ୍ଣିମା ରଜନୀରେ, କାଶ କୁସୁମ ପଙ୍କ୍ତିରେ, ଶୀତର ସୁନେଲି ଶସ୍ୟର ଉର୍ମିମାଳରେ-ଏକ ଅପରୂପ କାବ୍ୟ ପୁରୀରେ ପରିଣତ ହୋଇଯାଏ ।

ପୂର୍ବାଞ୍ଚଳ ସମତଳଭୂମିରେ ତାର ବନ ସୁଶୋଭିତ । ପଶ୍ଚିମାଞ୍ଚଳ ଆହୁରି ଅଧିକ ମନୋହର, ଆହୁରି ବର୍ଣ୍ଣାଢ୍ୟ ହୋଇଯାଏ, ନୂତନ ମେଘର ସମ୍ଭାରରେ । ତାର ପଶ୍ଚିମାଞ୍ଚଳରେ ମେଘମାନେ ଆଲିଙ୍ଗନ କରୁଥିବା ଗିରିରାଜ ଶିଖର, ତାର ସବୁଜ ଉପତ୍ୟକା, ତାର ଛାୟାଘନ ଗିରିକନ୍ଦର, ତାର ବଙ୍କିମ ପାହାଡ଼ି ନଦୀର ନୀଳ ବେଣୀ ଧରାପୃଷ୍ଠରେ କରେ ସ୍ୱର୍ଗର ରଚନା । ଏଇ ଦେଶର ରାମଗିରିରେ ନିର୍ବାସିତ ଯକ୍ଷ ନୂତନ ମେଘର ଶୀତଳ ସ୍ପର୍ଶରେ ହୋଇଯାଏ ବିରହାନ୍ୱିତ । ସେ ମେଘଦୂତକୁ ପଠାଏ ଅଳକାପୁରୀରେ ଥିବା ତାର ପ୍ରେମିକା ପାଖକୁ । ଯକ୍ଷର ଏହି ବିରହ ବ୍ୟଥାରେ ସେ ହୋଇଉଠେ ବ୍ୟଥିତ । ସେ ସେହି ବିରହୀ ଯକ୍ଷର ମର୍ମଜ୍ଞ । ସେ ମେଘଦୂତ । ତାର ପ୍ରାଣରେ ଅସଂଖ୍ୟ ପକ୍ଷୀଙ୍କ ରୋମାଞ୍ଚ । ବିରହର ଆକୁଳ ଆକୂତି । ବିଡ଼ମ୍ବିତ ରାତିର ଗୁଞ୍ଜନ । ତାର କଣ୍ଠରେ ମେଘ ମଲ୍ଲାର । ତା ଦେଶର କବିର ଗୀତିକା-ଚମ୍ପୂ, ଭଜିଆଳି । ସେ ଉଦ୍ଭ୍ରାନ୍ତ ହୋଇଉଠେ । ସେ ହୃଦୟର ତନ୍ମୟତାରେ ତଲ୍ଲୀନ ହୋଇଯାଏ ।

ମହୋଦଧିର ଉଚ୍ଛଳ ତରଙ୍ଗରେ ଏହି ଦେଶର ଚରଣ ପ୍ରକ୍ଷାଳନ ହୋଇଥାଏ । ତାର ସ୍ୱର୍ଣ୍ଣିମ ତଟଭୂମି ଶୈଳରାଜିତ । ତାର ସୂର୍ଯ୍ୟୋଦୟ ଚିତ୍ତାକର୍ଷକ । ତା'ର ସୂର୍ଯ୍ୟାସ୍ତ ତାର ରଙ୍ଗିମାମୟ ଜଳରେ ଇନ୍ଦ୍ରଧନୁର ଛବି ଆଙ୍କି ଦିଏ । ଏଇ ଦେଶର ସୂର୍ଯ୍ୟ ପୀଠ କୋଣାର୍କ । ସେ ସୂର୍ଯ୍ୟ ଉପାସକ । ସେ ଆଲୋକ-ସନ୍ତାନ । ତାର ଝାଉଁବନର ଗୁଞ୍ଜନରେ ସମୁଦ୍ରର ଆହ୍ୱାନ । ବେଳାଭୂମି ପକ୍ଷୀଙ୍କ ପ୍ରବାସରେ ତାର ଅନ୍ତହୀନ ଜଳରାଶିର ଅନନ୍ତ କାକଳି । ସେ ରହସ୍ୟ ସନ୍ଧାନୀ ଜଳଯାନ । ବିକ୍ଷୁବ୍ଧ ସାଗର ବକ୍ଷରେ ସେ ଦୁଃସାହସୀ କର୍ଣ୍ଣଧାର । ତାର ଆଖିରେ ଲବଙ୍ଗ ଦ୍ୱୀପର ସ୍ୱପ୍ନ । ତାର ମନରେ ଦାରୁଚିନିର ବନମାୟା । ଗୁଆଗଛରେ କର୍ପୂର ପ୍ରଗାଢ଼ ଗନ୍ଧ । ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ସେଲିବିସ୍‌ର ସମୁଦ୍ରରେ ତାର ନୌକା । ପ୍ରବାଳ ଦ୍ୱୀପର କେଉଁ ପାରିଜାତ ବନର ଶୀତଳ ଆଲୋକ ଛାୟାରେ ସେ ସୁସୁପ୍ତ ଶ୍ରମ କ୍ଳାନ୍ତ ସୌଦାଗର । ତାର ସ୍ମୃତିପଟରେ ଉଙ୍କି ମାରେ କାର୍ତ୍ତିକ ପୂର୍ଣ୍ଣିମାର ମେଘଢଙ୍କା ଅନ୍ତିମ ରାତ୍ରିର ଫିକା ଚାନ୍ଦ- ଆରତି ପୂଜା ପାଇଁ ତାମ୍ରଲିପ୍ତ, ପାଲୁର, ଚଳିତ୍ରା, ଦନ୍ତପୁର, ଘଣ୍ଟା, କଳିଙ୍ଗନଗର ବନ୍ଦରରେ ତାର ପ୍ରେୟସୀର ବିଷଣ୍ଣ ଚେହେରା, ତାର ଲଲାଟରେ ପ୍ରେୟସୀର ବିଦାୟ ତିଳକ ଓ ଅଶ୍ରୁର ଚନ୍ଦନ ।

ସେ କେବଳ ମସଲାରେ-ଭରା ଦ୍ୱୀପ ପୁଞ୍ଜ ପର୍ଯ୍ୟନ୍ତ ଯାତ୍ରା କରୁଥିବା ସୌଦାଗର ନୁହେଁ । ସେ ପଥଚାରୀ ବଣିକ । ତାର ପଣ୍ୟ-ସାମଗ୍ରୀ ବୋହି ନେଉଥିବା ଅସଂଖ୍ୟ ପଶୁଙ୍କ ପଦପାତ ଶବ୍ଦରେ ମୁଖର ହୋଇଉଠେ ଶ୍ୟାମ, ବ୍ରହ୍ମଦେଶ, ଚମ୍ପା, ଚୀନ, ତିବ୍ବତର ଦୁର୍ଗମ, ଦୂରନ୍ତ, ନୀରବ, ନିସ୍ତବ୍ଧ ଗିରିପଥ । ମାନସରୋବରର କେଉଁ ଦୁରାରୋହ୍ୟ ଶୀତଳ ପାହାଡ଼ି ନଦୀ ମୁହାଣରେ ବନହଂସୀର ଚକିତ ଭୀତତ୍ରସ୍ତ ଚଳ । ବ୍ରହ୍ମପୁତ୍ରର ଦୁଇ କୂଳେ ତାର ନୌକାର ତରଙ୍ଗ ବହି ବହି ଯାଏ । ନିବିଡ଼ ତାଇବନରେ ଗୁଞ୍ଜରିତ ହୁଏ ତାର ପ୍ରତିଧ୍ୱନି । ସେ ଆରବିୟାନ୍ ନାଇଟସ୍ କାହାଣୀର ନାୟକ । ସେ ଆରବ ମରୁଭୂମିରେ ଦୁଃସାହସୀ ବେଦୁଇନ । ସେ ଛଦ୍ମବେଶଧାରୀ, ରାଜ୍ୟତ୍ରାସୀ ବଣିକ ନୁହେଁ । ସେ ଶାନ୍ତିଦୂତ । ସେ କଳା-ସଂସ୍କୃତି, ସାହିତ୍ୟ, ସ୍ଥାପତ୍ୟ ଓ ଧର୍ମର ଉପନିବେଶ ସ୍ଥାପକ । ସେ ସଂହିତା, ଉପନ୍ୟାସ ।

ସେ କ୍ରାନ୍ତିର ଉପାସକ । ସେ ବିପ୍ଳବୀ, କ୍ରାନ୍ତିକାରୀ । ତାର ବିପ୍ଳବ ବହ୍ନିମୁଖୀ । ତାର ଧର୍ମରେ ବିପ୍ଳବର ଆହ୍ୱାନ । ତାର ସଂସ୍କୃତିରେ କ୍ରାନ୍ତିର

ଉତ୍ତରଣ । ତାର କଳା, ସ୍ଥାପତ୍ୟ, ପରମ୍ପରା ଅକ୍ଷୟ,ଅମର । ସେ ବୈଦିକ ଆର୍ଯ୍ୟ ସଂସ୍କୃତିର ବାହକ । ସେ ଜୀବନର ଛନ୍ଦହୀନ କାବ୍ୟକାର । ତାର ଦେବ ମନ୍ଦିରର ଗାତ୍ରରେ ମୈଥୁନ ଚିତ୍ର । ତାର ସାହିତ୍ୟରେ ପରକୀୟା ପ୍ରୀତିର ନିଃସଂକୋଚ ପ୍ରକାଶ । ତାର ଲୋକଗୀତରେ ମୁକ୍ତ ପ୍ରଣୟ ଇଙ୍ଗିତ । କାବ୍ୟରେ ଆତ୍ମୀୟଜନଙ୍କ ରତିପ୍ରିୟା ରୂପାୟନ । ତାର ପାର୍ବତୀ କାବ୍ୟ, 'ଗୀତଗୋବିନ୍ଦ' ତାର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ କାବ୍ୟ, ତାର କପଟପାଶା ପ୍ରତ୍ୟେକ ବ୍ରାହ୍ମଣ୍ୟ ଆର୍ଯ୍ୟ ସମାଜର ଧର୍ମୀୟ ନିପୀଡ଼ନ ବିରୁଦ୍ଧରେ ଏକ ସଫଳ ପ୍ରତିବାଦର ବଜ୍ରନିର୍ଘୋଷ । ସେ ଦ୍ରାବିଡ଼, ସେ ଶାକ୍ତ, ସେ ବୈଷ୍ଣବ । ସେ ଶ୍ରଦ୍ଧା ଭକ୍ତିର ଉଦ୍‌ଗୀତା, ଉନ୍ମୁକ୍ତ ପ୍ରେମର ପ୍ରବକ୍ତା । ସେ ଅନନ୍ତ ପ୍ରେମର ସ୍ରୋତ । ସେ 'କାମସୂତ୍ର'ର ରସିକ କାମୁକ । ସେ ସୁରା ସାକୀର ପ୍ରମତ୍ତ ଓମରଖାୟାମ ।

ତାର ଆଦିବାସୀ ସମାଜରେ ପ୍ରଚଳିତ 'ଘୋଟଲ', ବୟସ୍କ ଯୁବକ-ଯୁବତୀଙ୍କ ଶୟନାଗାର ଆତ୍ମୀୟ ସମାଜ ରଚନାର ଏକ ଉଦାହରଣ । ସେ ଅଦ୍ୱିତ୍ୱବାଦୀ । ଆତ୍ମପ୍ରବଞ୍ଚନା ତାର ପ୍ରକୃତିର ବିରୋଧୀ । ଯୌବନର ଅନିନ୍ଦ୍ୟ ରାଗରେ ତାର ନିଭୃତ ଚିତ୍ତ ଚିର ଗୁଞ୍ଜରିତ ।

ତାର ବିଶ୍ୱବନ୍ଦିତ ଜଗନ୍ନାଥ ମହାପ୍ରଭୁ ବୌଦ୍ଧାବତାର । ତାର ଶ୍ରୀମନ୍ଦିର ସର୍ବଧର୍ମ ସମନ୍ୱୟର ଏକ ଅମର କୀର୍ତ୍ତି । ଶାନ୍ତି, ମୈତ୍ରୀ, ସାମ୍ୟ, କରୁଣା ଓ ବିଶ୍ୱଭ୍ରାତୃତ୍ୱର କେନ୍ଦ୍ରଭୂମି । ତାର ଦେବତା ପତିତପାବନ । ଦଳିତ, ପତିତ, ଦୀନ, ପୀଡ଼ିତଙ୍କ ପାଇଁ ସେଇ ଦେବତାଙ୍କ ନୈବେଦ୍ୟ ମହାପ୍ରସାଦ । ଅମୃତ ଖାଦ୍ୟ, ସେଚନ-ବିଧି-ନିଷେଧ-ବିହୀନ । ତାର ଦେବତା ଅନ୍ଧବିଶ୍ୱାସର ଅଥର୍ବ ବିଗ୍ରହ ନୁହେଁ, ତାର ଦେବତା ସଚଳ 'ସାକ୍ଷୀଗୋପାଳ' । ତାର ଦେବତା ସଂସ୍କାରବଦ୍ଧ ମନର ଏକ ବିକାର ନୁହେଁ । ସେ ଜୀବନାନୁଗ ଅନୁଭୂତିର ଏକ ଅମୂର୍ତ୍ତ ପ୍ରେରଣା । ତାର ଦେବତା କେବଳ ନୈବେଦ୍ୟ ଭୋଗୀ ନୁହେଁ, ତାର ସଙ୍କଟରେ ସକ୍ରିୟ ସହାୟକ ମଧ୍ୟ । ତାର କାଞ୍ଚି ଅଭିଯାନ ପଥରେ ତାର ଦେବତାର ଗୋପନ ସମରଯାତ୍ରାର କାହାଣୀ ଅଲୌକିକ । ସୃଷ୍ଟିର ଗତିଶୀଳତା ସହ ତାଳ ମିଳାଇ ତାର ସମସ୍ତ ଜୀବନ ଦର୍ଶନ ଗତିମୟ ।

ମହାମାନବର କଲ୍ୟାଣ ପ୍ରତି ସେ ଚିରଜାଗ୍ରତ । ତାର କଣ୍ଠରେ ମହାଜାତିର ବିଜୟ ଗାଥା । ତାର ଚିତ୍ତ ଜାତି, ଧର୍ମ, ଗୋତ୍ରର ସଂକୀର୍ଣ୍ଣତାରୁ ବିମୁକ୍ତ । ସେ ବିରାଟ । ମହାୟାନ । ତାର ସ୍ୱପ୍ନବିଳାସୀ ମନ ଆକାଶସ୍ପର୍ଶୀ । ସେ ଜାଗତିକ ବନ୍ଧନର ଊର୍ଦ୍ଧ୍ୱରେ ପଦ୍ମଭୂ । ସେ ଉଦାର । ସେ ଶାନ୍ତି ଓ ସନ୍ଧିର ବାର୍ତ୍ତାବାହୀ କପୋତ । ସେ ବିରାଟ ସମନ୍ୱୟକାରୀ । ତା'ର ଗୃହରେ ପୀର ଓ ସତ୍ୟନାରାୟଣଙ୍କର ପୂଜା । ତାର କବି ପୀର ଓ ସତ୍ୟନାରାୟଣଙ୍କ ମହିମା କୀର୍ତ୍ତନରେ ମୁଖର । ସେ ହିନ୍ଦୁ ନୁହେଁ, ମୁସଲମାନ ନୁହେଁ, ବୌଦ୍ଧ ନୁହେଁ, ଜୈନ ନୁହେଁ । ସେ ପ୍ରକୃତିର ଅନବଦ୍ୟ ସୃଷ୍ଟି ମାନବ ସନ୍ତାନ । ସେ କଳା, ଗୋରା ବର୍ଣ୍ଣ ବିଭେଦର ପରିପନ୍ଥୀ । ତାର କୃଷ୍ଣାଙ୍ଗ ଜଗନ୍ନାଥ, ଶ୍ୱେତାଙ୍ଗ ବଳଭଦ୍ର ଓ ଲୋହିତାଙ୍ଗ ସୁଭଦ୍ରା ସଂସାରର ବିଚିତ୍ର ଦେହରଙ୍ଗର ସମନ୍ୱୟର ଏକ ଉଜ୍ଜ୍ୱଳ ପ୍ରତୀକ ।

ତାର ଏହି ଦେଶ ଦେବଲୀଳାଭୂମି । ତାର କଳ କଲ୍ଲୋଳିନୀ ସ୍ରୋତସ୍ୱିନୀ ବୈତରଣୀରେ ସ୍ନାନ କରି ଦ୍ରୌପଦୀ ପାପବିମୁକ୍ତା ହୋଇଥିଲେ । ଶାମ୍ବ ଶାପମୁକ୍ତ ହୋଇଥିଲେ । ଏହି ଦେଶରେ ଅସଂଖ୍ୟ ମୋକ୍ଷକାମୀ ଶ୍ରୁତିମନ୍ତ ହୋଇଛନ୍ତି । ସେ ପବିତ୍ର, ସେ ନିସ୍ପୃହ । ସେ ବୁଦ୍ଧ, ସେ ଅବିନଶ୍ୱର ଶୁଦ୍ଧ ।

ସେ ସଂସାରବିରାଗୀ । ସେ ଅନାସକ୍ତ । ସେ ନିରାଲମ୍ବ । ତାର 'ମନବୋଧ ଚଉତିଶା'ରେ ଜୀବନର ଅସାରତା ପ୍ରତିପାଦିତ । ସେ କାମ, କ୍ରୋଧ, ଲୋଭ, ମୋହ, ମଦ, ମତ୍ସର ଷଡ଼୍‌ବିଧ-ରିପୁ-କଳୁଷ ଠାରୁ ଊର୍ଦ୍ଧ୍ୱେ । ସେ ତ୍ୟାଗର ତେଜସ୍ୱିତାରେ ବହ୍ନିମାନ । ସେ ସବ୍ୟସାଚୀ, ଯୋଗାରୂଢ଼ । ସେ ଗୀତାର ସମାଧିପ୍ରାପ୍ତ କର୍ମଯୋଗୀ । 'ଲୋକସଂଗ୍ରହ', ତାର ଜୀବନାଦର୍ଶ, ସେ ଊର୍ଦ୍ଧ୍ୱରେତା । ତାର ନାଭିକମଳରେ ଓଁକାର । ପ୍ରଣବ, ନ୍ୟାସ, ମୁଦ୍ରା ତାର ବୀଜମନ୍ତ୍ର । ନାଦବିନ୍ଦୁରେ ତାର ପରମାତ୍ମାର ସଂଯୋଗ । ସେ ତାନ୍ତ୍ରିକ । ସେ ରହସ୍ୟବାଦୀ, ସେ ଭୈରବୀ ସାଧକ । ଡାକିନୀ, ଯୋଗିନୀ ତାର ମନ୍ତ୍ରଦୂତ । ସେ ଅବଧୂତ । ସେ ଅଲେଖ । ସେ ମହିମାଧର୍ମୀ । ସେ ଶ୍ରେଣୀହୀନ ସମାଜର ଅଗ୍ରଦୂତ ।

ସେ ମୁକ୍ତିକାମୀ । ପରଶାସନ ବିରୁଦ୍ଧରେ ତାର ଅପରାଜେୟ ସଂଗ୍ରାମ । ସେ ରୋଡ଼ଙ୍ଗର ସୈନିକ । ରାହାଙ୍ଗର ସେନାନୀ । ଖୋର୍ଦ୍ଧାର ପାଇକ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର । ସେ ବୀର ସୁରେନ୍ଦ୍ର ସାଏ । ସେ ରାଣୀ ଲକ୍ଷ୍ମୀବାଈଙ୍କ ଅନ୍ୟତମ ସାଥି ଚାଖୀ ଖୁଣ୍ଟିଆ । ସେ ସିପାହୀ ବିଦ୍ରୋହର ଅଗ୍ରଦୂତ । ମୁକ୍ତିଯଜ୍ଞର ହୋତା । ସେ ମହାଯଜ୍ଞର ଋତ୍ୱିକ । ମେରଠ, କାନପୁର, ଚନ୍ଦନନଗରର ବିଦ୍ରୋହୀ ସିପାହୀଙ୍କ ମନରେ ଥିଲା ତାର ମୁକ୍ତିର ଆବେଦନପତ୍ର । ପଲାସୀର ଅଗ୍ନି କୁଣ୍ଡର ଅଶାନ୍ତ ହୃଦୟରେ ତାର ବିଦ୍ରୋହର ନୂତନ ଗାଥା । ସେ ନେତାଜୀଙ୍କ ଉଦାତ୍ତ ଆହ୍ୱାନରେ ମୁକ୍ତିପାଗଳ ମୁକ୍ତିଯୋଦ୍ଧା । ସେ ଜାତୀୟ ମୁକ୍ତି ବାହିନୀର ବୀର ସୈନିକ । ସେ ଇରମାର ଶହୀଦ । ସେ ପୂର୍ଣ୍ଣଗର୍ଭା । ବ୍ରାହ୍ମଣୀର ନିଷ୍ପାପ ବକ୍ଷରେ ଢେଙ୍କାନାଳ ପ୍ରଜାମଣ୍ଡଳର ଏକାନ୍ତ ମୁକ୍ତି-ପ୍ରହରୀ, ବୀର ଦର୍ପରେ ଗରୀୟାନ ଦୁର୍ଦ୍ଧର୍ଷ-ଦୁର୍ବାର ନାବିକ-ପୁତ୍ର ବାଜି ରାଉତ । ଅତ୍ୟାଚାର, ଉତ୍ପୀଡ଼ନର ନିବିଡ଼ ଅନ୍ଧକାରରେ ସେ ଏକ ଦେଦୀପ୍ୟମାନ ମୁକ୍ତି ଦୀପିମାନ ଜ୍ୟୋତି ।

ତାର ଜନ୍ମଭୂମି ଏହି ଓଡ଼ିଶାର ମାଟି ବୀର ପ୍ରସବିନୀ । ସେ ବାରବାଟୀ, ଚୌଦ୍ୱାର, ରାୟବଣିଆ, ଯାଜପୁର ଦୁର୍ଗ ଅସଂଖ୍ୟ ବୀର ସେନାନୀଙ୍କ ସ୍ମାରକ । ତାର ରକ୍ତରେ ଯଦୁ ଜାତିର 'ସମର ତରଙ୍ଗ' । ତାର ସ୍ନାୟୁରେ ତାଙ୍କ ବୀର ଧମନୀରେ ଅସଂଖ୍ୟ 'ଖାରବେଳ'ର ରକ୍ତ । ତାର ରଣଦୁନ୍ଦୁଭି । ଇତିହାସରେ ଅସଂଖ୍ୟ ଜୟଗାଥା । ସେ ସମର ଦୁର୍ଦ୍ଦମ । ସେ ଶତ୍ରୁର ବିରାଟ ଆତଙ୍କ । ଗଙ୍ଗା-ଗୋଦାବରୀର କୂଳେ ତାର ଅସଂଖ୍ୟ ମୃତ ସୈନିକଙ୍କ କ୍ରନ୍ଦିତା ପତ୍ନୀଙ୍କ ଅଗଣନରେ କ୍ଷୁବ୍ଧ । ସେ ଅଜେୟ, ଦୁର୍ଜ୍ଜେୟ । ତା ସମକ୍ଷରେ ଜୀବନର ଗୁଞ୍ଜନ, ଜୀବନର ମଧୁର ଆବେଗ ତୁଚ୍ଛ । ମିଳନ-ମଧୁର ବିରହ-ବିଧୁର ମୁହୂର୍ତ୍ତରେ ପ୍ରେୟସୀର ଅଶ୍ରୁଳ ଆଖି ଓ କ୍ରନ୍ଦନଭରା ମୁଖ ତାକୁ ରଣ ବିମୁଖ କରିପାରେ ନାହିଁ । ସେ ଏକ ବୀର ଜାତି ।

ସମୁଦ୍ର ବକ୍ଷରେ ସେ ଯେପରି ଦୁଃସାହସୀ ସୌଦାଗର, ରଣକ୍ଷେତ୍ରରେ ସେହିପରି ଦୁର୍ଦ୍ଧର୍ଷ କଳିଙ୍ଗ ସେନା । ଯେତିକି ନିଷ୍ଠୁର, ନିର୍ଭୀକ ତାର ବୀର ହୃଦୟ, ସେତିକି ଗୀତିମୟ ତାର ସୃଜନଶୀଳ ମନ ।

ସେ ବାଉଲ । ସେ ଗୀତିକାର । ତାର ଶିରା ଦେହରେ ସଙ୍ଗୀତର କମ୍ପନ । ପାଷାଣ ସିମ୍ଫୋନିରେ ସଙ୍ଗୀତ ମୂର୍ଚ୍ଛନା । ସେ ଦେବଦାସୀ । ସେ ଓଡ଼ିଶୀ ସଙ୍ଗୀତର ଲଘୁ ଲଳିତ ସମାରୋହରେ ନୃତ୍ୟରତା ମାହାରୀ । ତାର ଆଖିରେ ଓଡ଼ିଶୀ ନୃତ୍ୟ ଇଙ୍ଗିତ । ତାର ମୁଦ୍ରାରେ ଓଡ଼ିଶୀ ନୃତ୍ୟର ଭଙ୍ଗିମା । ନୃତ୍ୟର ଛନ୍ଦରେ ସିଞ୍ଜିନୀର ଝଙ୍କାର । ବାଦ୍ୟର ତାଳରେ ଚଳ ଚଞ୍ଚଳତା । ତା'ର ଲାସ୍ୟମୟ ପାଦ । ସେ ଲାସ୍ୟମୟୀ ସୁରସୁନ୍ଦରୀ ରୂପସୀ ଉର୍ବଶୀ । ତା'ର ଅଧରରେ ଅମୃତ । ତା'ର ଆଖିରେ କାମାଗ୍ନି । ତାର ଭ୍ରୂଲତା ଉପରେ ନବୀନତାର ଭଙ୍ଗିମା । ତାର ଅଙ୍ଗ ସୌଷ୍ଠବରେ ସ୍ପନ୍ଦନ ଆଉ ସମ୍ମୋହନ । ସେ ଗୋଟିପୁଅ । ସେ କୋଣାର୍କର ଗୀତିପ୍ରଲୁବ୍ଧା ନାୟିକା । ସେ ରସଗ୍ରାହୀ । ସେ ରଙ୍ଗିଲା ନାୟକ । ତାର ପାଇକ ନୃତ୍ୟରେ ରଣ କୌଶଳର ପରାକାଷ୍ଠା । ଛଉନାଚରେ ବେଲାଡ଼' ।

ସେ ଅନ୍ତରୀକ୍ଷର ରହସ୍ୟାନୁସନ୍ଧିତ୍ସୁ ଜ୍ୟୋତିର୍ବିଦ । ସେ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର । ତାଙ୍କର 'ସିଦ୍ଧାନ୍ତ ଦର୍ପଣ' ଜ୍ୟୋତିର୍ବିଜ୍ଞାନରେ ଏକ ବିରାଟ ବିସ୍ମୟ । ସେ ଟେଲିସ୍କୋପ, ଟେଲିଭିଜନ ସାହାଯ୍ୟରେ ନୁହେଁ, ମାନମନ୍ଦିରର ଉନ୍ନତ ଯାନ୍ତ୍ରିକ ସାଧନରେ ନୁହେଁ, ଗ୍ରାମର ଏକ ନିଭୃତ କୋଣରେ ବାଉଁଶ ନଳିରେ ମେଘ ବିମୁକ୍ତ ନିଶୀଥ ଆକାଶକୁ ଦେଖି ବିଶ୍ୱବ୍ରହ୍ମାଣ୍ଡର ଗ୍ରହମଣ୍ଡଳର ଗତିବିଧି ଅନୁଧ୍ୟାନ ପଟୁ ବୈଜ୍ଞାନିକ । ସେ ଆବିଷ୍କାରକ ।

ସେ ଚିତ୍ରକାର । ତାର ହାତୀଗୁମ୍ଫା, ରାଣୀ ଗୁମ୍ଫା, ଖଣ୍ଡଗିରି, ଉଦୟଗିରି ଗୁହାରେ ଅପରୂପ ଚିତ୍ର ସମ୍ଭାର । ତାର ରଙ୍ଗୋଲି, ତାର ଆଳପନା, ତାର ସିଲାଇ କାମର ବିଚିତ୍ର କାରୁକର୍ମ ଅବର୍ଣ୍ଣନୀୟ । ତା'ର ମସିଲନ ଶାଢ଼ୀ, ରେଶମୀ ଉତ୍ତରୀୟ ରାଜପ୍ରସାଦର ନିଭୃତ ମହଲମାନଙ୍କରେ ଶୋଭାପାଉଛି । କୁଶଳୀ ତନ୍ତୁବାୟ ସେ ।

ସେ ଭବିଷ୍ୟବେତ୍ତା । 'ଅଚ୍ୟୁତାନନ୍ଦ ମାଳିକା'ରେ ତାର ଭବିଷ୍ୟବାଣୀ । ସେଥିରୁ ସ୍ପଷ୍ଟ ହୁଏ ବର୍ତ୍ତମାନର ସମାଜରେ ଅନ୍ୟାୟ, ଅତ୍ୟାଚାର, ବ୍ୟଭିଚାର, ଭ୍ରଷ୍ଟାଚାର, ଅବିଚାର କେବଳ ମହାପ୍ରଳୟର ଲକ୍ଷଣ । ଜୁଡ଼ୋ ଖ୍ରୀଷ୍ଟିଆନଙ୍କ ଭଳି 'ମିଲେନିୟାରିଷ୍ଟ ମିଥ୍'ରେ ତାର ବିଶ୍ୱାସ । ସେ ମନେକରେ ଯେ କଳି ଯୁଗାନ୍ତ ଦିନ ମହାପ୍ରଳୟରେ ପାପୀ, ଅଧର୍ମୀ, ଦୁଷ୍କୃତମାନଙ୍କର ବିନାଶ ହେବ । ସେହିଦିନ ଯୁଗପୁରୁଷ ତ୍ରାଣକର୍ତ୍ତାଙ୍କର ଆବିର୍ଭାବ ଘଟିବ- 'ପରିତ୍ରାଣାୟ ସାଧୁନାମ୍' । ମାର୍କଣ୍ଡେୟ ଋଷିଙ୍କ ଭଳି ସେହିଦିନ ସାଧୁ ସନ୍ଥ 'ପ୍ରଳୟ ପୟୋଧି ଜଳ'ର ସର୍ବଗ୍ରାସୀ ମୃତ୍ୟୁ କୁଣ୍ଡଳୀରୁ ଉଦ୍ଧାର ପାଇ ନୂତନ ସମାଜ ଗଠନରେ ପ୍ରବୃତ୍ତ ହେବେ । ସେହିଦିନ ପୃଥିବୀରେ ପୁଣି ସ୍ୱର୍ଗର ପ୍ରତିଷ୍ଠା ହେବ । ସେହିଦିନ ଧର୍ମର ସଂସ୍ଥାପନ ହେବ । ସେଥିପାଇଁ ଆଜି ରାଜନୀତି ମାଧ୍ୟମରେ ମାନବୀୟ ସମସ୍ୟା ସମାଧାନର ପ୍ରସ୍ତାବନା ପ୍ରତି ତାର ଅନାସ୍ଥା । ଗଣତନ୍ତ୍ରରେ ତାର ଆନ୍ତରିକତାର ଅଭାବ । ସମାଜବାଦ ତା' ପାଇଁ ଏକ ମରୀଚିକା । ସେଥିପାଇଁ ତାର ରାଜନୀତି ଅସ୍ଥିର । ସେ ପ୍ରଗତି ଓ ପ୍ରତିକ୍ରିୟା ମଧ୍ୟରେ ଦ୍ୱିଧା ବିଭକ୍ତ । ତା' ସାମନାରେ 'ବହୁପଥ ବହୁମତ ସହସ୍ର ନିଶାଣ' । ଅତିମାନସ ନା ନାଗଭୂଷଣ ? ତା' ଆଗରେ ଶତାବ୍ଦୀର ଏହି ବିରାଟ ପ୍ରଶ୍ନଚିହ୍ନ ।

• • •

# ମହତାବଙ୍କ ଜୀବନ ଓଡ଼ିଶାର ଇତିହାସ

ଡକ୍ଟର ହରେକୃଷ୍ଣ ମହତାବଙ୍କ କର୍ମମୟ ଓ ପ୍ରଖ୍ୟାତ ଜୀବନ ଆମ ଦେଶର ଓ ରାଜ୍ୟର ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନୋତ୍ତର ଯୁଗର ହେଉଛି ଏକ ପୂର୍ଣ୍ଣାଙ୍ଗ ଓ ସମନ୍ୱିତ ଇତିବୃତ୍ତ । ତାଙ୍କର ସୌମ୍ୟବପୁ, ମାନସିକ ତେଜ, ସାହସ, ଜ୍ଞାନ, ବଳିଷ୍ଠ ନେତୃତ୍ୱ ଏବଂ ସର୍ବୋପରି ଦେଶ ଓ ଆମ ରାଜ୍ୟର ବିକାଶ କ୍ଷେତ୍ରରେ ତ୍ୟାଗ ଓ ସେବା ଦ୍ୱାରା ସେ ରାଜନୀତିଜ୍ଞ, ସାମ୍ବାଦିକ, ସମାଜସେବୀ ଓ ଦେଶସେବକମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଥିଲେ । ରାଜନୈତିକ ବାଦବିବାଦ ମଧ୍ୟରେ ଲଢ଼ୁଆ ମନୋବୃତ୍ତି ନେଇ ସେ ତାଙ୍କର ଜୀବନ କଟାଇ ଗଲେ । ଜଣେ ନେତାଙ୍କଠାରେ ଯେଉଁସବୁ ଗୁଣ ଦରକାର, ସେ ସେସବୁର ଅଧିକାରୀ ଥିଲେ । ତାଙ୍କର ଦୀର୍ଘ, ସଫଳ ଓ ଗୌରବମୟ ଜୀବନକାଳ ମଧ୍ୟରେ ବେଳେ ବେଳେ ଯେଉଁ ଆଘାତ ଆସିଛି, ସେ ଦୃଢ଼ତାର ସହିତ ତାହାର ସମ୍ମୁଖୀନ ହୋଇଛନ୍ତି । ତାଙ୍କ ସହିତ ସାଧାରଣ ଜୀବନ, ରାଜ୍ୟର ଶାସନ ଓ ଅନ୍ୟ ବହୁ କ୍ଷେତ୍ରରେ ମିଶି କାର୍ଯ୍ୟ କରିବାର ସୌଭାଗ୍ୟ ଓ ସୁଯୋଗ ମୋର ଘଟିଥିଲା । ସବୁବେଳେ ତାଙ୍କପ୍ରତି ମୋର ସମ୍ମାନ ରହିଥିଲା । ଡକ୍ଟର ମହତାବଙ୍କ ଦୀର୍ଘ ଜୀବନକାଳ ମଧ୍ୟରେ ଅସ୍ଥିର ରାଜନୈତିକ ପରିସ୍ଥିତିରେ ତାଙ୍କୁ ଯେଉଁ ଘାତ ପ୍ରତିଘାତର ସମ୍ମୁଖୀନ ହେବାକୁ ପଡ଼ିଥିଲା, ତାଙ୍କୁ ସେ ସମଭାବନରେ ସମ୍ଭାଳି ନେଉଥିଲେ । ତାଙ୍କର ସହଧର୍ମିଣୀ ଜଣେ ଆଦର୍ଶସ୍ଥାନୀୟା ମହିଳା ଥିଲେ ।

ଦେଶର ଓ ଆମ ରାଜ୍ୟର ବର୍ତ୍ତମାନର ସଙ୍କଟପୂର୍ଣ୍ଣ ପରିସ୍ଥିତିରେ ଡକ୍ଟର ମହତାବଙ୍କର ତିରୋଧାନ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି କରିଛି, ତାହା ପୂରଣ କରିବା ଭଳି ଆଉ କେହି ନାହିଁ । ଡ଼ଃ ମହତାବ ମୋଠାରୁ ବୟସରେ କନିଷ୍ଠ ଥିଲେ । କିନ୍ତୁ ସେବା ଓ ସିଦ୍ଧି କ୍ଷେତ୍ରରେ ସେ ମୋର ବହୁ ଉପରେ ଥିଲେ । ମହାତ୍ମାଗାନ୍ଧୀ ୧୯୨୦ ମସିହାରେ ଯେଉଁ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ ସେଥିରେ ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହ ଯେଉଁ କେତେଜଣ ପ୍ରଥମେ କାର୍ଯ୍ୟ କରିବାକୁ ବାହାରିଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ମହତାବ ଥିଲେ ଜଣେ ଅଗ୍ରଣୀ । ସେ ଓଡ଼ିଶାର ଇତିହାସ ଲେଖି ଯାଇଛନ୍ତି । ତାଙ୍କ ଜୀବନ ମଧ୍ୟ ଓଡ଼ିଶାର ଇତିହାସ । ତାଙ୍କର ସଂଗ୍ରାମୀ ମନୋଭାବ ଯୁବ ସମାଜକୁ ଚିରଦିନ ପ୍ରେରଣା ଯୋଗାଇବ ।

✓ ରାଧାନାଥ ରଥ

# ଓଡ଼ିଶାର ଦରିଆପାରି ସମ୍ପର୍କ

• ଡଃ ଦଣ୍ଡପାଣି ବେହେରା

ପ୍ରାଚୀନ ଓଡ଼ିଶା ଅବା କଳିଙ୍ଗର ଏସିଆ, ଆଫ୍ରିକା ଓ ୟୁରୋପର ବହୁଦେଶ ସହ ନୌବାଣିଜ୍ୟକ, ସାଂସ୍କୃତିକ, ରାଜନୈତିକ ଓ କୂଟନୈତିକ ସମ୍ପର୍କ ସୁପ୍ରତିଷ୍ଠିତ ଥିଲା । ଭାରତର ପୂର୍ବ ଉପକୂଳ ଅଞ୍ଚଳରେ ତା'ର ରାଜନୈତିକ ଓ ସାମରିକ ପ୍ରଭାବ ଓ ପ୍ରଭୁତ୍ୱ ଦୃଢ଼ୀଭୂତ ଥିଲା । ଓଡ଼ିଶାବାସୀଙ୍କୁ ଏକ ସମୁଦ୍ରପ୍ରିୟ ଓ ସନ୍ତରଣକାରୀ ଜାତି ଭାବେ ସର୍ବତ୍ର ସ୍ୱୀକାର କରାଯାଉଥିଲା । ବର୍ତ୍ତମାନର ବଙ୍ଗୋପସାଗରକୁ ପ୍ରାଚୀନ କାଳରେ କଳିଙ୍ଗସାଗର କୁହାଯାଉ ଥିଲା । ମୁଖ୍ୟତଃ ଏହି ସାଗରକୁ ଅତିକ୍ରମ କରି ଅତୀତରେ ଓଡ଼ିଆମାନେ ବିଶ୍ୱର ବିଭିନ୍ନ ଦେଶକୁ ଯାତ୍ରା କରି ସେମାନଙ୍କର ଆନ୍ତର୍ଜାତିକ ସମ୍ପର୍କର ପରିସରକୁ ସଂପ୍ରସାରିତ କରିଥିଲେ । ପ୍ରବାଦ ଅଛି ଯେ ସାତ ସମୁଦ୍ର ଓ ତେରନଦୀ ପାର ହୋଇ ଓଡ଼ିଆମାନେ ସେମାନଙ୍କର ନୌବାଣିଜ୍ୟ ବହୁ ଦେଶକୁ ପ୍ରସାରିତ କରି ନିଜର ଓ ଦେଶର ଧନ ସମ୍ପତ୍ତି ଓ ସ୍ୱାଭିମାନ ବଢ଼ାଇଥିଲେ । ପ୍ରବାଦ ଜନଶ୍ରୁତି ଓ ପରମ୍ପରାରେ ପ୍ରାଚୀନ ଓଡ଼ିଶାର ଏହି ଗୌରବ ଆବହମାନକାଳରୁ ପରିଦୃଷ୍ଟ । ଓଡ଼ିଆମାନେ କାର୍ତ୍ତିକ ପୂର୍ଣ୍ଣିମାର ପ୍ରତ୍ୟୁଷରେ କାଗଜ ଡଙ୍ଗା ଓ କଦଳୀ ବାହୁଙ୍ଗା ବୋଇତ ଭସାଇ ଓ ବନ୍ଦାଇ ଅତୀତର ନୌବାଣିଜ୍ୟର-ସ୍ମୃତି ଧାରଣ କରି ଆସୁଛନ୍ତି । ଯଥାର୍ଥରେ ମହାକବି କାଳିଦାସ କଳିଙ୍ଗର ରାଜାଙ୍କୁ ତାଙ୍କର ପ୍ରସିଦ୍ଧ ରଘୁବଂଶ କାବ୍ୟରେ "ମହୋଦଧିପତି" ବୋଲି ବର୍ଣ୍ଣନା କରିଛନ୍ତି । ସମୀପସ୍ଥ ମହୋଦଧିରେ ଥିବା ସକଳ ଦ୍ୱୀପ ଓ ଉପଦ୍ୱୀପକୁ ସେ 'କଳଙ୍ଗୋଦ୍ଦେଶ"-ଆଖ୍ୟା ଦେଇଛନ୍ତି । ମହାଯାନ ବୌଦ୍ଧ ଗ୍ରନ୍ଥ "ଆର୍ଯ୍ୟମଞ୍ଜୁ ଶ୍ରୀମୂଳକଳ୍ପ"ରେ କଳିଙ୍ଗ ରାଜାଙ୍କୁ କଳିଙ୍ଗ ସାଗରରେ ଥିବା ସମସ୍ତ ଦ୍ୱୀପଉପଦ୍ୱୀପର ଅଧୀଶ୍ୱର ଭାବେ ଉଲ୍ଲେଖ କରାଯାଇଛି । କଳିଙ୍ଗସାଗର କୂଳସ୍ଥିତ ବନ୍ଦର ଓ ପୋତାଶ୍ରୟମାନଙ୍କ ମଧ୍ୟରେ ଉଲ୍ଲେଖନୀୟ ହେଲେ 'ତାମ୍ରଲିପ୍ତି'(ପଶ୍ଚିମ ବଙ୍ଗର ମେଦିନାପୁର ଜିଲ୍ଲାର 'ତାମଲୁକ'), "ଚେଲିତୋଲୋ" ଅବା "ଚରିତ୍ର"(ଅଧୁନା 'ପୁରୀ' ସହର), ପୋଲରାଦନ୍ତପୁର (ଗଞ୍ଜାମ ଜିଲ୍ଲାର 'ପାଲୁର'), ପିଥୁଣ୍ଡ(ଆନ୍ଧ୍ର ପ୍ରଦେଶର ମୁଖଲିଙ୍ଗ ନିକଟସ୍ଥ ଏକ ବନ୍ଦର ଯାହାର କି ଖାରବେଳଙ୍କର ହାତୀଗୁମ୍ଫା ଅନୁଶାସନରେ ଉଲ୍ଲେଖ ଅଛି ।) ଏହି ବନ୍ଦର ଓ ପୋତାଶ୍ରୟମାନଙ୍କରୁ ଓଡ଼ିଆମାନେ ତାଙ୍କର ନୌବାଣିଜ୍ୟକୁ ପରିଚାଳନା ଓ ପରିବହନ କରୁଥିଲେ ।

କଳିଙ୍ଗର ସୁବିଧାଜନକ ଭୌଗୋଳିକ ଅବସ୍ଥିତି ଯୋଗୁଁ ତା'ର ଅଧିବାସୀମାନେ ଅନାୟାସରେ ସାଗର-ମହାସାଗର ପାର ହୋଇ ଦେଶ ଓ ଦେଶାନ୍ତରରେ ଅନବରତ ବ୍ୟବସାୟ କରି ନିଜର ଓ ଜାତିର ସମ୍ପତ୍ତି ବର୍ଦ୍ଧନ କଲେ । ଫଳରେ ଓଡ଼ିଆମାନଙ୍କର ଭୌତିକ ସମୃଦ୍ଧି ଦ୍ରୁତ ସାଧିତ ହେଲା । ସେମାନଙ୍କର ରାଜନୈତିକ ପ୍ରତିପତ୍ତି ସର୍ବତ୍ର ସଂପ୍ରସାରିତ ହେଲା ଏବଂ ସେମାନଙ୍କର ସାଂସ୍କୃତିକ ଅଭ୍ୟୁଦୟ ହେଲା । ଏଥିରେ ଈର୍ଷାପରାୟଣ ହୋଇ ମଗଧ ସମ୍ରାଟ ଅଶୋକ ଖ୍ରୀ.ପୂର୍ବ ୨୬୧-୬୨ରେ କଳିଙ୍ଗ ଆକ୍ରମଣ ଓ ଅଧିକାର କଲେ । ଉଦ୍ଦେଶ୍ୟ ଥିଲା କଳିଙ୍ଗର ସମୃଦ୍ଧ ବନ୍ଦରମାନଙ୍କୁ ଅଧିକାର କରି ସେଠାରୁ ଦରିଆପାରି ଦେଶମାନଙ୍କ ସହ ବାଣିଜ୍ୟ କରି ମଗଧର ଭୌତିକ ସମୃଦ୍ଧି ହାସଲ କରିବା ।

ତାମ୍ରଲିପ୍ତି ଓ ଦନ୍ତପୁରରୁ ଅଶୋକ ବୌଦ୍ଧଧର୍ମ ପ୍ରଚାରକମାନଙ୍କୁ ବିଦେଶ ପ୍ରେରଣ କରିଥିଲେ । ଦନ୍ତପୁରରୁ ତାଙ୍କର କନ୍ୟା ସଂଘମିତ୍ରା ପବିତ୍ର ବୌଦ୍ଧ ବୃକ୍ଷର ଏକ ଶାଖା ନେଇ ସିଂହଳଯାତ୍ରା କରିଥିଲେ । ରାଜକୁମାରୀ ସଂଘମିତ୍ରାଙ୍କ ସହ କଳିଙ୍ଗର ବହୁ ରାଜକୁମାର ଓ ରାଜକୁମାରୀ ତଥା ଆଠଟି ଓଡ଼ିଆ ପରିବାର ତାହାଙ୍କ ସହିତ ସିଂହଳ ଯାତ୍ରା କଲେ । ସେହି ସହଯାତ୍ରୀମାନେ ସ୍ଥାୟୀ ବାସିନ୍ଦା ଭାବେ ସେଠାରେ ଅବସ୍ଥାନ କରି ସେଠାରେ ଥେରାବାଦ ବୌଦ୍ଧଧର୍ମର ପ୍ରଚାର କଲେ ।

ଗ୍ରୀକ୍ ଲେଖକ ଟୋଲେମି ତାଙ୍କର ଭୂଗୋଳ ଗ୍ରନ୍ଥରେ ଦନ୍ତପୁରକୁ ଏକ ସମୃଦ୍ଧ ବନ୍ଦରଭାବେ ଉଲ୍ଲେଖ କରିଛନ୍ତି । ଅନ୍ୟତମ ଗ୍ରୀକ୍ ଲେଖକ ଜେରେନୋ ତାଙ୍କର ଗ୍ରନ୍ଥରେ ଏହି ବନ୍ଦରର ତାତ୍ପର୍ଯ୍ୟ ବର୍ଣ୍ଣନା କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି ଯେ ଏହି ବନ୍ଦରର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ଅନ୍ୟ ଏକ ବନ୍ଦରରୁ "ସୁବର୍ଣ୍ଣଭୂମି"(ବର୍ମା) ଓ "ସୁବର୍ଣ୍ଣଦ୍ୱୀପ" (ଜାଭା) ସହ କଳିଙ୍ଗବାସୀମାନେ ନୌବାଣିଜ୍ୟ କରୁଥିଲେ । ଉକ୍ତ ବନ୍ଦରକୁ ଅଧୁନା ଗୋପାଳପୁର ବୋଲି ଚିହ୍ନଟ କରାଯାଉଛି । ବୁଦ୍ଧଙ୍କର କୁଶିନାରାଠାରେ ମହାପ୍ରୟାଣ ଅନ୍ତେ ତାଙ୍କର ଏକ ପବିତ୍ର ଦନ୍ତକୁ ଓଡ଼ିଶା ରାଜା ଦନ୍ତପୁରକୁ ଆଣି ସେଠାରେ ଏକ ସ୍ୱତନ୍ତ୍ର ସ୍ତୂପ ଭିତରେ ତାକୁ ସୁରକ୍ଷିତ ରଖିଥିଲେ । ଏହି ପବିତ୍ର ଦନ୍ତ ଯୋଗୁଁ ଏହି ରାଜନଗରୀଟି ଦନ୍ତପୁର ବୋଲି ଆଖ୍ୟାତ ହେଲା । ଦକ୍ଷିଣ ଭାରତୀୟମାନେ ଏହି ନଗରୀକୁ 'ପାଲୁର' ଆଖ୍ୟା ଦେଲେ । 'ପାଲୁର' ଶବ୍ଦର ଅର୍ଥ-ଦାନ୍ତ । ଏଣୁ ଗ୍ରୀକ୍ ଲେଖକମାନେ ଏହାକୁ ପାଲରା-ଦନ୍ତପୁର ବୋଲି ସେମାନଙ୍କର ଲେଖାମାନଙ୍କରେ ଉଲ୍ଲେଖ କଲେ । ଅଶୋକଙ୍କର କଳିଙ୍ଗ ଜୟ ପୂର୍ବେ ଏଠାରେ ଥିବା ସ୍ତୂପକୁ ଅନ୍ୟତମ ପବିତ୍ର ବୌଦ୍ଧ ଧର୍ମତୀର୍ଥ ଭାବେ ବୌଦ୍ଧାବଲମ୍ବୀମାନେ ମାନ୍ୟତା ଦେଉଥିଲେ । ପରବର୍ତ୍ତୀ ସମୟରେ କଳିଙ୍ଗର ଜଣେ ରାଜା ବ୍ରହ୍ମଦତ୍ତ ତାଙ୍କର କନ୍ୟା ହେମମାଳା ଓ ଜାମାତା ଦନ୍ତ କୁମାରଙ୍କ ଜରିଆରେ ଉକ୍ତ ପବିତ୍ର ଦନ୍ତକୁ ସିଂହଳ ପ୍ରେରଣ କଲେ । ଏଯାବତ୍ ସେହି ଦନ୍ତର ପୂଜାପରମ୍ପରା ସେଠାରେ ଚାଲିଆସିଛି ।

ଜୈନ ଧର୍ମଗ୍ରନ୍ଥ "ଉତ୍ତରାଧ୍ୟାନ-ସୂତ୍ର"ରେ ପିଥୁଣ୍ଡକୁ କଳିଙ୍ଗର ଏକ ପ୍ରଧାନ ବନ୍ଦର ଭାବେ ଉଲ୍ଲେଖ କରାଯାଇଅଛି ।

ତାମ୍ରଲିପ୍ତିରୁ ଅଶୋକଙ୍କର ପୁତ୍ର ମହେନ୍ଦ୍ର ବୌଦ୍ଧ ଧର୍ମପ୍ରଚାର ପାଇଁ ସିଂହଳ ଯାତ୍ରା କରିଥିଲେ । ଏହି ବନ୍ଦରରୁ ପରବର୍ତ୍ତୀ ସମୟରେ

ଶତାବ୍ଦୀରେ ଚୀନୀୟ ବୌଦ୍ଧ ପରିବ୍ରାଜକ ଫାହିଆନ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ଅଭିମୁଖେ ସିଂହଳ ଯାତ୍ରା କରିଥିଲେ ।

ଅନ୍ୟତମ ଚୀନ ଦେଶୀୟ ବୌଦ୍ଧ ପରିବ୍ରାଜକ ହୁଏନସାଂ ତାଙ୍କର ଭାରତ ଭ୍ରମଣ ବୃତାନ୍ତ ଗ୍ରନ୍ଥ ''ସିୟୁକୀ''ରେ କଳିଙ୍ଗର ଅନ୍ୟତମ ବନ୍ଦର ''ଚେଲିତେଲୋ''(ଚରିତ୍ର) ସମ୍ପର୍କରେ ବିଶଦ ବର୍ଣ୍ଣନା କରିଛନ୍ତି । ଏହାକୁ ଅଧୁନା ପୁରୀ ସହ ଚିହ୍ନଟ କରାଯାଇ ଅଛି । ସେ ଲେଖିଛନ୍ତି ସେଠାର କଳିଙ୍ଗବାସୀମାନେ ବାଣିଜ୍ୟ ବ୍ୟବସାୟ ପାଇଁ ସମୁଦ୍ର ପାରି ହୋଇ ବିଦେଶ ଯାତ୍ରାକରି ଧନ ଓ ଯଶ ଅର୍ଜନ କରୁଥିଲେ । ଆବଶ୍ୟକତା ମତେ ସମୁଦ୍ର ଯାତ୍ରୀମାନେ ସେଠାରେ କିଛିକାଳ ଅବସ୍ଥାନ କରି ବିଶ୍ରାମ ନେଉଥିଲେ । ସେ ସେଥିରେ ଆହୁରି ଉଲ୍ଲେଖ କରିଛନ୍ତି ଯେ ସେଠାରୁ ସମୁଦ୍ରର ଏକ ନିଭୃତ ଅଂଶ(ସିଂହଳ)ରେ ସଂରକ୍ଷିତ ପବିତ୍ର ଦନ୍ତରୁ ଉଦ୍‌ଗାରିତ ଦିବ୍ୟ ଦୀପ୍ତିକୁ ସେ ସ୍ୱଚକ୍ଷୁରେ ଅବଲୋକନ କରି ବିସ୍ମୟ ଓ ଭାବାବେଗରେ ବିମୁଗ୍ଧ ହୋଇ ପଡ଼ିଥିଲେ ।

## କଳିଙ୍ଗ ଓ ରୋମୀୟ ଜଗତ

ଟଲେମିଙ୍କ ଦ୍ୱାରା ପ୍ରଣୀତ ''ପେରିପ୍ଲାସ ଅଫ୍ ଇରିଥ୍ରିୟନ୍‌ସି'' ଭୂଗୋଳ ଗ୍ରନ୍ଥରେ ତାମ୍ରଲିପ୍ତି(ତାମଲୁକ)କୁ କଳିଙ୍ଗର ଏକ ସମୃଦ୍ଧ ବନ୍ଦର ଭାବେ ବର୍ଣ୍ଣନା କରାଯାଇଅଛି । ଏହି ବନ୍ଦର ଯୋଗେ କଳିଙ୍ଗ ରୋମ ସାମ୍ରାଜ୍ୟ ସହ ଘନିଷ୍ଠ ନୌବାଣିଜ୍ୟିକ ସମ୍ପର୍କରେ ଛନ୍ଦି ହୋଇଥିଲା । ଉଭୟ ଦେଶରୁ ଉଭୟ ଆମଦାନୀ ଓ ରପ୍ତାନୀ ବ୍ୟବସାୟ ବ୍ୟାପକ ଭାବରେ ଚାଲିଥିଲା । ଭୁବନେଶ୍ୱର ନିକଟସ୍ଥ ଶିଶୁପାଳ ଗଡ଼, ମୟୂରଭଞ୍ଜର ବାମନଘାଟୀ, ଆନ୍ଧ୍ରପ୍ରଦେଶର ବିଶାଖାପାଟଣା ଜିଲ୍ଲା ଓ ମଧ୍ୟପ୍ରଦେଶର ବିଳାସପୁରଠାରେ ବହୁ ରୋମୀୟ ମୁଦ୍ରା ଆବିଷ୍କୃତ ଓ ସଂଗୃହୀତ ହୋଇଛି । ଏଥିରୁ କଳିଙ୍ଗ ଓ ରୋମୀୟ ଜଗତ ମଧ୍ୟରେ ପ୍ରତିଷ୍ଠିତ ହୋଇଥିବା ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ଅନୁମେୟ ।

## କଳିଙ୍ଗ ଓ ଆଫ୍ରିକା

କୋଣାର୍କ ମନ୍ଦିର ଗାତ୍ରରେ ଏକ ଜିରାଫ(ଆଫ୍ରିକୀୟ ପଶୁ)କୁ କଳିଙ୍ଗ ରାଜା ଏକ ସାଦର ଉପହାର ରୂପେ ସ୍ୱୟଂ ଗ୍ରହଣ କରୁଥିବା ଏକ ଭାସ୍କର୍ଯ୍ୟ ଖୋଦିତ ଅଛି । ସୂଚନା ଯୋଗ୍ୟ ଯେ ଓଡ଼ିଶାର ତତ୍‌କାଳୀନ ଗଙ୍ଗ ନରପତି ପ୍ରଥମ ନରସିଂହ ଦେବ (ଖ୍ରୀ. ୧୨୩୬-୬୪) କେତେଜଣ ଆରବ ବଣିକଙ୍କ ସାହାଯ୍ୟରେ ବୋଇତ ଯୋଗେ ଆଫ୍ରିକାରୁ ଏକ ଜିରାଫ ଜନ୍ତୁକୁ କଳିଙ୍ଗ ଅଣାଇଥିଲେ । ଏଥିରୁ କଳିଙ୍ଗର ଆଫ୍ରିକା ସହ ନୌବାଣିଜ୍ୟିକ ସମ୍ପର୍କ-ସ୍ୱତଃ ପ୍ରତୀତ ହୁଏ ।

## କଳିଙ୍ଗ ଓ ସିଂହଳ

ସିଂହଳୀୟ ବୌଦ୍ଧ ଗ୍ରନ୍ଥ ତ୍ରୟ ''ମହାବଂଶ'' ଦଥାବଂଶ'' ଓ ''ଚୂଳବଂଶ'' କଳିଙ୍ଗ ଓ ସିଂହଳର ବହୁବିଧ ସମ୍ପର୍କ ବିଷୟ ଉଲ୍ଲେଖ କରନ୍ତି । ''ମହାବଂଶ''ରୁ ସୂଚିତ ହୁଏ ଯେ ସିଂହଳର ପ୍ରଥମ ରାଜା ପୂର୍ବ ଭାରତରୁ ସେଠାକୁ ରାଜ୍ୟ ପ୍ରତିଷ୍ଠା କରିଥିଲେ । କଳିଙ୍ଗ ରାଜାଙ୍କର କନ୍ୟା ଥିଲେ ତାଙ୍କର ପ୍ରମାତା । ରାଜା ବିଜୟଙ୍କର ପିତାଙ୍କର ନାମ 'ସିଂହଳ' ଅନୁସାରେ ଦ୍ୱୀପର ନାମ ବି ସେହି ନାମରେ ନାମିତ ହେଲା । ରାଜକୁମାରୀ ସଂଘମିତ୍ରାଙ୍କ ସହ କଳିଙ୍ଗରୁ ସିଂହଳ ଆସିଥିବା ଆଠଟି ପରିବାରଙ୍କ କଥା ଉକ୍ତ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଅଛି । ଅନ୍ୟତମ ଗ୍ରନ୍ଥ ''ଦଥାବଂଶ''ରେ କଳିଙ୍ଗର ରାଜା ଗୁହଦତ୍ତ ନିଜ କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାର ଜରିଆରେ ଦନ୍ତପୁରରୁ ବୁଦ୍ଧଙ୍କର ପବିତ୍ର ଦନ୍ତକୁ କିଭଳି ସିଂହଳକୁ ବୋଇତ ଯୋଗେ ପଠେଇଥିଲେ, ତା'ର ବିଶଦ ଆଲୋଚନା କରାଯାଇଅଛି । କଳିଙ୍ଗର ରାଜା ଓ ରାଣୀ ସିଂହଳ ପରିଦର୍ଶନରେ ଯାଇଥିବା କଥା 'ଚୂଳବଂଶ'ରେ ଉଲ୍ଲେଖ ଅଛି । ସେତେବେଳେ ସିଂହଳର ରାଜାଥିଲେ ଦ୍ୱିତୀୟ ଅଗ୍ରବୋଧି(ଖ୍ରୀ. ୫୯୩-୬୦୨) । ଏଥିରୁ ଆହୁରି ଜଣାଯାଏ ଯେ ରାଜା ମହେନ୍ଦ୍ର ଚତୁର୍ଥ ଶ୍ରୀ ସଂଘ ବୋଧି (ଖ୍ରୀ.୯୧୩ -୯୬୯) କଳିଙ୍ଗର ରାଜକୁମାରୀଙ୍କୁ ବିବାହ କରିଥିଲେ । ଏଥିରେ ଆହୁରି ସୂଚିତ ହୁଏ ଯେ ସିଂହଳର ଅନ୍ୟତମ ରାଜା ବିଜୟ ବାହୁ(ଖ୍ରୀ. ୧୦୫୪-୧୧୦୯ଏନ୍) କଳିଙ୍ଗର ରାଜକୁମାରୀ ତ୍ରିଲୋକ ସୁନ୍ଦରୀଙ୍କୁ ବିବାହ କରିଥିଲେ । ତ୍ରିଲୋକ ସୁନ୍ଦରୀଙ୍କ ଆତ୍ମୀୟ ସ୍ୱଜନମାନେ ସିଂହଳରେ ସ୍ଥାୟୀ ବାସିନ୍ଦାଭାବେ ବସବାସ କଲେ । ସେମାନଙ୍କ ମଧ୍ୟରେ ଉଲ୍ଲେଖନୀୟ ହେଲେ ମଧୁକର୍ଣ୍ଣବ, ଭୀମରାଜ ଓ ବଳକ୍ଷାର । କଳିଙ୍ଗର ଅନ୍ୟତମ ରାଜା ଜୟଗୋପାଙ୍କର ପୁତ୍ର ନିଶଙ୍କମଲ୍ଲ ବି କିଛିକାଳ ପାଇଁ ସିଂହଳର ରାଜା ଥିଲେ । ସିଂହଳ ରାଜବଂଶର ଜଣେ ପୁରୁଷପୁଙ୍ଗବ-ଦ୍ୱିତୀୟ ବିଜୟ(ଖ୍ରୀ. ୧୧୮୬-୮୭) କଳିଙ୍ଗ ପରିଦର୍ଶନରେ ଆସିଥିଲେ । ସିଂହଳର ରାଜା ପରାକ୍ରମବାହୁଙ୍କ ନିର୍ଦ୍ଦେଶକ୍ରମେ ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ମାଘ ନାମକ ଜଣେ ଓଡ଼ିଆ ପୁରୁଷପୁଙ୍ଗବ ୨୪,୦୦୦ ସୈନ୍ୟଙ୍କୁ ବୋଇତରେ ନେଇ ସିଂହଳରେ ଅବତରଣ କଲାପରେ ସେଠାର ରାଜା ପରାକ୍ରମ ପଣ୍ଡ୍ୟାଙ୍କୁ ଯୁଦ୍ଧରେ ପରାଜୟ କରି ସେଠାରେ ଦୀର୍ଘ ୨୧ ବର୍ଷଯାଏଁ(ଖ୍ରୀ. ୧୨୧୪-୩୫) ଶାସନ କଲେ । କଳିଙ୍ଗ ନିବାସୀମାନେ ବାରମ୍ବାର ଏହି ଦ୍ୱୀପକୁ ଆସି ନୌବାଣିଜ୍ୟ କରିବା ସଙ୍ଗେ ସଙ୍ଗେ ଏହାର ନିବିଡ଼ ସାଂସ୍କୃତିକ ଓ ରାଜନୈତିକ ସମ୍ପର୍କରେ ଆବଦ୍ଧ ହୋଇ ପଡ଼ିଲେ । ଉଭୟ ଦେଶ ମଧ୍ୟରେ ଘନିଷ୍ଠ ଦୀର୍ଘସ୍ଥାୟୀ ସମ୍ପର୍କ ଶତାବ୍ଦୀ ଶତାବ୍ଦୀ ଧରି ବିକଶିତ ହୋଇଥିଲା ।

## କଳିଙ୍ଗ ଓ ଇଣ୍ଡୋନେସିଆ

ଇଣ୍ଡୋନେସିଆର ଜାଭା, ସୁମାତ୍ରା, ବାଲି ଓ ବୋର୍ଣ୍ଣିଓ ଆଦି ଦ୍ୱୀପପୁଞ୍ଜ ସହ ପ୍ରାଚୀନ କଳିଙ୍ଗର ନିବିଡ଼ ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ଶତାବ୍ଦୀ ଶତାବ୍ଦୀ ଅବ୍ୟାହତ ଥିଲା । କଳିଙ୍ଗର ସମୃଦ୍ଧ ବନ୍ଦରମାନଙ୍କ ଜରିଆରେ ସେହି ସମ୍ପର୍କ କାଳକାଳ ଧରି ବଜାୟ ରହିଥିଲା । ଜାଭାର ଏକ ଲୋକ ପ୍ରବାଦ ଅନୁଯାୟୀ ''କଳିଙ୍ଗର ରାଜକୁମାରୀଙ୍କ ଇଙ୍ଗିତକ୍ରମେ ୨୦,୦୦୦ କଳିଙ୍ଗର ପରିବାରଙ୍କୁ ବୋଇତରେ ଜାଭା ପଠାଯାଇଥିଲା । ସେମାନେ ସେଠାରେ ସ୍ଥାୟୀ ଭାବରେ ଅବସ୍ଥାନ କଲେ । କ୍ରମଶଃ ସେମାନଙ୍କର ସଂଖ୍ୟା ବହୁଗୁଣରେ ବର୍ଦ୍ଧିତ ହେଲା ।'' ଏକ ଚୀନ ଦେଶୀୟ ବୃତାନ୍ତ ଅନୁଯାୟୀ ଜାଭାର ଅନ୍ୟତମ ନାମ ଥିଲା ''ହୋଲିଙ୍ଗ''-ଅର୍ଥାତ ଚୀନ ଭାଷାରେ ତାହା ହେଲା ''କଳିଙ୍ଗ'' । ଜାଭା ଅନୁଶାସନ ଅକ୍ଷର ସହ ଓଡ଼ିଆ ଅକ୍ଷରର ବହୁମେଳ ଅଛି । ସେଭଳି ସେଠାର ବୌଦ୍ଧ ମୂର୍ତ୍ତିମାନଙ୍କ ସହ ଓଡ଼ିଶାର ରତ୍ନଗିରି ଆଦି ସ୍ଥାନମାନଙ୍କରେ ମିଳିଥିବା ବୌଦ୍ଧ ମୂର୍ତ୍ତିମାନଙ୍କ ସହ ବହୁ ସାମଞ୍ଜସ୍ୟ ଅଛି । ନୌବାଣିଜ୍ୟ ସହ କଳା, ଭାସ୍କର୍ଯ୍ୟ ଓ ଧର୍ମ ଧାରଣା କଳିଙ୍ଗରୁ

ଜାଭା ପ୍ରବେଶ କରିଥିଲା । ଫଳରେ ଜାଭାର କଳା ଓ ଭାସ୍କର୍ଯ୍ୟ କଳିଙ୍ଗୀୟ ଶିଳ୍ପ ସଂସ୍କୃତି ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲା ।

## କଳିଙ୍ଗ ଓ ଚୀନ

କଳିଙ୍ଗ ଓ ଚୀନ ମଧ୍ୟରେ ଗତି କରୁଥିବା ଜଳପଥରେ ସିଂହଳ ଓ ଜାଭା ଅବସ୍ଥିତ । ପ୍ରଖ୍ୟାତ ଚୀନା ବୌଦ୍ଧ ପରିବ୍ରାଜକ ଫାୟାନ୍ ପଞ୍ଚମ ଶତାବ୍ଦୀରେ କଳିଙ୍ଗର ତାମ୍ରଲିପ୍ତିରୁ ଉକ୍ତ ଜଳପଥ ଦେଇ ସ୍ୱଦେଶ-ପ୍ରତ୍ୟାବର୍ତ୍ତନ କରିଥିଲେ । ଜଳପଥରେ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀରେ -ଚୀନ ପରିବ୍ରାଜକ ଇତ୍‌ସିଂ ୬୭୩ ଖ୍ରୀଷ୍ଟାବ୍ଦରେ ତାମ୍ରଲିପ୍ତି ବନ୍ଦରରେ ଅବତରଣ କରିଥିଲେ । ଚୀନ ପରିବ୍ରାଜକ ହୁଏନସାଂ ସେହି ଜଳପଥ ଦେଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଓଡ଼ିଶାର ଜଣେ ବିଶିଷ୍ଟ ପଣ୍ଡିତ ଶୁଭଙ୍କର ସିଂହ ଚୀନ୍ ସମ୍ରାଟ ସାଓୁଙ୍କ୍‌ଙ୍କୁ ତାଙ୍କର ଦରବାରରେ ଭେଟିଥିଲେ । ଚୀନରେ ଅବସ୍ଥାନ କରିବା ଅବସରରେ ସେ ପ୍ରସିଦ୍ଧ ସଂସ୍କୃତ ଗ୍ରନ୍ଥ "ମହା ବୈରୋଚନ ସୂତ୍ର"କୁ ଚୀନ ଭାଷାରେ ଅନୁବାଦ କରିଥିଲେ । ତାଙ୍କୁ ଚୀନରେ କଳିଙ୍ଗ ରାଜାଙ୍କର ଦୂତ ଭାବେ ସମ୍ମାନ କରାଯାଉଥିଲା । ୭୧୫ ଖ୍ରୀଷ୍ଟାବ୍ଦରେ ସେ ଦନ୍ତପୁରରୁ ଚୀନ ଅଭିମୁଖେ ଯାତ୍ରାରମ୍ଭ କରିଥିଲେ । ଅନ୍ୟତମ ବିଶିଷ୍ଟ-ଅସାଧାରଣ ଜ୍ଞାନବନ୍ତ ଓଡ଼ିଶାର ମନୀଷୀ ପ୍ରଜ୍ଞା ଚୀନ ଦେଶର ସମ୍ରାଟଙ୍କୁ ଓଡ଼ିଶାର ରାଜା ଶୁଭଙ୍କର ଦେବ ପଠେଇ ଥିବା ଓଡ଼ିଆ ପାଣ୍ଡୁଲିପି "ଗଣ୍ଡବ୍ୟୂହ"କୁ ସ୍ୱହସ୍ତରେ ଉପହାର ପ୍ରଦାନ କଲେ । ସମ୍ରାଟଙ୍କର ଅନୁରୋଧକ୍ରମେ ପ୍ରଜ୍ଞା ସେହି ପାଣ୍ଡୁଲିପିକୁ ଚୀନ ଭାଷାରେ ଅନୁବାଦ କଲେ । ଶୁଭଙ୍କର ଦେବଙ୍କୁ ସିଂହରୂପୀ ପବିତ୍ର ରାଜା ଭାବେ ଚୀନରେ ସମ୍ମାନ କରାଗଲା । ପ୍ରଜ୍ଞା ଅଷ୍ଟମ ଶତାବ୍ଦୀରେ ଚୀନଦେଶରେ ମହାଯାନ ବୌଦ୍ଧ ଧର୍ମର ବାର୍ତ୍ତା ପ୍ରଚାର କଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ଚୀନର ଜଣେ ଗ୍ରନ୍ଥ ପ୍ରଣେତା ୟୁ-ସ୍-ୟାନ୍ 'ୟୁ-ଚା"ରେ ଅବା ଓଡ଼ିଶାରେ ଜୀବିକା ନିର୍ବାହ ପ୍ରଣାଳୀ ଅତ୍ୟନ୍ତ ସହଜସାଧ୍ୟ ଥିଲା ବୋଲି ତାଙ୍କର ଗ୍ରନ୍ଥରେ ଲେଖିଛନ୍ତି । ଦରଦାମ ଯଥେଷ୍ଟ କମ ଥିବା ହେତୁ ଓଡ଼ିଶାରେ ଜୀବନ ନିର୍ବାହ ସହଜ ଓ ସୁଖକର ଥିଲା । ଶସ୍ତା ମୂଲ୍ୟରେ ସବୁ ଜିନିଷ ସୁଲଭ୍ୟ ଥିଲା । ଉଦାହରଣ ସ୍ୱରୂପ ଗୋଟିଏ କଉଡ଼ି ବିନିମୟରେ ୪୬ କୁଣ୍ଡି ଚାଉଳ ମିଳୁଥିଲା । ଏଣୁ ଯେଉଁ ଚୀନ ଅଧିବାସୀମାନେ ଓଡ଼ିଶା ପରିଦର୍ଶନରେ ଯାଉଥିଲେ, ସେମାନେ ସେଠାରେ ସ୍ଥାୟୀ ବାସିନ୍ଦା ଭାବେ ରହି ଯାଉଥିଲେ । ଚୀନ ଓ କଳିଙ୍ଗର ଲୋକମାନଙ୍କ ଚାଉଳ ମୁଖ୍ୟଖାଦ୍ୟ ଥିବାରୁ ଚୀନ ପର୍ଯ୍ୟଟକମାନେ ଓଡ଼ିଶାରେ ସ୍ଥାୟୀ ଭାବେ ଅବସ୍ଥାନ କରୁଥିଲେ ବୋଲି ସେ ଲେଖିଛନ୍ତି ।

ଓଡ଼ିଶାରୁ ରପ୍ତାନୀ ହେଉଥିବା ଜିନିଷ ମଧ୍ୟରେ ଥିଲା-ସ୍ୱର୍ଣ୍ଣ, ରୌପ୍ୟ, ହୀରା, ମୋତି, ମାଣିକ୍ୟ, ପାଟବସ୍ତ୍ର, ଔଷଧ, ଲବଙ୍ଗ, ପାନପତ୍ର, ଜପା, ଶିଳକ ତଥା ମସଲା ଜାତୀୟ ବସ୍ତୁ । ରୋମୀୟ ଲେଖକ କାସମାସଙ୍କ ଲେଖାନୁଯାୟୀ ସିଂହଳ ରାଜା କଳିଙ୍ଗ ଠାରୁ ଅପେକ୍ଷାକୃତ କମ ମୂଲ୍ୟରେ ହାତୀ କ୍ରୟ କରୁଥିଲେ । ସେହିପରି ବିଦେଶରୁ ବହୁ ଜାତୀୟ ବସ୍ତୁ କଳିଙ୍ଗକୁ ଆମଦାନୀ କରାଯାଉଥିଲା ।

ପ୍ରାଚୀନ କାଳରେ ଉପରୋକ୍ତ ଦେଶମାନଙ୍କ ସାଂସ୍କୃତିକ ଓ ବାଣିଜ୍ୟିକ ସମାବେଶକୁ ବୃହତ୍ତର କଳିଙ୍ଗ ଅବା ଓଡ଼ିଶା କୁହାଯାଉଥିଲା । ସୁସ୍ଥ ଆନ୍ତର୍ଜାତିକ ସମ୍ପର୍କର ପୃଷ୍ଠଭୂମିରେ କଳିଙ୍ଗର ଜାତୀୟ ଓ ବିଶ୍ୱ ଭାବମୂର୍ତ୍ତି ଅତୀତରେ ବିଦ୍ୟମାନ ଥିଲା । ପରବର୍ତ୍ତୀ ସମୟରେ ବୌଦ୍ଧ ଧର୍ମ ଓ ଜଗନ୍ନାଥ-ଚିନ୍ତା ଓ ଚେତନାର ବାର୍ତ୍ତା ପ୍ରଚାର କରାଇ ସେ ଦେଶମାନଙ୍କରେ ସଭ୍ୟତାର ଆଲୋକ ବର୍ତ୍ତିକା ପ୍ରଜ୍ୱଳନ କରିଥିଲା । କଳିଙ୍ଗର ଦରିଆପାରି ସମ୍ପର୍କ ତା'ର ଜାତୀୟ ଗୌରବ ଓ ସ୍ୱାଭିମାନର ଉଜ୍ଜ୍ୱଳ ନିଦର୍ଶନ ।

*ଟିଲପାଟଣା, ଛତ୍ରପୁର-୬*

• • •

## ରାଷ୍ଟ୍ରନେତା ମହତାବ୍‌ଜୀ

ସମଗ୍ର ଦେଶରେ ଜାତୀୟ ମୁକ୍ତିଯୁଦ୍ଧର ନେତୃତ୍ୱ ନେଇ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାକୁ ଦୃପ୍ତ ଓ ବଳିଷ୍ଠ ରାଜ୍ୟ ରୂପେ ପରିଚିତ କରାଇ ଯାଇଛନ୍ତି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପରେ ଡକ୍ଟର ମହତାବ ହିଁ ଓଡ଼ିଶାରେ କଂଗ୍ରେସର ବୈପ୍ଳବିକ ଧ୍ୱନି ଦେଇ ପ୍ରଚାର ... କରିଥିଲେ । ସ୍ୱାଧୀନୋତ୍ତର ଓଡ଼ିଶାରେ ଶାସନଧାରା ଓ ସମାଜ ଜୀବନ ସହ ଓତଃପ୍ରୋତ ଭାବେ ଜଡ଼ିତ ମହତାବଜୀ ସାରା ରାଜ୍ୟରେ ଏକ ସଚେତନ ବାତାବରଣ ସୃଷ୍ଟି କରିଥିଲେ । ଏ ଦୃଷ୍ଟିରୁ ମହତାବଜୀଙ୍କୁ 'ଓଡ଼ିଶାର ମୁରବୀ' କିମ୍ବା 'ବୃହତ୍ତର ଓଡ଼ିଶାର ବିନ୍ଧାଣୀ' ଭାବେ ଅଭିହିତ କରାଯାଇପାରେ । ଓଡ଼ିଶା-ଇତିହାସରେ ତାଙ୍କ ସ୍ଥାନ ସ୍ୱତନ୍ତ୍ର ଓ ଯୁଗଜୟୀ ।

ମହତାବଜୀ କ'ଣ ନଥିଲେ ? ସେ ଥିଲେ ଏକାଧାରରେ ନେତା, କବି, ଲେଖକ, ସମାଜ ସଂସ୍କାରକ, ସାମ୍ବାଦିକ ଓ ସାହିତ୍ୟିକ-ଦୃଷ୍ଟିର ... ସ୍ୱରୂପ । ଦିନ ଥିଲା, ଯେତେବେଳେ ମହତାବଜୀଙ୍କୁ ଓଡ଼ିଶାବାସୀ ନିଜର ତ୍ରାଣକର୍ତ୍ତା ଭାବେ ବିଚାର କରୁଥିଲେ । ଆଜିର ... ଯୁବନେତାମାନେ ମହତାବଜୀଙ୍କଠାରୁ ଯେଉଁ ପ୍ରେରଣା ଲାଭ କରିଛନ୍ତି, ତାହା ସେମାନଙ୍କୁ ଯଥାର୍ଥ ଦିଗ୍‌ଦର୍ଶନ ଦେଇଛି । କେନ୍ଦ୍ର ରାଜଧାନୀ ... ଦିନେ ମହତାବଜୀ, ପଣ୍ଡିତ ଜବାହରଲାଲ ଓ ସର୍ଦ୍ଦାର ପଟେଲଙ୍କ ଭଳି ନେତାଙ୍କ ସହ ଟକ୍କର ଦେଇ ନେତୃତ୍ୱ ଦେଉଥିଲେ । ଆଜି ଦିଲ୍ଲୀରେ ସେଭଳି ଓଡ଼ିଆ ନେତା ସୃଷ୍ଟି ହୋଇପାରି ନାହାନ୍ତି । ତାଙ୍କପରି ଜାତୀୟ ନେତାଙ୍କ ମାର୍ଗ, ବିଚାର ଓ ଦର୍ଶନ ଦେଶବାସୀଙ୍କୁ ନୂତନ-ଆଲୋକମୟ ... ଦେଖାଇବ । ଡକ୍ଟର ମହତାବଙ୍କ ସାଧନା, ନେତୃତ୍ୱ, ସଂଗ୍ରାମଶୀଳ ମନୋଭାବ ଆଜି ମଧ୍ୟ ସମୃଦ୍ଧ ଜାତିଗଠନ ପାଇଁ ଯେ ଏକାନ୍ତ ସହାୟକ, ତାହା ଦେଶବାସୀ ଅନୁଭବ କରନ୍ତି ।

*ଡଃ ଗିରିଧାରୀ ...*

# ସାଧବ ଅଧାଚାନ୍ଦେ ମଲା

● ଡକ୍ଟର ଶ୍ରୀଚରଣ ମହାନ୍ତି

ହଜିଲା ଦିନର କାହାଣୀଟିଏ । ଇତିହାସ ସିନା ତା'ର କିଛି ଖବର ରଖିନି, କାଳର କାଳିମାକୁ ଭେଦ କରି ଶୁଦ୍ଧ ସୁବର୍ଣ୍ଣଭଳି ସେ ଝଟକି ଉଠିଛି ଲୋକ ପରମ୍ପରାରେ । ସେ କାହିଁ କେତେ ଦିନ ତଳର କଥା । ସେତେବେଳେ ଓଡ଼ିଆ ପୁଏ ବୋଇତରେ ଅଙ୍ଗାଲ ଟେକି ଧାଉଁ ଯାଉଥିଲେ ସାଗର ସେପାରି ଦେଶକୁ । ଏ ଦେଶରେ ଅମଳ ହେଉଥିବା ଧାନ, ଯଅ, ସୋରିଷ, ଆଖୁ,ଗୁଡ଼, ପାନ, ଲୁଣ ଆଦି ଜିନିଷରେ ବୋଇତ ବୋଝେଇ କରି ଯାଇ ସେ ଦେଶରୁ ବୋହି ଆଣୁଥିଲେ ସୁନା, ରୁପା ହୀରା, ନୀଳା ସମେତ କାହିଁ କେତେ ଧନରତ୍ନ । ସେ ଦିନ ଆଜି ଲୁଚି ଯାଇଛି କିନ୍ତୁ ଜାତିର ସ୍ମୃତିରୁ ସେ ଘଟଣା ଆଜି ଲିଭିଯାଇନି । ଦିନ ଦିନ ମାସ ମାସ ବର୍ଷ ବର୍ଷ ବିତିଯାଉଥିଲେ ବି, ଓଡ଼ିଆ ଜାତି ସେ ଅପାଶୋରା ସ୍ମୃତିକୁ ଚଳଣି ଭିତରେ ଜାବୁଡ଼ିକରି ରଖିଛି । ଆଜିବି ଅନୂଢ଼ା କିଶୋରୀଗଣ ଭାଦ୍ରବ ମାସ ସାରା ରବିବାରମାନଙ୍କରେ ସକାଳୁ ସକାଳୁ ବାଲୁକାଲିଙ୍ଗ(ବାଲୁଙ୍ଗା) ପୂଜାକରି ଓ ସନ୍ଧ୍ୟାରେ ଖୁଦ ତଣ୍ଡୁଳର ଭୋଗ ଦେଇ ମା ମଙ୍ଗଳାଙ୍କୁ ଭକ୍ତିଭରେ ପୂଜା କଲାବେଳେ ସ୍ୱର୍ଗତ ଗୋପୀନାଥ ଦାସଙ୍କ ଖୁଦୁରୁକୁଣୀ(ଖୁଦରୁକୁଣୀ) ଓଷା ବହି ପଢ଼ି ପଢ଼ି ସଜଳ ଆଖିରେ କଜଳକୁ ଧୋଇ ଧୋଇ ଦିଅନ୍ତି ।

ଷାଠିଏ ହାତ ମହି ଆଜି ବିଶାକାଠିରେ ପରିଣତ ହେଲାଣି । ତଥାପି ଆଜିବି ମହାଳୟା ଅମାବାସ୍ୟାଠାରୁ ଦୀପାବଳୀ ଅମାବାସ୍ୟା ପର୍ଯ୍ୟନ୍ତ ବୋଇତକୁ ସଜ କରି ଓଡ଼ିଆ ତାହାର ପଣ୍ୟ ଦ୍ରବ୍ୟ ସଂଗ୍ରହର ସ୍ମୃତି ବହନ କରି କରି ଚାଲେ । ଏବେବି କାଉଁରିଆ ବିଡ଼ାର କାଠିରେ ନିଆଁ ଲଗାଇ ଅମାବାସ୍ୟାର ନିରନ୍ଧ୍ର ଅନ୍ଧକାରରେ ଆସୁଥିବା ବୋଇତକୁ ଆଲୋକ ଦେଖାଏ । ଏବେବି ଅତୀତର ଗୌରବୋଜ୍ଜ୍ୱଳ ପୂର୍ବ ପୁରୁଷଙ୍କୁ ଅନ୍ଧାରରେ ଆସି ଆଲୁଅରେ ଯିବା ପାଇଁ ଡ଼ାକିଲାବେଳେ ବୋଇତର ଛବିଟିଏ ଲେଖି ସବୁ କୋଠରୀରେ ଧାନ ଯଅ, ମୁଗ,ଲୁଣ, ପାନ, ଆଖୁ, ଗୁଡ଼ ଆଣି ଥୋଇଥାଏ । ଏବେ ବି ଓଡ଼ିଆଏ କାର୍ତ୍ତିକମାସରେ ତୁଳସୀ ଚଉରା ମୂଳରେ ଆକାଶଦୀପ ଜଳାଇ ପଣ୍ୟଦ୍ରବ୍ୟ ସଂଗ୍ରହର ସ୍ମୃତିକୁ ସତେଜ ରଖେ । ବୋଇତରେ ଯେତେ ଦ୍ରବ୍ୟ ସଂଗୃହୀତ ହୁଏ, ସେହି ଅନୁକ୍ରମରେ ଆକାଶ ଦୀପକୁ ଉଠାଯାଏ । ଆଜି ଆଉ ପଣ୍ୟ ଦ୍ରବ୍ୟ ସଂଗ୍ରହ କରାଯାଉନି, ତଥାପି ଆକାଶଦୀପକୁ ଧୀରେ ଧୀରେ ଉଠାଇ ପୂର୍ଣ୍ଣିମା ଦିନ ସର୍ବୋଚ୍ଚ ସ୍ଥାନକୁ ଉଠାଇ ଦିଆଯାଏ ।

ଆଜିବି ପଞ୍ଚକ ପାଞ୍ଚଦିନ ଥରୁ ଥରୁ ଶୀତରେ ଧର୍ମର ପ୍ରଲେପ ମଧ୍ୟରେ ନଦୀ ପୋଖରୀ ଜଳାଶୟରେ କାର୍ତ୍ତିକ ସ୍ନାନ କରି ଓଡ଼ିଶାର ଜଗନାରୀ ବାଲୁଙ୍ଗା ପୂଜାକରି ଫେରନ୍ତି । ସେ ହଜିଲା ଦିନର ସ୍ମୃତି ଚଳଣି ବଳଣିରେ ନେସି ହୋଇ ରହିଛି । ଆଉ ଆଜି କାର୍ତ୍ତିକର ସ୍ନିଗ୍ଧସ୍ନିଗ୍ଧୁଆ ପବନରେ ଆବଦ୍ଧ ଅଚଳ ଜଳାଶୟରେ ଓଡ଼ିଆ ପୁଅ ତା'ର ସ୍ମୃତିର ବୋଇତକୁ ଭସାଇ ଦେଇ ନିଜ ମଳମଳ ପାଣିଚିଆ ଆଖିରେ କଦଳୀ ବାଟୁଗା ବା ସୋଲର ବୋଇତଟିଏ ଭସାଇ ଦେଇ ଥଥା ମାମା ହୋଇ ଘରକୁ ବାହୁଡ଼ି ଆସେ । ଅନିଶ୍ଚିତ ବର୍ତ୍ତମାନରେ ରହି ଅନ୍ଧାରୁଆ ଅତୀତକୁ ସେ ଖାଲି ଦରାଣ୍ଡି ଦରାଣ୍ଡି ଖୋଜିବୁଲେ । ସେଦିନ ସାଧବର ଉତ୍ତର ପୁରୁଷ ଆଜିବି ବିଦେଶ ଯାଏ, ବେପାର ପାଇଁ ନୁହେଁ ଚାକିରୀ ପାଇଁ । ଆସାମର ଚା ବଗିଚା, କଲିକତାର ଝୋଟ କଳ, କାଳିମାଟିର ଲୁହା କାରଖାନା, ଉତ୍ତର ଭାରତର କେଉଁ ଡ୍ୟାମ୍ ବା ପ୍ରୋଜେକ୍ଟରେ ଦାଦନ ଶ୍ରମିକ ଭାବରେ ।

ଆଜି ଜାତିର ଏପରି ଆର୍ଥନୀତିକ ଅବକ୍ଷୟ ସତ୍ତ୍ୱେ ବି ଜାତିର ଆତ୍ମା ମରିଯାଇନି । ଜାତିର ମନ ଭାଙ୍ଗି ପଡ଼ିନି । ଇତିହାସର ସୁବର୍ଣ୍ଣ ପୃଷ୍ଠାକୁ ଅନାଇ ଅନାଇ ଓଡ଼ିଆ ଆଜି ଜଳ ଜଳ ଲୋତକରେ, ପାଣିଚିଆ ଆଖିରେ ଖାଲି ଅତୀତକୁ ଅନାଇ ରହିଛି । ଜଗନ୍ନାଥ ଦାସ ଭାଗବତରେ କହିଛନ୍ତି-"ଆପଣା ଦୋଷେ ପ୍ରାଣୀ ମରେ ।" ଏ ଇତିହାସ ପ୍ରସିଦ୍ଧ ଜାତିର ଭାଗ୍ୟ ବିପର୍ଯ୍ୟୟ ପାଇଁ ପାରିପାର୍ଶ୍ୱିକ ଦୁର୍ଗତି ସହିତ ଜାତିର ଲୋକମାନେ ବି ଅନେକ ଅଂଶରେ ଦାୟୀ । ପରର ଦୋଷ ଗାଇବା ଖୁବ୍ ସହଜ, ମାତ୍ର ଆତ୍ମଦୋଷ ଅନୁଧ୍ୟାନ କରିବା ହିଁ ସବୁ ସମୟରେ ବିଜ୍ଞତାର କାର୍ଯ୍ୟ । ଅଲିଅଳି ସାଧବ ଝିଅର ଗେଲ ବସରର କାହାଣୀ ତା'ର କ'ଣ ସୂଚନା ଦିଏ ନି ? ଅଲିଅଳି ସାଧବ ଝିଅର ଗେଲ ବସରର କାହାଣୀ ତା'ର କ'ଣ ସୂଚନା ଦିଏ ନି ? କାମ କଲେ ହିଁ ଖାଇବାକୁ ମିଳିବ । ଅଳସୁଆର ଭାଗ୍ୟ ବୁଡ଼ିଯାଏ । ଯେଉଁ ଜାତି କାମ ନକରି ବିଳାସରେ ସମୟ ବିତାଏ, ତା'ର ଭାଗ୍ୟ ତଳକୁ ତଳକୁ ଯାଏ । ଶେଷରେ ସମସ୍ତ ଜାତିଟା ଅଳସୁଆ ପାଲଟି ଯାଏ ।

ଦିନଥିଲା ଓଡ଼ିଆ କଠିନ ପରିଶ୍ରମ କରି, ବେପାର ବଣିଜ କରି, ଜାତିର ଭାଗ୍ୟକୁ ଉନ୍ନତିର ଶୀର୍ଷ ବିନ୍ଦୁକୁ ନେଇଯାଇଥିଲା । ବୀରତ୍ୱରେ ସେ ଯେପରି ଅର୍ଦ୍ଧ ଭାରତର ଅଧିପତି ହୋଇଥିଲା, ବାଣିଜ୍ୟରେ ମଧ୍ୟ ସେପରି ଅର୍ଦ୍ଧ ଧରଣୀର ଅଧିପତି ହୋଇଥିଲା । ପୂର୍ବ ଏସିଆର ଦ୍ୱୀପପୁଞ୍ଜ ଠାରୁ ଆଫ୍ରିକା ପର୍ଯ୍ୟନ୍ତ ସାଗର ପଥ ତାର ଜଳପଥର ବାଣିଜ୍ୟ ପରିସରଭୁକ୍ତ ଥିଲା । ସ୍ଥଳପଥରେ ତାର ତ ଅବାଧ ବାଣିଜ୍ୟ କାରବାର ଥିଲା ।

ଗୋପୀନାଥ ଦାସ କହନ୍ତି-

ବହୁତ ସାଧବ ଅଛନ୍ତି, ବୋଇତେ ବାଣିଜ୍ୟ କରନ୍ତି ।

ସେହି ବାଣିଜ୍ୟ ପରସାଦେ, ଜିଣନ୍ତି କୁବେରକୁ ବାଦେ ।

ସାଧବମାନଙ୍କର ନାରୀ, ଶରୀରେ ସୁବର୍ଣ୍ଣ ଆବୋରି ।

ବାଣିଜ୍ୟ କାରବାରରୁ ଧନ ସମ୍ପଦରେ ଦେଶ ହସି ଉଠୁଥିଲା ।

ଧନ-ଅର୍ଜନ ସହଜସାଧ୍ୟ ନଥିଲା । ସାଗର ବୁକୁରେ ବୋଇତ ଭସାଇ ଚେଉ ଗଲାବେଳେ ସାଧବମାନଙ୍କୁ ନାନା ପ୍ରାକୃତିକ ଦୁର୍ବିପାକର ସମ୍ମୁଖୀନ ହେବାକୁ ପଡୁଥିଲା । ନିଃସଙ୍ଗ ଭାବରେ ସାଗରବୁକୁରେ ଦିନରେ ଖରା ଓ ରାତିରେ ତରା ଦେଖି ଦେଖି ସମୟ ବିତାଇବାକୁ ହେଉଥିଲା । ନିର୍ଭୀକ ସାଧବପୁଅର ଏ ସବୁକୁ ପରୁଆ ନଥିଲା । ସେହି ସାଧବମାନଙ୍କ ଭିତରୁ ତନୟବନ୍ତ ସାଧବର କାହାଣୀଟି ନିହାତି କରୁଣ । ସେ ଯେପରି ସମଗ୍ର ଓଡ଼ିଆ ସାଧବର, ଓଡ଼ିଆ ଜାତିର ପ୍ରତିନିଧି ।

ସାଧବର ଘରଣୀର ନାଆଁ ଶକୁନ୍ତଳା । ସାତପୁଅଙ୍କୁ ସୁନ୍ଦରୀ ସାତବୋହୂ । ସୁନାନାକୀ ଅଲିଅଳି ଝିଅଟିଏ । ନାଆଁ ତାର ତଅପୋଇ । ସାନଟି ହୋଇଥିବାରୁ ସମସ୍ତଙ୍କର ଗେଲବସର । ବଡ଼ ଅଝଟିଆ ଝିଅଟିଏ । ସାଧବମାନଙ୍କ ଘରେ ଧନ ବଢ଼ିବାରୁ ବିଳାସ ବଢ଼ିବଢ଼ି ଚାଲିଲା । ଲକ୍ଷ୍ମୀଙ୍କର ଅନ୍ୟନାମ ଚଞ୍ଚଳା । ସେ କେଉଁଠି ସ୍ଥିର ହୋଇ ରହିପାରନ୍ତି ନି । ଯିଏ ତାଙ୍କୁ ବାନ୍ଧି ରଖିବାକୁ ଚେଷ୍ଟା କରେ, ସେ ଖସି ଯାଆନ୍ତି । ଠିକ୍ ଯେପରି ତନୟ ସାଧବ ଘରେ ହୋଇଥିଲା ।

ଘରର ଅଲିଅଳ ଝିଅ ତଅପୋଇ ଅନ୍ୟର ପ୍ରରୋଚନାରେ ସୁନାର କୁଲେଇ ଆଉ ସୁନାର ଚାନ୍ଦ ମାଗି ବସିଲା ବାପାଙ୍କୁ । ଠିକ୍ ଯେପରି ଓଡ଼ିଆ ଯୁବ ବ୍ୟବସାୟୀ ବେପାର ପାଇଁ ଆଣିଥିବା ଋଣ ଟଙ୍କାରେ ପ୍ରଥମେ ବିଳାସ ପାଇଁ ଗାଡ଼ିଟିଏ କିଣି ପକାଏ । ଝିଅର ଅର୍ଦ୍ଧଳା ପୂରଣ କରିବା ପାଇଁ ବ୍ୟବସାୟର ଟଙ୍କାକୁ, ସୁନାକୁ ତନୟ ସାଧବ ଚାନ୍ଦ ଗଢ଼ା କାମରେ ଲଗାଇ ଦେଲେ । ସାଧବ ସାଧବାଣୀ ବସି/ଗଢ଼ାନ୍ତି ସୁବର୍ଣ୍ଣର ଶଶୀ । ସେ ଚନ୍ଦ୍ରର ଚାରିପାଖେ ଶୋହେ ହୀରା/ଚନ୍ଦ୍ରକୁ ବେଢ଼ି ଯେହ୍ନେ ତାରା । ବୋହୂମାନେ ବି ବିଳାସରେ କମ୍ ନୁହନ୍ତି । ସେମାନେ 'ବାଲନ୍ତି ସୁନାରେ ରୁପାରେ/ଶୁଅନ୍ତି ଖଟ ପଲଙ୍କରେ । ତା'ର ଫଳ ହେଲା ବିଳାସ ପାଇଁ ବ୍ୟବସାୟର ପୁଞ୍ଜି ଯେତେବେଳେ ସରକ କରିବାରେ ବିନିଯୋଗ ହୁଏ, କାରବାର ମନ୍ଦାକ୍ରାନ୍ତ ମାନ୍ଦା ହୋଇଯାଏ । ବ୍ୟବସାୟ ମନ୍ଦା ହେବାରୁ ତନୟ ସାଧବର ଅଧା ଚାନ୍ଦରେ ଆର୍ଥନୀତିକ ମୃତ୍ୟୁ ହେଲା. ଆଉ ସବୁ ସମ୍ପତ୍ତି ଘରର ବିଳାସ ପାଇଁ ଲାଗିଯିବାରୁ ବେପାରୀ ସାଧବାଣୀର ବି ସମ୍ପତ୍ତିଜନିତ ମୃତ୍ୟୁ ହେଲା । ସାଧବ ନିଜର ସଞ୍ଚୟକୁ ବୁଡ଼େଇଯାଇ ବ୍ୟବସାୟିକ ମୃତ୍ୟୁ ଲଭିଲା । ଆଜିର ଓଡ଼ିଆ ବ୍ୟବସାୟୀମାନଙ୍କର ଅବସ୍ଥା ପ୍ରକାରାନ୍ତରେ ସେଇଆ । ସେମାନେ ସେମାନଙ୍କର ସଂପୂର୍ଣ୍ଣ ସମ୍ବଳକୁ ବ୍ୟବସାୟରେ ଯଥାର୍ଥ ବିନିଯୋଗ କରି ଅନେକାଂଶରେ ନିଜର ବିଳାସ ବ୍ୟସନରେ ଲଗାଉ ଦେଉଛନ୍ତି । ପ୍ରତିଷ୍ଠିତ ହେବାପରେ ନିଜର ଆଭିଜାତ୍ୟ ଦେଖାଇବାରେ ଆପତ୍ତି ନାହିଁ । ମାତ୍ର ସରକାରୀ ସବ୍‌ସିଡ଼ି, ସରକାରୀ ତଥା ବେସରକାରୀ ଋଣ ଓ ବ୍ୟାଙ୍କରୁ ଋଣ ଆଣି ଉଦ୍ୟୋଗ ପ୍ରତିଷ୍ଠାର ପ୍ରଥମ ଅବସ୍ଥାରେ ନିଜର ଅଯଥା ସଂଭ୍ରାନ୍ତ୍ୟ ପ୍ରଦର୍ଶନ କରିବା ଏକ ପ୍ରକାର ଅପମୃତ୍ୟୁ । ଏପରି ସରକାରୀ ତଥା ବେସରକାରୀ ଋଣ ପରିଶୋଧ ପୂର୍ବରୁ ପ୍ରତିଷ୍ଠାନଟି ରୁଗ୍ଣ ଶିଳ୍ପରେ ପରିଣତ ହେଉଛି । ତେଣୁ ଆଜିର ଓଡ଼ିଆ ସାଧବ ବି ଅଧା ଚାନ୍ଦରେ ମୃତ୍ୟୁବରଣ କରୁଛି । ଠିକ୍ ଯେପରି ସେଦିନର ଓଡ଼ିଆ ଜାତି ତାର ଉଦ୍ୟମକୁ ବିଳାସରେ ଲଗାଇ ଆର୍ଥନୀତିକ ମୃତ୍ୟୁ ବରଣ କରି ଦାରିଦ୍ର୍ୟକୁ ଆପଣେଇ ନେଇଥିଲା ।

ସାଧବର ଅପମୃତ୍ୟୁର କାହାଣୀକୁ କ'ଣ ଆମେ ଖାଲି ଧର୍ମର ଦୃଷ୍ଟି ଭିତରେ ରଖିବା । ସେଥିରୁ ଜାତି କ'ଣ କିଛି ସଙ୍କେତ ପାଉନି ???

ଓଡ଼ିଆ ବିଭାଗ, ସରକାରୀ ସାନ୍ଧ୍ୟ ମହାବିଦ୍ୟାଳୟ, ଘର ନଂ-
ବି ୪୪, ସେକ୍ଟର-୪, ରାଉରକେଲା-୭୬୯୦୦୨

• • •

# ଜାତୀୟଜୀବନ ଗଠନରେ ଅଗ୍ରସୂରୀ

ଡ଼କ୍ଟର ମହତାବ ଗତ ଅର୍ଦ୍ଧ ଶତାବ୍ଦୀ ଧରି ଓଡ଼ିଶାର ଜାତୀୟ ଜୀବନ ସହିତ ଏଭଳି ଓତଃପ୍ରୋତ ଭାବରେ ଜଡ଼ିତ ଯେ ତାଙ୍କଠାରୁ ବିଚ୍ଛିନ୍ନ କରି ଓଡ଼ିଶାର କୌଣସି ବିଷୟରେ ପ୍ରାୟ କଳ୍ପନା କରି ହୁଏ ନାହିଁ । ଯେଉଁ ଦେଶ କାଳ ପାତ୍ରର ସୀମା ଭିତରେ ଆମେ ଚିହ୍ନିତ, ସେ ଯେପରି ତାର ଏକ ମୂର୍ତ୍ତିମନ୍ତ ଭାସ୍କର୍ଯ୍ୟ । ଆମ ଜାତୀୟ ଜୀବନର ମହାନ୍ ବୈଶିଷ୍ଟ୍ୟ ସହିତ ସାମାନ୍ୟତମ ଦୋଷ ଦୁର୍ବଳତା ସବୁ କିଛି ତାଙ୍କ ବ୍ୟକ୍ତିତ୍ୱରେ ପ୍ରତିଫଳିତ ।

ଡ଼ଃ ମହତାବ ଏ ଜାତିଗଠନରେ ଏକ ଅଗ୍ରସୂରୀର ଭୂମିକା ଗ୍ରହଣ କରିଥିଲେ । ତାଙ୍କର ବଡ଼ ବୈଶିଷ୍ଟ୍ୟ ହେଉଛି, ସେ କୌଣସି ପ୍ରତିଷ୍ଠିତ ମୂଲ୍ୟ ବା ଅନୁଷ୍ଠାନ ନିକଟରେ ବନ୍ଧା ପଡ଼ିନାହାଁନ୍ତି । ସେ ପରମ୍ପରାର ପୁରୋଦୃଷ୍ଟି ସହିତ ନୂତନ ବା ଭବିଷ୍ୟମାନର ଦିଗ୍‌ଦର୍ଶନ ହରାଇ ନାହାନ୍ତି । ମନେହୁଏ ସେ ଯେପରି ଜୀବନରେ ପରିବର୍ତ୍ତନ ସ୍ୱର ପ୍ରତି ସଂପୂର୍ଣ୍ଣ ସଚେତନ । ତାଙ୍କ ଦୃଷ୍ଟିଭଙ୍ଗୀରେ ସଭ୍ୟତା ଓ ସଂସ୍କୃତର ମୂହାଙ୍କ କାହାରି ଦୃଷ୍ଟି ଏଡ଼ାଇ ଯିବାର ନୁହେଁ ।

ଡ଼ଃ ସଚ୍ଚିଦାନନ୍ଦ ରାଉତରାୟ

# ଓଡ଼ିଶାର ଅମର ଶହୀଦ

## ବିପ୍ଳବୀ ଜୟୀରାଜଗୁରୁ

୧୮୧୭ ମସିହାରେ ଓଡ଼ିଶାରେ ପ୍ରଥମ ପାଇକ ବିଦ୍ରୋହ ଅନୁଷ୍ଠିତ ହୋଇଥିଲା । ମାତ୍ର ଏହାର ୧୨ ବର୍ଷ ପୂର୍ବେ ଇଂରେଜମାନଙ୍କୁ ପ୍ରତିରୋଧ କରି ଓଡ଼ିଶାର ଯେଉଁ ବିପ୍ଳବୀ ବିଦ୍ରୋହର ସ୍ୱର ଉତ୍ତୋଳନ କରିଥିଲେ, ସେମାନଙ୍କ ମଧ୍ୟରେ ଶହୀଦ ଜୟୀରାଜଗୁରୁଙ୍କ ନାମ ଉଲ୍ଲେଖଯୋଗ୍ୟ । ଜୟୀରାଜଗୁରୁଙ୍କ ପୂରା ନାମ ହେଉଛି ଜୟକୃଷ୍ଣ ରାଜଗୁରୁ ମହାପାତ୍ର । ସେ ଚାନ୍ଦ ରାଜଗୁରୁଙ୍କ ଔରସରୁ ମାତା ହାରାମଣିଙ୍କ ଗର୍ଭରୁ ୧୭୩୯ ଖ୍ରୀଷ୍ଟାବ୍ଦ କାର୍ତ୍ତିକ ମାସ ଶୁକ୍ଳପକ୍ଷ ନବମୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ ।

ଜୟକୃଷ୍ଣ ଶୈଶବ ଜୀବନ ଅତିବାହିତ ହେବା ପରେ ପୁରୀର ସଂସ୍କୃତ ପଣ୍ଡିତମାନଙ୍କଠାରୁ ସଂସ୍କୃତ ବିଦ୍ୟା ଅର୍ଜନ କରି ଦିବ୍ୟସିଂହ ଦେବଙ୍କ ରାଜସଭାରେ ରାଜଗୁରୁ ତଥା ମନ୍ତ୍ରୀ ଭାବରେ ପ୍ରତିଷ୍ଠିତ ହେଲେ । ଓଡ଼ିଶାରେ ଉତ୍କଳ ରାଜବଂଶର ପ୍ରତିଷ୍ଠା ବଢ଼ାଇବା ପାଇଁ ଉଦ୍ୟମ କରି ବରୁଣାଇଗଡ଼କୁ ସୁଦୃଢ଼ କରିବାକୁ ଲାଗିଲେ । ସେହିଠାରେ ବାସ କରି ସେ ଖୋର୍ଦ୍ଧା ଅଞ୍ଚଳରେ ପାଇକ ଜାଗରଣ ପାଇଁ ପ୍ରବଳ ଉଦ୍ୟମ କଲେ । ପାଇକ ଗ୍ରାମକୁ ସେ ପଦବ୍ରଜରେ ଭ୍ରମଣ କରି ସେମାନଙ୍କୁ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ କରି ରଖାଇଥିଲେ । ଇଂରେଜମାନଙ୍କ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବା ନିମନ୍ତେ ପାଇକ ଆଖଡ଼ାମାନ ସଙ୍ଗଠନ କରି ନିଜେ ସମର ବିଦ୍ୟା ଶିଖାଉ ଥିଲେ । ତାଙ୍କରି ଉଦ୍ୟମରେ ଓଡ଼ିଶାରେ ବାଣିଆଡ଼େ ପାଇକ ଜାଗରଣ ଦେଖା ଦେଇଥିଲା ।

ବୀରକିଶୋର ଦେବଙ୍କ ମୃତ୍ୟୁ ପରେ ଦ୍ୱିତୀୟ ମୁକୁନ୍ଦଦେବ ସିଂହାସନ ଆରୋହଣ କଲେ । ତାଙ୍କ ସମୟକୁ ଖୋର୍ଦ୍ଧା ଥାଏ ଭାରତର ଶେଷ ସ୍ୱାଧୀନ ଦୁର୍ଗ । ଇଂରେଜମାନେ ଓଡ଼ିଶାକୁ ଅଧିକାର କରିବା ପାଇଁ ସୁଯୋଗ ଖୋଜୁଥାନ୍ତି । ବ୍ରିଟିଶ୍ ଶାସକ କର୍ଣ୍ଣେଲ୍ ହାର୍‌କୋର୍ଟ କୂଟନୀତି ପ୍ରୟୋଗ କରି ଖୋର୍ଦ୍ଧା ରାଜାଙ୍କ ପାଖକୁ ଖବର ଦେଲେ ଯେ ଯଦି ଖୋର୍ଦ୍ଧା ରାଜା ମରହଟ୍ଟାମାନଙ୍କୁ ସାହାଯ୍ୟ ନକରି ଇଂରେଜମାନଙ୍କୁ ସାହାଯ୍ୟ କରନ୍ତି, ତେବେ ଇଂରେଜମାନେ ପୁରସ୍କାର ସ୍ୱରୂପ ଖୋର୍ଦ୍ଧା ରାଜାଙ୍କୁ ୧ ଲକ୍ଷ ମୁଦ୍ରା ସହିତ ହରାଇଥିବା ୪ ଗୋଟି ମରହଟ୍ଟା କବଳିତ ପ୍ରଗଣା(ରାହାଙ୍ଗ, ସରାଇ, ଚବିଶ କୁଦ ଓ ଲୁମ୍ବାଇ) ଫେରସ୍ତ ମିଳିବ । ପ୍ରଧାନମନ୍ତ୍ରୀ ଜୟୀରାଜଗୁରୁଙ୍କ ବାରଣ ସତ୍ତ୍ୱେ ମୁକୁନ୍ଦଦେବ ଏ ପ୍ରସ୍ତାବରେ ସମ୍ମତି ପ୍ରଦାନ କଲେ । ଫଳରେ ଇଂରେଜମାନେ ପ୍ରଥମ କିସ୍ତି ସ୍ୱରୂପ ଦଶ ହଜାର ଟଙ୍କା ପଠାଇଲେ । ଜୟୀରାଜଗୁରୁ ରାଜାଙ୍କୁ ଚେତାଇ ଦେଲେ ଯେ ଇଂରେଜମାନେ ବିଶ୍ୱାସଘାତକତା କରିବେ । କର୍ଣ୍ଣେଲ ହାରକୋର୍ଟ ମୁକୁନ୍ଦଦେବଙ୍କ ପାଖକୁ ଖବର ପଠାଇଲେ ଯେ ପ୍ରଗଣା ଫେରା ଯିବ ନାହିଁ । ଏଥିରେ ରାଜା ମୁକୁନ୍ଦଦେବ ମର୍ମାହତ ହୋଇ ଜୟୀରାଜଗୁରୁଙ୍କ ପରାମର୍ଶ ଲୋଡ଼ିଲେ । ଜୟୀରାଜଗୁରୁ ଏହି ଚାରୋଟି ପ୍ରଗଣା ନିମନ୍ତେ ଆବଶ୍ୟକ ପଡ଼ିଲେ ଯୁଦ୍ଧ କରିବାକୁ ହେବ ବୋଲି କହିଲେ ।

ଜୟୀରାଜଗୁରୁଙ୍କ ପରାମର୍ଶକ୍ରମେ ମୁକୁନ୍ଦଦେବ ଇଂରେଜ ପ୍ରଶାସକଙ୍କର ଆଦେଶଗୁଡ଼ିକୁ ଗୋଟିକ ପରେ ଗୋଟିଏ ଅବମାନନା କରି ଚାଲିଲେ । ମରହଟ୍ଟାମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ କରି ଇଂରେଜମାନଙ୍କ ସହ ମୁକାବିଲା ପାଇଁ ପ୍ରସ୍ତୁତ ହେଲେ । ଖୋର୍ଦ୍ଧା ପାଇକମାନେ ୧୮୦୪ ମସିହା ଅକ୍ଟୋବର ମାସରେ ପିପିଲିଠାରେ ଇଂରେଜ ଶାସନାଧୀନ କେତେକ ଅଞ୍ଚଳ ଉପରେ ପ୍ରଥମେ ଆକ୍ରମଣ କରି ବହୁ କ୍ଷତି ଘଟାଇଲେ । କ୍ରମଶଃ ଏହା ଅତି ଭୟଙ୍କର ରୂପ ଧାରଣ କଲା । କର୍ଣ୍ଣେଲ ହାରକୋର୍ଟ ଏକାକୀ ବୀର ପାଇକମାନଙ୍କୁ ପ୍ରତିରୋଧ କରି ନପାରିବାରୁ ମାନ୍ଦ୍ରାଜ ସେନାବାହିନୀର "ମେଜର ଫ୍ଲେଚର"ଙ୍କୁ ଡକାଇ ଖୋର୍ଦ୍ଧା ଗଡ଼କୁ ଅଧିକାର କରିବା ପାଇଁ ଯୋଜନା କଲେ । ଉଭୟ ପକ୍ଷର ସେନାବାହିନୀଙ୍କ ମଧ୍ୟରେ ପ୍ରାୟ ୩ ସପ୍ତାହ ଧରି ଘମାଘୋଟ ଯୁଦ୍ଧ ଲାଗି ରହିଥିଲା । ଖୋର୍ଦ୍ଧା ଦୁର୍ଗର ପାଇକମାନେ ଖୁବ୍ ବୀରତ୍ୱର ସହିତ ସେମାନଙ୍କର ମୁକାବିଲା କଲେ । କିନ୍ତୁ ଇଂରେଜମାନଙ୍କ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ସାମନାରେ ବେଶୀ ଦିନ ତିଷ୍ଠି ପାରି ନଥିଲେ । ଡ଼ିସେମ୍ବର ୪ ତାରିଖ ଦିନ ଇଂରେଜମାନେ-ଭାରତର ଶେଷ ସ୍ୱାଧୀନ ଦୁର୍ଗକୁ ଅକ୍ତିଆର କରି ନେଲେ । ସେତେବେଳକୁ ଜୟୀରାଜଗୁରୁ ଏବଂ ରାଜା ମୁକୁନ୍ଦଦେବ ଦୁର୍ଗ ଛାଡ଼ି ପଳାୟନ କରିଥାନ୍ତି । ଡ଼ିସେମ୍ବର ୫ ତାରିଖ ଦିନ ଇଂରେଜମାନେ ଦୁର୍ଗ ଅଧିକାର କରି ମୁକୁନ୍ଦଦେବ ଖୋର୍ଦ୍ଧାର ରାଜା ନୁହନ୍ତି ବୋଲି ଘୋଷଣା କଲେ ଏବଂ ଜୟୀରାଜଗୁରୁଙ୍କୁ ଧରିବାରେ ସକ୍ଷମ ହେଲେ । ତାଙ୍କୁ କର୍ଣ୍ଣେଲ ହାରକୋର୍ଟଙ୍କ ସମ୍ମୁଖକୁ ନିଆଗଲା । କର୍ଣ୍ଣେଲ ତାଙ୍କୁ ପଚାରିଲେ, "ଏପର୍ଯ୍ୟନ୍ତ ଯାହାସବୁ ଘଟିଗଲା ସେଥିପାଇଁ ଦାୟୀ କିଏ ?" ରାଜଭକ୍ତ ଜୟୀରାଜଗୁରୁ ଉତ୍ତରରେ କହିଥିଲେ, "ରାଜା ନା-ବାଳକ ତେଣୁ ଯାହା ସବୁ ଘଟି ଯାଉଛି, ସେଥିପାଇଁ ମୁଁ ନିଜେ ହିଁ ଦାୟୀ ।" ରାଜା ମୁକୁନ୍ଦଦେବଙ୍କୁ ମୁକ୍ତ କରି କେବଳ ଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାରକ ଭାବେ ପୁରୀଠାରେ ଅବସ୍ଥାପିତ କରାଇଲେ । ଜୟୀରାଜଗୁରୁଙ୍କୁ ଦୋଷୀ ସାବ୍ୟସ୍ତ କରାଇ ୧୮୦୫ ମସିହା ପ୍ରଥମ ଭାଗରେ ମେଦିନୀପୁରର 'ବାଗିତୋଟା ଠାରେ ଗୋଟିଏ ବରଗଛର ଦୁଇଟି ଡାଳକୁ ପାଖକୁ ଲଗାଇ ଆଣି ସେଥିରେ ତାଙ୍କୁ ବାନ୍ଧି ଅତି ନିର୍ମମ ଭାବରେ ପ୍ରାଣଦଣ୍ଡ ଦେଇଥିଲେ । ଶହୀଦ୍ ବିପ୍ଳବୀ ଜୟୀରାଜଗୁରୁଙ୍କର ରାଜଭକ୍ତି ଓ ଦେଶ ପ୍ରୀତିର ପଟାନ୍ତର ନାହିଁ ।

## ଶହୀଦ ଲକ୍ଷ୍ମଣ ନାୟକ

ଓଡ଼ିଶାର ବଣ ପାହାଡ଼ ଘେରା ଆଦିବାସୀ ପଲ୍ଲୀ ତେନ୍ତୁଳିଗୁମାରୁ ଭାରତର ସ୍ୱାଧୀନତା ପାଇଁ ହୁଙ୍କାର ଦେଇଥିଲେ ଲକ୍ଷ୍ମଣ ନାଏକ । ସ୍ୱାଧୀନତା ସଂଗ୍ରାମର ମହା ସ୍ରୋତରେ ସାମିଲ ହୋଇ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଆନ୍ଦୋଳନ, ସତ୍ୟାଗ୍ରହ ଓ ଅସହଯୋଗ କରି ଜନ୍ମମାଟିକୁ ମୁକ୍ତ କରିବା ପାଇଁ ସେ ନେଇଥିଲେ ଆଗ୍ନେୟ ଶପଥ ।

୧୮୯୯ ମସିହା ନଭେମ୍ବର ୨୨ ତାରିଖରେ ତେଣ୍ଟୁଲିଗୁମ୍ମା ଗ୍ରାମର ଏକ ଭୂମିଆ ଆଦିବାସୀ ପରିବାରରେ ଜନ୍ମଗ୍ରହଣ କରିଥିଲେ ଶହୀଦ ଲକ୍ଷ୍ମଣ ନାୟକ । ପିତାଙ୍କ ନାମ ପଦଲମ ନାଏକ । ପିଲାଟି ଦିନରୁ ଲକ୍ଷ୍ମଣ ନାଏକ ଥିଲେ ସାହସୀ ଓ ଜିଦ୍‌ଖୋର୍ । ସେହି ଇଲାକାର ସମସ୍ତ ବଣ, ପାହାଡ଼, ଝରଣା ଓ ବିଭିନ୍ନ ଚେରମୂଳି ସହିତ ଲକ୍ଷ୍ମଣ ବେଶ୍ ପରିଚିତ ଥିଲେ । ତେଣୁ ସେ ଗାଉଁଲୀ ବୈଦ୍ୟଗିରି, ଝାଡ଼ଫୁଙ୍କ,ଫୁଙ୍କାଣ ଓ ଚେରମୂଳି ଚିକିତ୍ସା କରି ଲୋକଙ୍କ ସେବା କରିବା ଯୋଗୁଁ ସେ ବିଶେଷ ଲୋକପ୍ରିୟ ହୋଇ ପାରିଥିଲେ । ସମୟ ସମୟରେ ସେ ବାପାଙ୍କ ସହ ଜୟପୁର, ମାଟିଲି ଓ ରାମଗିରିକୁ ନାନା କାର୍ଯ୍ୟରେ ଯାଇ ଓଡ଼ିଆ ଭାଷା ଶିଖିଥିଲେ । ୧୯ ବର୍ଷ ବୟସରେ ଲକ୍ଷ୍ମଣ ସାନଗୁମ୍ମାର ଘାସି ଭୂମିଆଙ୍କ ଝିଅ ମଙ୍ଗୁଲିକୁ ବିବାହ କରିଥିଲେ । ପିତାଙ୍କ ଅବସର ଗ୍ରହଣ ପରେ ଲକ୍ଷ୍ମଣ ମୁସ୍ତାଦାର ପଦରେ ଅବସ୍ଥାପିତ ହୋଇଥିଲେ ।

କୋରାପୁଟ ଜିଲ୍ଲାର ସରଳ, ନିରୀହ, ନିଷ୍କପଟ ଆଦିବାସୀମାନେ ଇଂରେଜ ଗୋରାମାନଙ୍କ ଅନ୍ୟାୟ ଓ ଅତ୍ୟାଚାରରେ ଜର୍ଜରିତ ହେଉଥିଲେ । ଜଙ୍ଗଲରକ୍ଷୀ ଆର୍.ଆଇ.ମାନେ ଆଦିବାସୀମାନଙ୍କର ପ୍ରଭୁ ବା ଅଧିକାରୀ ବୋଲାଇ ସେମାନଙ୍କୁ ଠକିବାରେ ନିପୁଣ ଥିଲେ । ଏହି ସବୁ କାର୍ଯ୍ୟ ଶହୀଦ ଲକ୍ଷ୍ମଣ ନାଏକଙ୍କୁ ବିଶେଷ ବିବ୍ରତ କରିଥିଲା । ସେ ଆଦିବାସୀମାନଙ୍କୁ ସଙ୍ଗଠିତ କରି ଅନ୍ଧବିଶ୍ୱାସ ଓ ଅନ୍ୟାୟ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ । ନିଜ ଦେଶୀୟ ଭାଷାରେ ହୃଦୟସ୍ପର୍ଶୀ ଭାଷଣ ଦେଇ ଦେଶପ୍ରେମ ଓ ସ୍ୱାଧୀନତା ବହ୍ନିକୁ ପ୍ରଜ୍ୱଳିତ କରିଥିଲେ । ଅଳ୍ପ ସମୟ ମଧ୍ୟରେ ଆନ୍ଦୋଳନ ବୈପାରୀଗୁଡ଼ାଠାରୁ ମାଲକାନଗିରି ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀ ଅସହଯୋଗ ଡ଼ାକରା ଦେଲେ । ସେତେବେଳେ ଲକ୍ଷ୍ମଣ ନାଏକଙ୍କ ଆହ୍ୱାନରେ କୋୟା ଓ ବଣ୍ଡାମାନେ ୧୮୫୭ ମସିହାର ସିପାହୀ ବିଦ୍ରୋହ ପରି ବଣ ଜଙ୍ଗଲରେ ଲୁଚି ଛପି ସଶସ୍ତ୍ର ଆକ୍ରମଣ କରିବା ଫଳରେ ବହୁ ଇଂରେଜଙ୍କର ମୃତ୍ୟୁ ଘଟିଲା । ସେ ସରକାରଙ୍କୁ ବିରୋଧ କରିଥିବାରୁ ତାଙ୍କୁ ରାଜଦ୍ରୋହୀ ବା ଫେରାରଦାର ଘୋଷଣା କରାଗଲା । ତାଙ୍କଠାରୁ ମୁସ୍ତାଦାର ଦାୟିତ୍ୱ କାଢ଼ି ନେଇ କେବଳ ୨୫ ଏକର ଜମି ଦେଇ ଅନ୍ୟ ସମସ୍ତ ଜମି ସରକାର ନେଇ ଯିବାରୁ ତାଙ୍କର ପାରିବାରିକ ଭରଣପୋଷଣରେ ଅସୁବିଧା ସୃଷ୍ଟି ହୋଇଥିଲା । ସେଥିରେ ସେ ଧୈର୍ଯ୍ୟଚ୍ୟୁତ ହୋଇନଥିଲେ ।

କଂଗ୍ରେସ ନେତା ସ୍ୱର୍ଗତ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପ୍ରେରଣାରେ ଲକ୍ଷ୍ମଣ ନାୟକ କଂଗ୍ରେସ ଅନୁଷ୍ଠାନର ସଭ୍ୟ ହୋଇ ପରିଧାନ କଲେ ଖଦଡ଼ ବସ୍ତ୍ର, ଗାଇଲେ ରାମଧୁନ୍ ଓ ପ୍ରଚାର କଲେ ନିଜ ଦେଶୀୟ ଭାଷାରେ 'କାଟି ପିନ୍ଧ ଓ କୁଟି ଖାଅ' । ସରକାରଙ୍କ କାର୍ଯ୍ୟରେ ଅସହଯୋଗ କରିବାକୁ ଆଦିବାସୀମାନଙ୍କୁ ପ୍ରବର୍ତ୍ତାଇଲେ । ତାଙ୍କରି ଅକ୍ଳାନ୍ତ ପରିଶ୍ରମରେ ଘଞ୍ଚ ଜଙ୍ଗଲରେ ଆରମ୍ଭ ହେଲା ନୈଶ୍ୟ ବିଦ୍ୟାଳୟ, ଗ୍ରାମ ସଫେଇ କାର୍ଯ୍ୟକ୍ରମ ଓ ଔଷଧ ବଣ୍ଟନ ।

୧୯୩୯ରେ ଲକ୍ଷ୍ମଣ ନାୟକ ମାଟିଲିଠାରେ ସତ୍ୟାଗ୍ରହ କରି ଜେଲ୍ ଗଲେ । ପୁଣି ଅଗଷ୍ଟ ୨୧ ତାରିଖରେ ତାଙ୍କ ନେତୃତ୍ୱରେ ଶହ ଶହ ଆଦିବାସୀ ମାଟିଲି ଥାନା ପଟେ ଶୋଭାଯାତ୍ରା କରି ବନ୍ଦେ ମାତରଂ ଓ ବ୍ରିଟିଶ୍ ସରକାର ଭାରତ ଛାଡ଼ି ଚାଲିଯାଅ ସ୍ଲୋଗାନ ଦେଇ ସତ୍ୟାଗ୍ରହ ଆରମ୍ଭ କଲେ ।

ଏହାକୁ ପଣ୍ଡ କରିବା ପାଇଁ ଏମ୍. ଉଗାନାଇଡୁଙ୍କୁ ପୋଲିସ୍ ବାହିନୀ ଗୁଳି ଚାଳନା କଲେ । ତଥାପି ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ବିନ୍ଦ୍ରୁନ ଲିଙ୍ଗ ଭୂମିଆ ଓ ସରଗିଗୁଡ଼ାର ନକୁଲ ମାଡ଼କାମୀ ରାୟ ନଡ଼ରି ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼େଇବାକୁ ଥାନା ଉପରକୁ ଚଢ଼ୁ ଚଢ଼ୁ ପୋଲିସ୍‌ର ଗୁଳିମାଡ଼ରେ ସେଠାରେ ସେମାନେ ଶହୀଦ ହେଲେ । ସତ୍ୟାଗ୍ରହୀମାନଙ୍କ ଉତ୍ତେଜନା ବଢ଼ିବାରୁ ଥାନାବାବୁଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣଙ୍କୁ ଥାନା ସାମନାକୁ ଟାଣି ନେଇ ଖୁବ୍ ମାଡ଼ ଦିଆଗଲା ।

ଅନ୍ୟ ଦୁଇଜଣ ପୋଲିସ୍ ମାଡ଼ିବସି ତାଙ୍କର ନିଶ ଉପାଡ଼ିବାକୁ ଲାଗିଲେ । ତଥାପି ଲକ୍ଷ୍ମଣ ବନ୍ଦେ ମାତରଂ ସ୍ୱର ଉତ୍ତୋଳନ କରିବାରୁ ଅନ୍ୟ ଜଣେ ପୋଲିସ୍ ବନ୍ଧୁକର ବାୟୋନେଟ୍‌ରେ ତାଙ୍କରି ମୁଣ୍ଡକୁ ଆଘାତ କରିବାରୁ ସେ ଅଚେତ ହୋଇଗଲେ । ଉତ୍ତେଜିତ ସଂଗ୍ରାମୀମାନଙ୍କୁ ଛତ୍ରଭଙ୍ଗ ପୋଲିସ୍‌ର ପ୍ରବଳ ଗୁଳି ଚାଳନାରେ ନିରସ୍ତ୍ର ସଂଗ୍ରାମୀମାନେ ଛତ୍ରଭଙ୍ଗ ହେଲେ । ଲୋକମାନଙ୍କୁ ମାନସିକ ବଳ ଦେବାକୁ ଲକ୍ଷ୍ମଣ ନିଜ ଅଞ୍ଚଳକୁ ଫେରିଲେ । ସେ କିଛି ଦିନ ପାଇଁ ଫେରାର ଥିଲେ । ୧୯୪୨ ମସିହା ସେପ୍ଟେମ୍ବର ମାସ ୨ ତାରିଖ ସକାଳ ୬ଟା ବେଳେ ଲକ୍ଷ୍ମଣ ଗ୍ରାମବାସୀଙ୍କ ଗହଣରେ ନିଜ ବାସଗୃହର ଅଗଣାରେ ବସି ବାପୁଜୀଙ୍କ ପ୍ରିୟ ଭଜନ ଗାନ କରୁଥିବା ବେଳେ କାହାଠାରୁ ଖବର ପାଇ ପୋଲିସ୍ ହଠାତ୍ ପହଞ୍ଚି ଲକ୍ଷ୍ମଣଙ୍କୁ ଓ ଅନ୍ୟ ୫୪ ଜଣଙ୍କୁ ହାତକଡ଼ି ପକାଇ କୋର୍ଟକୁ ଚାଲାଣ କରିଥିଲେ । କୋରାପୁଟ ଜେଲ୍‌ରେ ସେ ସହକର୍ମୀମାନଙ୍କ ସହ ଜେଲ୍ ଭୋଗିଲେ । ତତ୍କାଳୀନ ଡ଼େପୁଟି କଲେକ୍ଟର ସୋମନାଥ ମିଶ୍ରଙ୍କ କୋର୍ଟରେ ଲକ୍ଷ୍ମଣ ନାୟକ ଓ ତାଙ୍କର ୫୪ ଜଣ ସହକର୍ମୀଙ୍କ ନାମରେ ଦେଶଦ୍ରୋହ ଓ ନରହତ୍ୟା ମାମଲା ବିଚାର କରାଗଲା । ସରକାରଙ୍କ ତରଫରୁ ୩୩ ଜଣ ସାକ୍ଷୀ ଦେଇଥିଲେ । ମାତ୍ର ଲକ୍ଷ୍ମଣଙ୍କ ତରଫରୁ କେହି ସାକ୍ଷୀ ନଥିଲେ କି କୋର୍ଟରେ ତାଙ୍କ ପକ୍ଷଭୁକ୍ତ ହୋଇ ଲଢ଼ିବାକୁ ସେ କୌଣସି ଓକିଲ ନିଯୁକ୍ତ କରିନଥିଲେ । ଡ଼େପୁଟୀ କଲେକ୍ଟର ପ୍ରାଥମିକ ପ୍ରମାଣ ଦେଖି ଉପର କୋର୍ଟକୁ କେସ୍‌ଟି ପଠାଇ ଦେଲେ । ସେହି ବର୍ଷ ଅକ୍ଟୋବର ମାସରେ କୋରାପୁଟ ଅତିରିକ୍ତ ସେସନ୍‌ସ ଜଜ୍ ଶ୍ରୀ ଡ଼ି. ରାମନାଥଙ୍କ କୋର୍ଟରେ ୧୮ ନମ୍ବର କେସ୍‌ର ବିଚାର ହୋଇଥିଲା । ରାମନାଥଙ୍କ ... ମୁର୍ଖ ଆଦିବାସୀ ସେଣ୍ଟିଆ ଓ ସିଙ୍ଗିଗୁଡ଼ାର କେଶବ ପାତ୍ରଙ୍କ ମିଥ୍ୟା ସାକ୍ଷୀ ଯୋଗୁଁ ୧୯୪୨ ମସିହା ନଭେମ୍ବର ୧୩ ତାରିଖରେ ବିଚାରପତି ରାୟ ଶୁଣାଇଲେ ଯେ ଭାରତୀୟ ଦଣ୍ଡବିଧି ଆଇନ୍‌ର ୩୦୨ ଧାରା ଅନୁଯାୟୀ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯିବ ।

ଉପରୁ ଆଦେଶ ଆସିଲା ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖରେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦେବାକୁ । ଏ ଖବର ଶୁଣି ଜେଲରେ ଥିବା ସମସ୍ତ ନେତାଙ୍କ ମୁଖମଣ୍ଡଳ ମଳିନ ପଡ଼ିଗଲା, କିନ୍ତୁ ହସି ହସି ଲକ୍ଷ୍ମଣ କହୁଥାନ୍ତି-''ଦେଶ ପାଇଁ ମୃତ୍ୟୁ ବରଣ କରିବା ଭାଗ୍ୟବାନ୍ ଲୋକଙ୍କ ପକ୍ଷରେ ହିଁ ସମ୍ଭବ ।''

୧୯୪୩ ମସିହା ମାର୍ଚ୍ଚ ୨୮ ତାରିଖ ରାତି । ବ୍ରହ୍ମପୁର ଜେଲରେ ଖୁବ୍ ଶୁନ୍‌ଶାନ୍ ଓ ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଉପବାସ ବ୍ରତ ପାଳନ କରିଥିଲେ ଜେଲ ଭିତରେ । ସତେ ଯେମିତି ସମସ୍ତେ ମୁକ ପାଲଟି ଯାଇଥିଲେ । କେବଳ ଲକ୍ଷ୍ମଣଙ୍କ କାରାଗୃହରୁ ଶୁଣାଯାଉଥିଲା ବାପୁଜୀଙ୍କ ପ୍ରିୟ ଭଜନ ରାମଧୁନ୍ । ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ ଏହା ଲକ୍ଷ୍ୟକରି କାରାଗୃହ ନିକଟକୁ ଯାଇ ଧୀର ସ୍ୱରରେ ପଚାରିଲେ-''ଲକ୍ଷ୍ମଣ, ତମେ

ହଁଣ ଖବର ଦେବେ କି ?'' ସେତେବେଳେ ସଂଗ୍ରାମୀ ନାୟକଙ୍କ ଗୋଟିଏ ଉତ୍ତର-''ମୋର ଆଉ କିଛି କରିବାର ନାହିଁ । ଆମେ ଯେଉଁ ସ୍ୱାଧୀନତା ପାଇଁ ଉଦ୍‌ବେଳ କରୁଛୁ ସେ ସ୍ୱରାଜ୍ୟକୁ ଦେଖି ନପାରିବାରୁ ଦୁଃଖିତ ।''

ମାର୍ଚ୍ଚ ୨୯ ତାରିଖ ଭୋର ୫ଟାରେ ବ୍ରହ୍ମପୁର ଜେଲର ଫାଶୀ ଖୁଣ୍ଟ ଆଡ଼କୁ ଯାଉ ଯାଉ ଲକ୍ଷ୍ମଣ ତାଙ୍କ ଶେଷ ଉକ୍ତି କହିଥିଲେ-'' ଯେବେ ଆକାଶରେ ସୂର୍ଯ୍ୟ ଚନ୍ଦ୍ର ଅଛନ୍ତି, ଦେଖିବ ରହିଥା ସ୍ୱରାଜ୍ୟ ନିଶ୍ଚୟ ଆସିବ ।''

## ଶହୀଦ୍ ବିର୍ସାମୁଣ୍ଡା

ଓଡ଼ିଶାରେ ପାଇକ ବିଦ୍ରୋହର ପ୍ରାୟ ଆଠ ଦଶନ୍ଧି ପରେ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ବିରାଟ ଆନ୍ଦୋଳନ ମୁଣ୍ଡ ଟେକି ଥିଲା, ତାହାର ନେତୃତ୍ୱ ନେଇଥିଲେ ଏକ ଆଦିବାସୀ ଯୁବକ ବିର୍ସାମୁଣ୍ଡା । ବିର୍ସାଙ୍କ ଜନ୍ମ ୧୮୭୫ ମସିହା ନଭେମ୍ବର ୧୫ ତାରିଖ ଦିନ ସୁନ୍ଦରଗଡ଼ ଜିଲ୍ଲାର ଏକ ଆଦିବାସୀ ଗ୍ରାମ ଉଲିହାତୁରେ ଏକ ମୁଣ୍ଡା ପରିବାରରେ । ତାଙ୍କ ପିତାଙ୍କ ନାମ ସଗନା ମୁଣ୍ଡା ଏବଂ ମାତାଙ୍କ ନାମ କରମୀ ମୁଣ୍ଡା । ପିଲାଦିନରୁ ବିର୍ସା ଥିଲେ ସାହସୀ ଓ ସ୍ୱାଭିମାନୀ । ପିଲାବେଳେ ସେ ଶୁଣିଥିଲେ ଗୋରା ଶାସକମାନେ ଲୋକମାନଙ୍କୁ ସେବକ ପଟ୍ଟା ଲେଖାଇ ଗୋଡି ଓ ବେଠି ଖଟାଉଥିଲେ । ଧମକ ଚମକ ଦେଖାଇ ଜିନିଷ ଲୁଟ୍ କରି ନେଇ ଯାଉଥିଲେ ଏବଂ ସରଳ ବିଶ୍ୱାସୀ ମୁଣ୍ଡାମାନଙ୍କୁ ଜବରଦସ୍ତି ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଉଥିଲେ । ବିର୍ସା ଚାଇଁବସା ମିଶନ ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ଗୋରା ପ୍ରଧାନ ଶିକ୍ଷକ ବିର୍ସାଙ୍କ ସ୍ୱାଧୀନଚେତା ସ୍ପଷ୍ଟବାଦିତା ଗୁଣ ଏବଂ ହିନ୍ଦୁଧର୍ମକୁ ଭଲ ପାଉଥିବା ଯୋଗୁଁ ତାଙ୍କୁ ଚାବୁକ୍‌ରେ ପ୍ରହାର କରି ସ୍କୁଲରୁ ବାହାର କରି ଦେଇଥିଲେ । ସେ ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ପାଇଁ ମନସ୍ଥ କଲେ ଓ ନିକଟସ୍ଥ ଆଦିବାସୀ ଅଞ୍ଚଳକୁ ଯାଇ ଆଦିବାସୀମାନଙ୍କୁ ବ୍ରିଟିଶ୍ ଶାସନ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇଲେ । ସେବକ ପଟ୍ଟା ନ ଲେଖାଇବାକୁ, ଖଜଣା ନ ଦେବାକୁ ଏବଂ ରାଜଫଲ୍ ମୁନକୁ ଡରିଯାଇ ଖ୍ରୀଷ୍ଟଧର୍ମ ଗ୍ରହଣ ନ କରିବାକୁ ଆଦିବାସୀଙ୍କୁ ପରାମର୍ଶ ଦେଲେ । ତାଙ୍କର ଅଗ୍ନିବର୍ଷୀ ଭାଷଣରେ ମୁଗ୍ଧ ହୋଇ ଶହ ଶହ ଆଦିବାସୀ ଧନୁତୀର ଧରି ଗୋରାଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଆଗଭର ହୋଇଥିଲେ । ୧୮୯୫ ମସିହା ଅଗଷ୍ଟ ୧୬ ତାରିଖ ଦିନ ଗୋରା ପୋଲିସ୍ ଏସ୍.ପି. ମେୟରସ୍ ସଶସ୍ତ୍ର ପୁଲିସ ବାହିନୀ ଧରି ବିର୍ସାମୁଣ୍ଡା ଓ ତାଙ୍କର ୧୫ ଜଣ ସହକର୍ମୀଙ୍କୁ ଗିରଫ କଲେ । ବିଚାର ପରେ ସେମାନଙ୍କୁ ଦେଶଦ୍ରୋହ ଅପରାଧରେ ଦୁଇବର୍ଷ କାରାଦଣ୍ଡରେ ଦଣ୍ଡିତ କରାଯାଇ ରାଞ୍ଚି ଜେଲକୁ ପଠାଇ ଦିଆଗଲା । ମହାରାଣୀ ଭିକ୍ଟୋରିଆଙ୍କ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ୧୮୯୬ ମସିହାରେ ସବୁ ବନ୍ଦୀଙ୍କୁ ମୁକ୍ତ କରାଗଲା । ବିର୍ସା ଏବଂ ତାଙ୍କର ସହକର୍ମୀ ମଧ୍ୟ ଜେଲରୁ ମୁକ୍ତି ପାଇଲେ । ଜେଲରୁ ଫେରି ବିର୍ସା ଦେଖନ୍ତି ଯେ ବଣ ଜଙ୍ଗଲରେ ଆଦିବାସୀମାନେ ଅନାହାରରେ ପଡ଼ି ପୋକ ମାଛି ପରି ମରୁଛନ୍ତି । ଗୋରା ସରକାର ଦେଢ଼ି ଉପରେ କୋରଡ଼ା ପରି ସେମାନଙ୍କ ଉପରେ ଜବରଦସ୍ତି ଟିକସ ଲଦି ଦେଲେ । ବିର୍ସାମୁଣ୍ଡା ଏବଂ ତାଙ୍କର ମୁଖ୍ୟ ସହକର୍ମୀ ଗୟା ମୁଣ୍ଡା ଗାଁ ଗଣ୍ଡା ବୁଲି ଲୋକମାନଙ୍କୁ ସାହାଯ୍ୟ କରି ପୁଣି ଲୋକପ୍ରିୟତା ଅର୍ଜନ କଲେ । ଶହ ଶହ ଆଦିବାସୀ ଏମାନଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଗୋରା ଶାସନ ବିରୁଦ୍ଧରେ ଲଢ଼ିବାକୁ ପ୍ରସ୍ତୁତ ହୋଇଗଲେ । ୧୮୯୯ ମସିହା ଡିସେମ୍ବର ୯ ତାରିଖ ଦିନ ଶହ ଶହ ଅନୁଗାମୀ ଧନୁତୀର ଓ ବର୍ଚ୍ଛା ଧରି ଗୋରାମାନଙ୍କ ଉପରେ ଆକ୍ରମଣ କଲେ ।

ରାଞ୍ଚିର ମୁଖ୍ୟ ବିଚାରାଳୟ ଉପରେ ଆକ୍ରମଣ ସମୟରେ ଜଣେ ଗୋରା ପୋଲିସ ଓ ୧୨ ଜଣ କର୍ମଚାରୀ ମୃତ୍ୟୁ ବରଣ କଲେ । ଏହି ଘଟଣା ବ୍ରିଟିଶ୍ ସାମ୍ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିର୍ସାମୁଣ୍ଡାଙ୍କୁ ଧରିବା ପାଇଁ ପୋଲିସ ପାଞ୍ଚ ଶହ ଟଙ୍କା ପୁରସ୍କାର ଘୋଷଣା କରିଥିବେ । ଡେପୁଟୀ କମିଶନର ଷ୍ଟ୍ରାଟ୍ ଫିଲଡ଼୍ ସଶସ୍ତ୍ର ପୋଲିସ୍ ଫୋର୍ସ ଧରି ଆପ୍ରାଣ ଚେଷ୍ଟା କରି ଗୟା ମୁଣ୍ଡାଙ୍କୁ ଗିରଫ କରିଥିଲେ କିନ୍ତୁ ପୋଲିସର ନିର୍ମମ ପ୍ରହାରରେ ଗୟା ମୁଣ୍ଡାଙ୍କ ମୃତ୍ୟୁ ହେଲା । ଗୟା ମୁଣ୍ଡାଙ୍କର ମୃତ୍ୟୁ ଖବର ପାଇ ବିଦ୍ରୋହୀମାନେ ଦମନଲାଲାର ମୁଖ୍ୟ କେନ୍ଦ୍ର ଖୁଣ୍ଟି ଥାନା ଉପରେ ଆକ୍ରମଣ କଲେ । ଏଥିରେ ଗୋରା ସରକାର ବ୍ୟତିବ୍ୟସ୍ତ ହୋଇ ବିର୍ସାମୁଣ୍ଡାଙ୍କ ମୁଖ୍ୟ ସଂଗ୍ରାମର ସ୍ଥଳ ଡୋମ୍ବାରୀ ପାହାଡ଼ ଆକ୍ରମଣ କରିବାକୁ ସ୍ଥିର କଲେ । ୧୯୦୦ ମସିହା ଜାନୁଆରୀ ୯ ତାରିଖ ଦିନ ବିର୍ସାମୁଣ୍ଡାଙ୍କୁ ଆତ୍ମ ସମର୍ପଣ କରିବାକୁ କୁହାଗଲା । କିନ୍ତୁ ସେ ଏହାକୁ ପ୍ରତ୍ୟାଖ୍ୟାନ କଲେ । ଡେପୁଟୀ କମିଶନର ଷ୍ଟ୍ରାଟ ଫିଲ୍ଡଙ୍କ ନେତୃତ୍ୱରେ ବ୍ରିଟିଶ ସୈନ୍ୟ ଡୋମ୍ବାରୀ ପାହାଡ଼ ଆକ୍ରମଣ କଲେ । ଏଥିରେ ବିର୍ସାଙ୍କର ଜଣେ ପ୍ରଧାନ ସହକର୍ମୀ ନରସିଂହ ମୁଣ୍ଡାଙ୍କ ସମେତ ଦୁଇଶହ ଆଦିବାସୀ ନିହତ ହେଲେ । ବିର୍ସା ଅଳ୍ପକେ ରକ୍ଷା ପାଇ ଚକ୍ରଧରପୁର ଜଙ୍ଗଲକୁ ପଳାଇଲେ । ସରକାର ବିର୍ସାଙ୍କର କୌଣସି ସନ୍ଧାନ ନ ପାଇ ବିଭିନ୍ନ ଗ୍ରାମ ତଲ୍ଲାସ କରି ମୁଣ୍ଡାମାନଙ୍କୁ ନିର୍ଯ୍ୟାତନା ଦେଲେ । ଏଥିରେ ବ୍ୟଥିତ ହୋଇ ବିର୍ସାଙ୍କ ସହକର୍ମୀ ଡୋନକା ମୁଣ୍ଡା ଓ ମାଝିଆ ମୁଣ୍ଡା ସରକାରଙ୍କ ନିକଟରେ ଆତ୍ମସମର୍ପଣ କଲେ । ସଂଗ୍ରାମକୁ ନୂତନ ମୋଡ଼ ଦେବାକୁ ବିର୍ସା ସିଂହଭୂମ ଜିଲ୍ଲାକୁ ଚାଲିଗଲେ । ସେଠାରେ ସେନ୍ତ୍ରେରା ଗ୍ରାମ ନିକଟବର୍ତ୍ତୀ ଜଙ୍ଗଲରେ ଗୋପନରେ ରହୁଥିବା ସମୟରେ ଇଂରେଜ ସରକାରଙ୍କ ଦ୍ୱାରା ଘୋଷିତ ୫୦୦ ଟଙ୍କାର ଲୋଭ ସମ୍ବରଣ କରି ନ ପାରି ଦୁଇଜଣ ବିଶ୍ୱାସଘାତକ ଶଶୀଭୂଷଣ ରାଉ ଓ ମାଝିଆ ମାଝିଆ ୧୯୦୦ ମସିହା ମାର୍ଚ୍ଚ ୩ ତାରିଖରେ ଗୋରା ସରକାରଙ୍କ ହାତରେ ବିର୍ସାଙ୍କୁ ଧରାଇ ଦେଇଥିଲେ । ଗିରଫ ହୋଇ ବିର୍ସା ରାଞ୍ଚି ଜେଲରେ ରହିଲେ । ଗଣ୍ଡଗୋଳର ଆଶଙ୍କା କରି ରାତାରାତି ବିର୍ସାଙ୍କ ହାତ ଓ ଗୋଡ଼ରେ ବେଡ଼ି ଲଗାଇ କଡ଼ା ନିରାପତ୍ତା ମଧ୍ୟରେ ହଜାରିବାଗ ପଠାଇ ଦିଆଗଲା । ସେଠାରେ ତାଙ୍କର ଦେହ ଖରାପ ହେତୁ ପୁଣି ରାଞ୍ଚି ପଠାଇ ଦିଆଗଲା । ଜେଲରେ ବିର୍ସାଙ୍କୁ କଏଦୀ କରି ରଖି ଅକଥନୀୟ ନିର୍ଯ୍ୟାତନା ଦିଆଗଲା । ମିଥ୍ୟା ଅଭିଯୋଗ କରି ବିର୍ସା ମୁଣ୍ଡାଙ୍କ ବିଚାର ଚାଲିଲା । ଶହ ଶହ ମୁଣ୍ଡା ସାକ୍ଷୀ ଦେବାପାଇଁ କୋର୍ଟ ବାହାରେ ଥିଲେ ମଧ୍ୟ ସେମାନଙ୍କୁ ସୁଯୋଗ ଦିଆଗଲା ନାହିଁ । ଶେଷରେ ଜେଲରେ ବିର୍ସାଙ୍କୁ ଖାଦ୍ୟରେ ବିଷ ଦିଆଗଲା ଏବଂ ୧୯୦୦ ମସିହା ଜୁନ୍ ୯ ତାରିଖ ଦିନ ରାଞ୍ଚି ଜେଲରେ ମାତ୍ର ୨୫ ବର୍ଷ ବୟସରେ ବିର୍ସା ମୁଣ୍ଡା ପ୍ରାଣତ୍ୟାଗ କଲେ । ବିର୍ସାଙ୍କ ମୃତ୍ୟୁ ପରେ ତାଙ୍କର ବହୁ ସହକର୍ମୀଙ୍କୁ ଦ୍ୱୀପାନ୍ତର ଓ ଫାଶି ଦଣ୍ଡରେ ଦଣ୍ଡିତ କରାଗଲା । ଏ ଜାତିର ଉତ୍ତର ପୁରୁଷଙ୍କ ପାଇଁ ସେ ଯେଉଁ ତ୍ୟାଗ, ନିଷ୍ଠା ଓ ସାଧନାର ପରାକାଷ୍ଠା ଦେଖାଇ ଯାଇଛନ୍ତି, ତାହା ଚିରଦିନ ଅମ୍ଳାନ ଓ ଭାସ୍ୱର ହୋଇ ରହିଥିବ ।

# ଋତୁରାଜ ଜବାହରଲାଲ

ଶ୍ରୀ ସଚ୍ଚିଦାନନ୍ଦ ଭାଗରେଥ

ବିଶ୍ୱକବି ରବୀନ୍ଦ୍ରନାଥ ଜବାହରଲାଲଙ୍କୁ ଭାରତର ଋତୁରାଜ ବୋଲି ନାମିତ କରିଥିଲେ । ବାସ୍ତବିକ୍ ଭାରତର ଉଚ୍ଛଳ ଯୌବନର ବିଶ୍ୱସ୍ତ ପ୍ରତିନିଧି ହେବା ଦିଗରେ ଜବାହରଲାଲଙ୍କ ଠାରୁ ବଳି ଅଧିକତର ଯୋଗ୍ୟ ବ୍ୟକ୍ତି ଅନ୍ୟ କେହି ନଥିଲେ । ସେ ଥିଲେ ଭାରତର ପ୍ରାଣଶକ୍ତିର ସମସ୍ତ ସ୍ପନ୍ଦନ, ସମସ୍ତ ଆଲୋଡ଼ନର ଏକାଧାରରେ ଉତ୍ସ ଓ ଆଧାର । ସେ ଥିଲେ "ଋତୁଣାଂ କୁସୁମାକରଃ" ।

ତାଙ୍କର ଅନ୍ତରର ନିଭୃତତମ ପ୍ରଦେଶରେ ରାଜତ୍ୱ କରୁଥିଲା ଏକ ଦିଗ୍‌ଦର୍ଶୀ ମାର୍ମିକ କବି । ହୁଏତ ଅବସ୍ଥାଚକ୍ରରେ ପଡ଼ି ସେ ହେଲେ ମୁଖ୍ୟତଃ ଜଣେ ରାଜନୀତିଜ୍ଞ । ଜଣେ ଉତ୍କୃଷ୍ଟ କାବ୍ୟକାର ରୂପେ ନିଜକୁ ପ୍ରତିଷ୍ଠିତ କରି ଯିବାର ଅବକାଶ ତାଙ୍କର ହୁଏତ ନ ଥିଲା । କିନ୍ତୁ ତାଙ୍କ ଲେଖାବଳୀର ପ୍ରତ୍ୟେକ ଧାଡ଼ିରେ ରହିଚି ଏଇ କବିର ଗଭୀର ମାର୍ମିକତା, ରସୋତୀର୍ଣ୍ଣ ଭାଷାର ଦ୍ୟୋତନା, ଅପରୂପ ପ୍ରକାଶମୁଦ୍ରା ଏବଂ ସୁଷମା ମାଙ୍ଗଲ୍ୟ ଏବଂ ସର୍ବୋପରି ଏହି ବିରାଟ ସୃଷ୍ଟି ସଙ୍ଗେ ଏକ ଅଖଣ୍ଡ ଏକାତ୍ମବୋଧ । ତାଙ୍କର ରସଘନ ବାଙ୍ମୟ ମୂର୍ତ୍ତିର ପ୍ରତ୍ୟେକଟି ଉଚ୍ଚାରଣ ତାଙ୍କର କବିମାନସର ଗଭୀରତମ ପରିପ୍ରକାଶ ।

ହିମାଦ୍ରିର ରହସ୍ୟମୟ ତୁଷାରମୂର୍ତ୍ତି ତାଙ୍କୁ ଅଭିଭୂତ କରିଛି, ଗଙ୍ଗାର କଳ କଳ ଉଦାର ଗୀତ ତାଙ୍କ ପ୍ରାଣରେ ଭରିଦେଇଛି ସୃଷ୍ଟିର ସ୍ୱପ୍ନ, ଭାରତର ଅତୀତ ପରମ୍ପରା ତାଙ୍କ ମନରେ ଜାଗ୍ରତ କରାଇଛି ହଜାର ହଜାର ବର୍ଷର ବଂଶୀୟ ସ୍ମୃତି । ତାଙ୍କ ଚିନ୍ତାଧାରା ଗଠନ କରିବାରେ ସାହାଯ୍ୟ କରିଛନ୍ତି ଏହି ଦେଶର ପୁରାଣ, ଇତିହାସ, ଗାଥା, ଉପକଥା, ଲୋକସ୍ମୃତି, ଶିଳ୍ପ, ସାହିତ୍ୟ, ଭାସ୍କର୍ଯ୍ୟର କେତେ କେତେ ଆଭିମୁଖ୍ୟ । ତାଙ୍କର ସ୍ତରୁରପ୍ରସାରୀ ଚୈତନ୍ୟକୁ ଉଦ୍‌ଘାଟନ କଲେ ଆମେ ଦେଖିପାରିବା କେବଳ ସମସାମୟିକ ଅନୁଭୂତିର (Sensibilities) କେତେଗୁଡ଼ିଏ ଥାକମରା ଚେହେରା ନୁହେଁ, ଏହି ବିରାଟ ଉପମହାଦେଶର ସମସ୍ତ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଏକ ନିର୍ଭୁଲ ମାନଚିତ୍ର-ଯାହା ଖୁବ୍ କମ୍ ସମକାଳୀନଙ୍କ ସ୍ୱାକ୍ଷରରେ ପ୍ରତିଭାତ ହୋଇଥାଏ ।

ସେ ଖାଲି ଏ ଦେଶକୁ , ଏ ଦେଶର ମାଟିକୁ ଏବଂ ତାଙ୍କର କୋଟି କୋଟି ଦେଶବାସୀଙ୍କୁ ଭଲ ପାଉ ନଥିଲେ । ସେ ସେମାନଙ୍କ ସଙ୍ଗେ ମିଶି ଏକାକାର ହୋଇଯିବା ପାଇଁ ଜୀବନର ପ୍ରତିଟି ମୁହୂର୍ତ୍ତରେ ତପସ୍ୟା କରୁଥିଲେ । ସେ ଚାହୁଁ ଥିଲେ ଏ ଦେଶର ମାଟି, ପଥର, ନଦୀ, ପର୍ବତ, ସମତଳଭୂମି, ଶସ୍ୟକ୍ଷେତ୍ରରେ ମିଶି ଲୀନ ହୋଇଯିବେ । ତାଙ୍କର ପଞ୍ଚଭୂତ ଏକ ପବିତ୍ର ଦେଶର ଜଳ, ସ୍ଥଳ, ଆକାଶ, ବାୟୁ ଓ ତେଜରେ ଲିଭି ଏକାକୃତ ହୋଇଯିବ । ଏହା ହିଁ ଥିଲା ତାଙ୍କର ସମସ୍ତ ସାଧନାର ଆଭିମୁଖ୍ୟ, ଏହା ହିଁ ଥିଲା ତାଙ୍କର ଧ୍ୟେୟ ଏବଂ ଏହା ହିଁ ଥିଲା ତାଙ୍କ ଶେଷ ଦଲିଲ ବା ଉଇଲ ।

'ମିଶୁ ମୋର ଦେହ ଏ ଦେଶମାଟିରେ' ଏଇ ସାଧନାର ମର୍ମ । ଏଇ ଦୁରୂହ ସାଧନାରେ ସିଦ୍ଧି ଲାଭ କରିବାକୁ ହେଲେ ଜୀବନର ପ୍ରତି ମୁହୂର୍ତ୍ତରେ ସେଥିପାଇଁ ସଂଗ୍ରାମ ଓ ସାଧନା କରିବାକୁ ପଡ଼ିଥାଏ । ନିଜର ସମସ୍ତ ମୁଁତ୍ୱ' ବିସର୍ଜନ କରି ଦେଶମାତୃକା ସଙ୍ଗରେ ଏକ ଅଖଣ୍ଡ ଏକାତ୍ମବୋଧରେ, ଏକ ଅଦ୍ୱୈତ ଚିନ୍ତାରେ ନିଜକୁ ହଜାଇ ଦେବାକୁ ପଡ଼ିଥାଏ ।

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।"

ଏହା କଳ୍ପନା କରିଥିଲେ ସ୍ୱର୍ଗତ ଗୋପବନ୍ଧୁ ଦାସ, କିନ୍ତୁ ଏହାକୁ କାର୍ଯ୍ୟରେ ପରିଣତ କଲେ ତାଙ୍କର ଉତ୍ତରସୂରୀ ଜବାହରଲାଲ ନେହେରୁ ।

ଜବାହରଲାଲଙ୍କ ଚିତାଭସ୍ମ ତାଙ୍କର ଇଚ୍ଛା ଓ ନିର୍ଦ୍ଦେଶକ୍ରମେ ସ୍ଥଳପଥରେ ଓ ଆକାଶପଥରେ, ଭାରତବର୍ଷର ପ୍ରତି ରାଜ୍ୟର ପର୍ବତ, ହ୍ରଦ, ନଦନଦୀ ତଥା ଶସ୍ୟକ୍ଷେତ୍ରମାନଙ୍କରେ ବୁଣି ଦିଆଯାଇଛି । ସେ ଏ ଦେଶର ଜଳସ୍ଥଳ ଆକାଶରେ ସଂପୂର୍ଣ୍ଣ ରୂପେ ମିଶି ଯାଇଛନ୍ତି । ଏହା ହିଁ ଥିଲା ଜବାହରଲାଲଙ୍କର ଉଇଲର ଆବେଦନନାମା । ଏହାଦ୍ୱାରା ହିଁ ତାଙ୍କର ସ୍ୱର୍ଗତ ଆତ୍ମା ତୃପ୍ତ ହୋଇଛି ।

ସେ ନିଜ ଉଇଲରେ ଲେଖି ଯାଇଛନ୍ତି-

"ମୁଁ ସମସ୍ତଙ୍କଠାରୁ ବିଦାୟ ନେବା ପରେ ମୋ ଶବକୁ ଦାହ କରାଯାଉ, ଏହା ମୋର ଇଚ୍ଛା । ଭାରତୀୟ ସଭ୍ୟତା ଓ ସଂସ୍କୃତିର ପ୍ରତୀକ ଗଙ୍ଗାନଦୀରେ ମୋର ଚିତାଭସ୍ମର କିୟଦଂଶ ବିସର୍ଜନ କରାଯିବ ବୋଲି ମୋର ଏକାନ୍ତ ଅଭିଳାଷ । ଏଲାହାବାଦଠାରେ ଗଙ୍ଗାନଦୀରେ ମୋର ଚିତାଭସ୍ମ ନିକ୍ଷେପ କରିବା ପଛରେ କୌଣସି ଧର୍ମୀୟ କାରଣ ନାହିଁ । ମୋର ଗଙ୍ଗା-ଯମୁନା ଏ ଦୁଇ ନଦୀ ପ୍ରତି ଶୈଶବରୁ ଅନୁରାଗ ଓ ନିବିଡ଼ ସମ୍ପର୍କ ରହି ଆସିଛି । ମୋର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏ ଦୁଇ ନଦୀ ପ୍ରତି ମୋର ଆସକ୍ତି ଆହୁରି ବୃଦ୍ଧି ପାଇଛି ।

ଋତୁର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେମାନଙ୍କର ରୂପାନ୍ତର ମୁଁ ଲକ୍ଷ୍ୟ କରି ଆସିଛି । ସେମାନଙ୍କର ଭାବାବେଗ ମଧ ସେଥି ସଙ୍ଗେ ସଙ୍ଗେ ପରିବର୍ତ୍ତିତ ହେଉଥିବାର ମୁଁ ଲକ୍ଷ୍ୟ କରିଛି । ଏଇ ଦୁଇ ନଦୀ ସମ୍ପର୍କରେ ଯେଉଁ ସବୁ ଇତିବୃତ୍ତ, ଉପକଥା, ପରମ୍ପରା, ଗାତି ଓ ଗାଥା ପ୍ରଚଳିତ ସେମାନଙ୍କ ପ୍ରବାହମାନ ଜଳସ୍ରୋତ ସହ ଏକୀଭୂତ ହୋଇଯାଇଛି, ବିଶେଷତଃ ସେହିସବୁ କଥା ମୁଁ ବାରମ୍ବାର ସ୍ମରଣ କରିଛି ।

ଭାରତବାସୀଙ୍କର ଅତି ପ୍ରିୟ ନଦୀ । ଭାରତର ବହୁ ଜାତୀୟ ସ୍ମୃତି, ଆଶା ଓ ଆଶଙ୍କା, ବିଜୟଗୀତିକା ଓ ଉତ୍ଥାନପତନ ଗଙ୍ଗା ସହ ଜଡ଼ିତ । ଭାରତର ଯୁଗ ଯୁଗ ବ୍ୟାପୀ ସଂସ୍କୃତି ଓ ସଭ୍ୟତାର ଏହା ପ୍ରତୀକ ।

ଏହା ନିତ୍ୟ ପ୍ରବହମାନା ଓ ନିତ୍ୟ ପରିବର୍ତ୍ତନଶୀଳା ହେଲେ ମଧ ସେପରି ରହିଛି । ଏଇ ଗଙ୍ଗା ନଦୀ ଉପରେ ଦୃଷ୍ଟି ପକାଇଲେ ମୋର ମାନସପଟରେ ଭାସିଯାଏ ନଗାଧିରାଜ ହିମାଳୟର ତୁଷାରଶୁଭ୍ର ଶୃଙ୍ଗରାଜି ଓ ଗଭୀର ଉପତ୍ୟକାଶ୍ରେଣୀ ଏବଂ ତାହାର ପାଦଦେଶରେ ଥିବା ଦିଗନ୍ତପ୍ରସାରୀ ସମତଳ ଅଞ୍ଚଳ । ପ୍ରଭାତର ଅରୁଣାଲୋକରେ ହାସ୍ୟମୟୀ, ଲାସ୍ୟମୟୀ ଏବଂ ପ୍ରଦୋଷର ଅନ୍ଧାରରେ ବିଷଣ୍ଣବଦନା ଓ ରହସ୍ୟମୟୀ, ଶୀତଋତୁରେ କ୍ଷୀଣକାୟା, ମନ୍ଥରଗମନା ଓ ଲାବଣ୍ୟମୟୀ, ବର୍ଷାଋତୁରେ ଗୁରୁଗର୍ଜନଶୀଳା, ସାଗର ଭଳି ପ୍ରଶସ୍ତବକ୍ଷା ଏବଂ କେତେକାଂଶରେ ପ୍ରଳୟ ମୂର୍ତ୍ତିଧାରିଣୀ ଗଙ୍ଗା ମୋ ନିକଟରେ ଚିରନ୍ତନ ଐତିହ୍ୟର ପ୍ରତୀକ ସ୍ୱରୂପ । ଗଙ୍ଗା ଯେପରି ବିଭିନ୍ନ ରୂପ ଧାରଣ କରି ସାଗରରେ ପଡ଼ିଛି, ସେହିପରି ଚିରନ୍ତନ ଭାରତର ସଂସ୍କୃତିର ଧାରା ଅତୀତରୁ ଭବିଷ୍ୟତ ଆଡ଼କୁ ବହି ଚାଲିଛି ।

ଅତୀତ, ପରମ୍ପରା ଓ ରୀତିନୀତି ମଧ୍ୟରୁ ମୁଁ ଅନେକ କିଛି ପରିତ୍ୟାଗ କରିଥିଲେ ମଧ ଅତୀତକୁ ପୁରାପୁରି ଛାଡ଼ି ପାରିନାହିଁ । ଇତିହାସର ଅରୁଣୋଦୟ କାଳରୁ ବହି ଆସିଥିବା ସେଇ ଅବିଚ୍ଛିନ୍ନ ଧାରା ସହିତ ମୁଁ ମଧ ଜଡ଼ିତ ହୋଇ ପଡ଼ିଛି ।

ଗଙ୍ଗାରେ ମୋର ଯେଉଁ ଚିତାଭସ୍ମ ପଡ଼ିବ, ତାହା ଭାରତର ଉପକୂଳକୁ ଧୌତ କରୁଥିବା ସାଗର ବକ୍ଷକୁ ଭାସିଯିବ ।"

ଏହାପରେ ଜବାହରଲାଲ ନିଜ ଉଇଲରେ ଲେଖୁଛନ୍ତି :-

"ମୋର ଚିତାଭସ୍ମର ଅଧିକାଂଶକୁ ଅନ୍ୟ ଭାବରେ ବିସର୍ଜନ କରାଯିବା ଦରକାର । ଯେଉଁ ଶସ୍ୟକ୍ଷେତ୍ରରେ ଭାରତୀୟ କୃଷକମାନେ ଲହୁଲୁହ ଢାଳୁଥିବେ, ସେଠାରେ ସେଗୁଡ଼ିକୁ ବିମାନ ଜରିଆରେ ବିଛି ଦିଆଯିବ । ଏହା ଫଳରେ ମୋର ଦେହାବଶେଷ ଭାରତର ମାଟିରେ ମିଶି ଏକାକାର ହୋଇଯିବ ।"

ଏ ଉଇଲଟି କଦାପି ଜଣେ ରାଜନୀତିକର ହୋଇ ନପାରେ । ଏହି ଉଇଲ ଜଣେ କବିର ।

ଏଇପରି ଭାବରେ କବି ଗୋପବନ୍ଧୁଙ୍କର ମର୍ମବାଣୀ "ମିଶୁ ମୋର ଦେହ ଏ ଦେଶ ମାଟିରେ" କାର୍ଯ୍ୟରେ ପରିଣତ ହୋଇଛି କବି ଜବାହରଲାଲଙ୍କ ଜୀବନରେ । ଉଭୟେ କବି ଉଭୟେ ବିଦଗ୍ଧ ଚୈତନ୍ୟର ଦିବ୍ୟ ଦୀପାଧାର ।

ସେଇ କବି ଜବାହରଲାଲଙ୍କର ବିଦଗ୍ଧ ମାନସ-ପ୍ରକୃତିର ଅସରନ୍ତି ରସ-ଉତ୍ସରୁ ନାନା ଭାବରେ ପ୍ରେରଣା ସଂଗ୍ରହ କରିଛି । ନନ୍ଦାଦେବୀର ଗମ୍ଭୀର କମନୀୟତା ତାଙ୍କୁ ମୁଗ୍ଧ ଚକିତ କରିଛି । ପ୍ରକୃତିର ନିରୀହ ସନ୍ତାନଧୟ ପରି ସେ ଆନନ୍ଦରେ ନାଚି ଉଠିଛନ୍ତି, କେତେବେଳେ ପୁଣି ବିଷାଦରେ, ଗଭୀର ଚିନ୍ତାରେ ବୁଡ଼ି ଯାଉଛନ୍ତି ।

" Day succeeded day and I drank deep of the mountain air and took my fill of the sight of the snows and the valleys. How beautiful and full of peace they were and the world's ills seemed far away and unreal. Towards the West and the South-east deep valleys two or three thousand feet below us, curved away in the distance. Towards the north toward Nanda Devi and her white-clad companions. Fierce Precipices, almost straight cut, sometimes led to the depths below but more often the curves of the hill-sides were soft and rounded like a woman's breast. Or they would be cut in terraces where green fields witnessed to the industry of man.

In the early morning I lay bare-bodied in the noon and the gentle-eyed sun of the mountains took me into his warm embrace. The cold wind from the snows made me shiver a little, but the sun would come to my rescue and fill with warmth and well-being.".

କେତେବେଳେ ସମାରୋହର ସଙ୍ଗୀତରେ, ପତ୍ରର ମର୍ମରରେ, ଏ ସଂସାର, ଏ ବାସ୍ତବତାର ଅନିତ୍ୟତା ତାଙ୍କର ଦ୍ୱିଧାଗ୍ରସ୍ତ ଆତ୍ମସଚେତନ ମନକୁ ସନ୍ଦେହାକୁଳ କରିଛି । ସେ ଖୋଜିଛନ୍ତି ଏକ ସୁଦୂର ସତ୍ୟକୁ । କେଉଁଠି ତାହା ? ତାଙ୍କ କଣ୍ଠରେ ଅନ୍ୱେଷଣର ସ୍ୱର : ପାର୍ବତ୍ୟ ଅଞ୍ଚଳର ନଗ୍ନ ସୌନ୍ଦର୍ଯ୍ୟ ତାଙ୍କ ମତରେ ଶାନ୍ତିର ଓ ଆଶ୍ୱାସନାର ପ୍ରଲେପ ବୋଲି ଦେଇଛି କିଛି ସମୟ ପାଇଁ ।

"Sometimes I would lie under the pine trees and Listen to the voice of the wandering wind, whispering many strange things into my ears, and lulling my senses, and cooling the fever in my brain, Finding me unguarded and open to attack, it would cunningly point out the folly or man's ways in the world below, their unceasing strife, their passions and hatred, their bigotry in the name of religion, the corruption of their politics, the degradation of their ideals. Was it worth while going back to them and wasting one's life's effort in dealing with them ?

It was early spring still in the mountain though down below summer was already peeping in. On the hill-sides the rhododendrun flowers made bright red patches which could not be seen from afar. The fruit trees were full of bloom and millions of tiny leaves were on the point of coming out to cover with their fresh, tender, green beauty the nakedness of many of the trees."

ଏଇ ହେଉଛନ୍ତି ଜବାହରଲାଲ । ମାଟିର ସାଧକ , ସତ୍ୟର ଉପାସକ, ଶାନ୍ତିର ପ୍ରତୀକ ଏବଂ ସର୍ବୋପରି ଚିର ସୌନ୍ଦର୍ଯ୍ୟର ସନ୍ତାନଧୟ ଶିଶୁ ଭାରତର ଋତୁରାଜ ରସରାଜ ଜବାହରଲାଲ !

• • •

# ଡଃ ମହତାବ ଜନ୍ମ ଶତବାର୍ଷିକୀ ଉପଲକ୍ଷେ



**ମହାଜୀବନର ଜୟଯାତ୍ରା**

- ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତି :୧୯୩୦ ଓ ୧୯୩୬
- ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟି ସଦସ୍ୟ :୧୯୩୮
- ମୁଖ୍ୟମନ୍ତ୍ରୀ : ୧୯୪୬ ଏପ୍ରିଲ ୨୩ ତାରିଖରୁ ୧୯୫୦ ମଇ ୧୧
  – ୧୯୫୬ ଅକ୍ଟୋବର ୧୯ରୁ ୧୯୬୧ ଫେବ୍ରୁଆରୀ ୨୪

**ଉଲ୍ଲେଖନୀୟ ଅବଦାନ**

ଗଡ଼ଜାତ ମିଶ୍ରଣ- ନୂତନ ରାଜଧାନୀ- ହୀରାକୁଦ ବନ୍ଧ- ବାରବାଟୀ ଷ୍ଟାଡିୟମ- କଟକ ଆକାଶବାଣୀ କେନ୍ଦ୍ର- ଉତ୍କଳ ବିଶ୍ୱବିଦ୍ୟାଳୟ- ଓଡ଼ିଶା ହାଇକୋର୍ଟ- ରାଜ୍ୟ ସଂଗ୍ରହାଳୟ- ସଚିବାଳୟ- ରାଜଭବନ- ବିଧାନସଭା ସୌଧ- ରବୀନ୍ଦ୍ର ମଣ୍ଡପ- ଜନତା ମଣ୍ଡପ- ନନ୍ଦନ କାନନ- ରାଉରକେଲା ଇସ୍ପାତ କାରଖାନା- ପାରାଦ୍ୱୀପ ବନ୍ଦର- ଚୌଦ୍ୱାର ଲୁଗାକଳ ପରିକଳ୍ପନା- ଓଡ଼ିଶା ସାହିତ୍ୟ ଏକାଡେମୀ- ସଂଗୀତ ନାଟକ ଏକାଡେମୀ- ଲଳିତ କଳା ଏକାଡେମୀ- କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର-ହୀରାକୁଦ ଆଲୁମିନିୟମ କାରଖାନା- ରାଷ୍ଟ୍ରଭାଷା ପ୍ରଚାର ସଭା ଭବନ ।

- କେନ୍ଦ୍ରମନ୍ତ୍ରୀ : ୧୯୫୦ ମଇ ୧୩ ରୁ ୧୯୫୨ ମଇ ୧୫
- କଂଗ୍ରେସ ପାର୍ଲାମେଣ୍ଟାରୀ ଦଳ ସେକ୍ରେଟାରୀ : ୧୯୫୧ ରୁ ୧୯୫୪
- ଅବିଭକ୍ତ ବମ୍ବେ ରାଜ୍ୟପାଳ :୧୯୫୫ ମାର୍ଚ୍ଚ ୨ରୁ ୧୯୫୬ ଅକ୍ଟୋବର ୧
- କଂଗ୍ରେସ ପାର୍ଲାମେଣ୍ଟାରୀ ଦଳ ଉପଦଳପତି : ୧୯୬୨ ରୁ ୧୯୬୬

# ମହତାବ୍-ନକ୍ଷତ୍ରମାଳା

● ଶ୍ରୀ ଗୌରୀ କୁମାର ବ୍ରହ୍ମା

୧

ସଦା ପ୍ରଶାନ୍ତୋ ମହତାଂ ବରେଣ୍ୟଃ
ତ୍ୱଂ କର୍ମଯୋଗୀ ମହତାବ ! ଧନ୍ୟଃ !
ଖ୍ୟାତୋ ଭବାନୁତ୍କଳ-କେଶରୀତି
କଦାପି କସ୍ମାଦପି ତେ ନ ଭୀତିଃ ।।

୨

ଧର୍ମାତ୍ମନୋ ଭାରତ-ଗୌରବସ୍ୟ
ଶିଷ୍ୟାଗ୍ରଗଣ୍ୟସ୍ୟ ଚ ନାନକସ୍ୟ
ବଂଶେ ପବିତ୍ରେ ତବ ଜନ୍ମ ବାଢ଼ଂ
ଦୃଢ଼ବ୍ରତଂ ଦେଶ କୃତେ ପ୍ରଗାଢ଼ମ ।।

୩

ତ୍ୱମେବ ପୂର୍ବାର୍ଜିତ ପୁଣ୍ୟରାଶେ
ର୍ନୀତିଃ ପରିଶୋଃ ଖିଲ ଭାରତେ ଽସ୍ମିନ୍
ପ୍ରିୟଂପିତେ ଭାଗବତୀ ସୁକନ୍ୟା
ତ୍ୱଂ ଧର୍ମ-ଜାଲେଷୁ ଚ ସଂସ୍ଥିତୋଽସି ।।

୪

ଅତ୍ରୋତ୍କଳେ ତେ ହ୍ୟତୁଳଂ ହି ମାନଂ
ତ୍ୱମେବ ଯୋଗ୍ୟଂ ତବ ତୋଷମାନମ୍
ଯଥାଽନ୍ତରୀକ୍ଷଂ ଗଗନସ୍ୟ କିଂ ବା
ମହାସମୁଦ୍ରସ୍ୟ ମହୋଦଧିର୍ବା ।।

୫

ତ୍ୱଂ କେନ୍ଦ୍ରମନ୍ତ୍ରୀ କିଲ ରାଜ୍ୟପାଲୋ
ରମ୍ୟେ ପ୍ରଦେଶେ, ନିଜ-ରାଜ୍ୟ ମଧ୍ୟେ ।
ବାରଦ୍ୱୟଂ ଶଂସିତ-ମୁଖ୍ୟ-ମନ୍ତ୍ରୀ
ତତଃ ପ୍ରତୀତଂ ବିପୁଳଂ ଯଶସ୍ତେ ।।

୬

ବୈଦେଶିକାନାଂ ପଦଲାଞ୍ଛିତସ୍ୟ
ସ୍ୱତନ୍ତ୍ର-ଦେଶସ୍ୟ ଚ ଭାରତସ୍ୟ
ବିମୁକ୍ତୟେ ତ୍ୱଂ ସମରେ ପ୍ରବିଷ୍ଟଃ
ସଂଗ୍ରାମିରୂପେଣ ହି ସୁପ୍ରତିଷ୍ଠଃ ।।

୭

ତ୍ୱଂ ରାଜନୀତି-ବ୍ରତତୀ-ପ୍ରଫୁଲ୍ଲ
ପ୍ରସୂନ-ପୁଞ୍ଜେ ଭ୍ରମରଃ ପ୍ରମତ୍ତଃ ।
ସାହିତ୍ୟ କୁଞ୍ଜେ କଳ-କୋକିଳଶ୍ଚ
ସ୍ମରନ୍ତି ନିତ୍ୟଂ କବୟୋ ଗୁଣଂ ତେ ।।

୮

ସଙ୍ଗୀତ ଚିତ୍ରାଦି-କଳା-ପ୍ରସକ୍ତଃ
ତ୍ୱଂ ବୈ କଳାକାର-ଗୁଣାନୁରକ୍ତଃ ।
ଉତ୍ସାହଦାତା କବି-ପଣ୍ଡିତାନାଂ
ଗବେଷକାଣାମିତିହ-ପ୍ରିୟାଣାମ୍ ।।

୯

ସାହିତ୍ୟ-ସୃଷ୍ଟିପ୍ରବ ଚିତ୍ରଶାଳା
ତଥୈତିହାସାଦିକୃତି-ର୍ବିଶାଳା
ଆନ୍ଦୋଳନଂ ତେ 'ବିଷୁବ' ବରିଷ୍ଠ
ତଦ୍‌ବୈବୁଧାନାଂ ମିଳନଂ ଗରିଷ୍ଠମ୍ ।।

୧୦

ତ୍ୱଂ ବୈକବିଶ୍ଚ ଚ ନିବନ୍ଧକାରଃ
କଥାଽଭିକାରୋଽପି ଚ ନାଟ୍ୟକାରଃ ।
ତଦେତିହାସଶ୍ଚ କଳିଙ୍ଗ ଜାନାଂ
ଲବ୍ଧାଦରୋ ବୈ ବୁଧ-ଦିଗ୍‌ଗଜାନାମ୍ ।।

୧୧

ପତ୍ରଂ 'ପ୍ରଜାତନ୍ତ୍ର'-ମତୀବ ସାର୍ଥଂ
ପ୍ରକାଶିତଂ ଦେଶ-ନିମେବଣାର୍ଥଂ,
'ଝଙ୍କାର'-ପତ୍ରଂ ତବ ମାନସଂ ତୁ
ପୁତ୍ରଂ ଚିରଂ ତତ୍ର ବୁଧା ବିଶନ୍ତୁ ।।

୧୨

ଏକାତ୍ମମାନାଂ ପ୍ରଥମୋ ହି କର୍ତ୍ତା
ବାଲ୍ୟେ ହି ତେଷାଂ ବହୁରୋଗହର୍ତ୍ତା,
ମୃତ୍ୟୁଞ୍ଜୟସ୍ୟାଽପି ଚ ଭୂତିଦାତା
କ୍ରୀଡ଼ାସ୍ଥଳାନାଂ ତ୍ୱମିହୈବ ଧାତା ।

୧୩

ସଭାପତିସ୍ତ୍ୱଂ ଶତଶଃ ସଭାସୁ
ପ୍ରଶଂସିତୋ ବାର୍ ବିଭବାଚ୍ଚ ତାସୁ,
ରାଜ୍ୟସ୍ୟ ସ୍ୱକ୍ଷେତ୍ରେଷୁ ଚ ପଣ୍ଡିତେଷୁ
ତ୍ୱମଗ୍ରଗଣ୍ୟୋ ପଦମଣ୍ଡିତେଷୁ ।

୧୪

ଶିକ୍ଷାବିଦାସାଞ୍ଚ ବିହିଂସ୍ଥିତୋଽପି
ଶିକ୍ଷା ପ୍ରସାରାୟ ସଦା ପ୍ରବୃତ୍ତଃ,
ଆମୋଲିଆବାତ୍ସ୍ୟ-ସଂସ୍କୃତାନାଂ
ମାନାଭିବୃଦ୍ଧୌ ଚିତ୍ତଚିନ୍ତିତସ୍ତ୍ୱମ୍ ।

୧୫

ଆସୀତ୍ତ୍ୱୁ ଯତ୍ନସ୍ତବ ସଂସ୍କୃତସ୍ୟ
ସେବାଂ ଚ କର୍ତ୍ତୁଂ ଚିରମମୃତସ୍ୟ
କଦା କଦା ସଂସ୍କୃତ-ଭାଷଣେନ
ତ୍ୱଂ ନନ୍ଦିତୋଽଭୂର୍ଜ୍ଜନ-ତୋଷଣେନ ।

୧୬

ମନସ୍ତ୍ୱଦୀୟଂ ତ୍ୱନୁରାଗ ପୁଷ୍ଟଂ
ଚେତୋ ବିଳାସୈର୍ଗୁଣିନାଂଚ ତୁଷ୍ଟମ୍,
ବକ୍ତୁଂ ରିପୁଣାଂ ସତତଂ ବିନଷ୍ଟଂ
ତତୋ ପ୍ରିୟଂ ଯନ୍ନୁବତା-ବିଶିଷ୍ଟମ୍ ।

୧୭

ଯଥା ତ୍ୱମତ୍ୟନ୍ତ-ପ୍ରସିଦ୍ଧନାମା
ତଥା ନୃସେବା ତବ ଚାନ୍ୟଧାମା ।
ଯେ ଯାଚକାସ୍ତେ ତ୍ୱୟିସିଦ୍ଧକାମାଃ
ବାକ୍ ଚାତୁରୀ ତେ ପରମାଭିରାମା ।।

୧୮

ସତ୍ୟାଗ୍ରହେ ଚାଽସହଯୋଗ-ପୂର୍ବେ
କାରାଗୃହେ ପ୍ରାଚ୍ୟ-ବିଦଂ ସମାଜେ ।
ନେତୃତ୍ୱ-ସୃଷ୍ଟୌ ନବ-ରାଜଧାନୀ
ନିର୍ମାଣ କାର୍ଯ୍ୟଷ୍ୱପି ତତ୍ପରସ୍ତ୍ୱମ୍ ।।

୧୯

ସମାଜ-ସଂସ୍କାର-ବିଧୌ ଚ ଯତ୍ନେ
ସ୍ୱତନ୍ତ୍ରକେ ଜାତି-ବିଭେଦ-ଲୋପେ ।
ଦୁଃଖସ୍ୟ ନାଶେ ଚ ହରେର୍ଜନାନାଂ
ସଦା ପ୍ରବୃତ୍ତିସ୍ତବ ନିର୍ଦ୍ଧନାନାମ୍ ।।

୨୦

ସୁଦୀର୍ଘ କାଳଂ ନ ହି ରାଜକୀୟା
ଶକ୍ତିଃ କରେ ତେ ବହୁଶସ୍ତ୍ୱଥାପି ।
ଜନାସ୍ତୁ ଦାସ୍ୟଂ ଭବନଂ ତୁ ଗଣ୍ୟ
ନ୍ୟବେଦୟନ ସର୍ବମସୌଖ୍ୟଜାଲମ ।।

୨୧

ଏକାମ୍ର-ପୀଠେ ରୁଚିରୋ ନିବାସ
'ଏକାମ୍ର' ନାମ ପରିଶୋଭତେ ତେ
ଆସାଢ଼ ତୀର୍ଥଂ ସ୍ମରଣୀୟ ମେତତ୍
ସ ରାଜନୀତି-ପ୍ରବିଦାଂ ଜନାନାମ୍ ।।

(୨୨)

ଶ୍ରୀମଜ୍ଜଗନ୍ନାଥ-ପୁରୋର୍ହି ତର୍କେ
ବିବିକ୍ତ୍ୟ ନାନାମତବାଦ-ଦୃଷ୍ଟ୍ୟା ।
ଅଲେଖି ଏକାନ୍ତ-ପ୍ରମାଣ ପୂର୍ଣ୍ଣଂ
ନିବନ୍ଧସାରଂ ସୁମନୋରମଂ ଚ ।।

୨୩

ଶ୍ରୀ ସାରଳା ଦାସ କବେଃ ପୁରାଣଂ
ରମ୍ୟଂ ମହାଭାରତ ମଦ୍ୱିତୀୟମ୍ ।
ସୁସଂସ୍କୃତଂ କାରିତମେବ ନୂନଂ
ସ୍ୱମାତୃ ସାହିତ୍ୟ ପ୍ରଚାରଣାର୍ଥଂ ।।

୨୪

ଅହୋ ! 'ପ୍ରଜାତନ୍ତ୍ର'-ଶରୀର-ଶୋଭା
ଲେଖସ୍ତ୍ୱଦୀୟୋ ହି ପ୍ରଭସ୍ତୁତଶ୍ଚ ।
ରସାପ୍ଲୁତୋ "ଗାଁ-ମଜଲିସ"-ନାମା
ଦିଲ୍ଲୀସ୍ଥିତୈଃକାତ୍ମି-ପକ୍ଷତୋବୈ ।।

୨୫

ସଂସାର ମୂର୍ତ୍ତିସ୍ତବ ରୁଦ୍ର ରୂପା
ବ୍ରହ୍ମେବ ଚ ତ୍ୱଂ ବହୁ-ସୃଷ୍ଟି-ଶକ୍ତଃ ।
ପ୍ରଶାସନେ ତ୍ୱଂ ଖଲୁବିଷ୍ଣୁ ରୂପୋ
କଳାଭିମୂର୍ତ୍ତୈସ୍ତ୍ୱୟି ଦୀପମାନାଃ ।।

୨୬

ଗାତିପ୍ରଦଃ ସର୍ବବିନାଶିକାଲ
ପ୍ରଥାପି କୀର୍ତ୍ତିଶ୍ୱର-ଜୀବନୀତି ।
ବଦନ୍ତି ଲୋକାଃ, ସୁଯଶୋମୟେନ
ଦେହେନ ଜୀୟା ଭୁବନେ ଚିରଂତ୍ୱମ୍ ।।

# ମହତାବଜୀ

• ଶ୍ରୀ ଗୌରଚନ୍ଦ୍ର ମହାପାତ୍ର

ଯେତେବେଳେ ରାଜନୀତିରେ କେବଳ ପ୍ରସ୍ତାବ ଓ ଭାଷଣ ନଥିଲା, ଥିଲା କେବଳ ସେବା, ତ୍ୟାଗ ଦୁଃଖକଷ୍ଟ ସହିବାର ଅସରନ୍ତି ଧୈର୍ଯ୍ୟ, ସେତିକି ବେଳେ ଯେଉଁ କେତେଜଣ ମହାମାନବ ମହାତ୍ମାଜୀଙ୍କର ଆହ୍ୱାନ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱଦେଶ ପାଇଁ କୃଚ୍ଛ୍ର ସାଧନା କରିଥିଲେ-ସେହିମାନଙ୍କ ମଧ୍ୟରୁ ଡ଼. ହରେକୃଷ୍ଣ ମହତାବ ଅନ୍ୟତମ । ବାସ୍ତବିକ୍ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଏହି କରିତ୍‌କର୍ମା ମନୀଷୀଙ୍କର କାର୍ଯ୍ୟ ଓଡ଼ିଶା ତଥା ଭାରତବର୍ଷର ରାଜନୀତିକୁ ଯେପରି ଆଲୋକ କରି ରଖିଥିଲା, ତାହା ବିସ୍ମୟକର । ସାହିତ୍ୟ, ସଂସ୍କୃତି, ସମାଜ-ସଂସ୍କାର, ସାମ୍ବାଦିକତା, ସେବା ଓ ରାଜନୀତି ସବୁ କ୍ଷେତ୍ରରେ ତାଙ୍କର ପ୍ରବେଶ, ପ୍ରଭାବ ଓ ପ୍ରତିପତ୍ତିର ଚମତ୍କାରିତା ଦେଶବାସୀ ଅନୁଭବ କରିଥିଲେ ।

ବାଲ୍ୟକାଳରୁ ହିଁ ମହତାବଜୀଙ୍କର ସେବା ଓ ପରୋପକାର ପ୍ରବୃତ୍ତି ପରିଲକ୍ଷିତ ହୋଇଥିଲା । ଆଗରପଡ଼ାରୁ ଭଦ୍ରକ ପର୍ଯ୍ୟନ୍ତ ସୁଦୀର୍ଘ ପଥ ଚାଲିଚାଲି ଆସୁଥିବାବେଳେ ସହଗାମୀ ବନ୍ଧୁମାନଙ୍କର ଅନିଚ୍ଛାସତ୍ତ୍ୱେ ସେମାନଙ୍କଠାରୁ ଜିନିଷପତ୍ର ନିଜେ ବୋହି ଆଣି ବନ୍ଧୁମାନଙ୍କର କଷ୍ଟ ଲାଘବ କରିବାର ଘଟଣା ତାଙ୍କୁ ସେଦିନ ଜଣେ ବନ୍ଧୁବତ୍ସଳ ସମ୍ବେଦନଶୀଳ ଛାତ୍ର ରୂପେ ପରିଚିତ କରିଥିଲା । ଭଦ୍ରକ ହାଇସ୍କୁଲରେ ପଢ଼ୁଥିବା ବେଳେ ସେ 'ରାମକୃଷ୍ଣ ମିଶନ' ସଂସ୍ପର୍ଶରେ ଆସିଥିଲେ ଏବଂ ମିଶନର ବରିଷ୍ଠ ସନ୍ନ୍ୟାସୀ ସ୍ୱାମୀ ବ୍ରହ୍ମାନନ୍ଦଙ୍କର ସାନିଧ୍ୟ ତାଙ୍କୁ ସେବା ଭାବରେ ଅନୁପ୍ରାଣିତ କରିଥିଲା ।

ସେ କଟକ ରେଭେନ୍‌ସା କଲେଜରେ ପଢ଼ୁଥିବା ବେଳେ ତତ୍କାଳୀନ ଛାତ୍ର ନବକୃଷ୍ଣ ଚୌଧୁରୀ ଓ ଯଦୁମଣି ମଙ୍ଗରାଜ ପ୍ରଭୃତିଙ୍କ ସହ 'ଭାରତୀ ମନ୍ଦିର' ମାଧ୍ୟମରେ ରାଜନୀତିର ଆଲୋଚନା ଓ ବନ୍ୟା ଦୁର୍ଗତମାନଙ୍କର ସାହାଯ୍ୟ କାର୍ଯ୍ୟ କରୁଥିଲେ । ଏହି ସମୟରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ୧୯୨୦ ମସିହାରେ ସେ ପଢ଼ା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ୧୯୨୧ରେ ବାଲେଶ୍ୱର ପଞ୍ଚୁକୋଠି ହତାରେ, ଏପ୍ରିଲ୍ ଛ'ଅ ତାରିଖ ଦିନ ଗୋଟିଏ ବିରାଟ ସଭା ଅନୁଷ୍ଠିତ ହୋଇଥିଲା । ଜାତୀୟ ସପ୍ତାହ ପାଳନ ଉପଲକ୍ଷେ ଏହି ସଭାର ଆୟୋଜନ । ସମ୍ଭବତଃ ବାଲେଶ୍ୱର ଅଧିବାସୀ ମହତାବଙ୍କର ତାହା ହିଁ ପ୍ରଥମ ଭାଷଣ । ସେଦିନ ସଭାରେ ସ୍ୱରାଜ ପାଇଁ ଷୋହଳ ଟଙ୍କା ମାତ୍ର ଆଦାୟ ହୋଇଥିଲା । ପରେ ପରେ ମହତାବଜୀ ସ୍ଥାପନ କଲେ-'ସ୍ୱରାଜ୍ୟ ମନ୍ଦିର' । ଏହି ସ୍ୱରାଜ୍ୟ ମନ୍ଦିରରେ ଅନ୍ୟମାନଙ୍କ ମଧ୍ୟରେ ପାଟନାସ୍ଥ 'ଷଚାଇଟ୍' ଅଧ୍ୟକ୍ଷ ଆସି ଶ୍ରୀ ଭୈରବ ଚନ୍ଦ୍ର ମହାପାତ୍ର ଯୋଗ ଦେଇଥିଲେ ।

ଜାଲିଆନାବାଗ ହତ୍ୟାକାଣ୍ଡ ପରେ ପରେ ଗାନ୍ଧିଜୀଙ୍କ ଅହିଂସା ସମଗ୍ର ଦେଶରେ ଅନ୍ୟାୟ ବିରୁଦ୍ଧରେ ଅହିଂସା ବିପ୍ଳବର ସେଦିନର ଶିଖା ଜଳି ଉଠିଥିଲା । ସେତେବେଳେ ଇନିକାର ବିଦ୍ରୋହ ଦମନ ପାଇଁ ସେବର ଏସ୍.ପି. ଶ୍ରୀକୃଷ୍ଣ ମହାପାତ୍ର ଗୁଳି ଚଳାଇଥିଲେ । ଗୁଳି ଚାଳନ ଫଳରେ ଶତାଧିକ ବ୍ୟକ୍ତି ଆହତ ହୋଇଥିଲେ ଏବଂ ବାସୁଦେବ ସେଠୀ ଓ ବିଶ୍ୱନି ମଲ୍ଲୁଆଳ ସେଦିନରେ ମୃତ୍ୟୁବରଣ କରିଥିଲେ । ଏହି ଦୁଇଜଣ ଶହୀଦ ହୋଇଥିଲେ ସିନା କିନ୍ତୁ ଆନ୍ଦୋଳନ ବନ୍ଦ ହୋଇ ନଥିଲା । ଏହି ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ କରି ସେମାନେ

## ମନେପଡ଼ ମନେପଡ଼

• ଶ୍ରୀ ବ୍ରଜନାଥ ରଥ

ରାଜନୀତି-ଜାଲେ ଛନ୍ଦି ଯାଇବି  
ବନ୍ଦୀ ହୋଇନ କେବେ  
କାଟିଦେଇ ଯେତେ ବାଧାବନ୍ଧନ ଡ଼ୋରି  
ଜୀବନଟା ସାରା  
ଅସୀମ ଆକାଶେ  
ଘୁରି ବୁଲିଅଛ ତୁମେ  
ଝଡ଼ର ଉଗଲ ସମ ଉଡ଼ିଅଛ  
ଦୁରନ୍ତ ଡ଼େଣା ମେଲି ॥

ଉଡ଼ି ଉଡ଼ି ତୁମେ କଳନା କରିଛ  
ଆକାଶର ଅସୀମତା,  
ସାଗର-ସାରସ ସମ ତୁମେ ପୁଣି  
ମାପିଛ ଦରିଆ ଛାତି :  
ଉର୍ଦ୍ଧ୍ୱେ ଉଡ଼ିବି  
ଭୁଲିପାରିନାହଁ  
ମାଟିର ମମତା ତୁମେ,  
ମାଟିରେ ରହିବି ଦୃଷ୍ଟି ତୁମର  
ସଦା ଯେ ଉର୍ଦ୍ଧ୍ୱଗତି ॥

ଆକାଶ-ମାଟିର  
ମାଟି-ଆକାଶର  
ହେ ମହାସୂତ୍ରଧର !  
ଏ ଜାତିର ମହା କାରିଗର ତୁମେ  
କୋଟି ଜନତାର ସାଥୀ !  
ଶତ ବର୍ଷର ମହା ଅଭିଷେକେ  
ମନେ ପଡ଼, ମନେ ପଡ଼  
କାଟିଥିଲ ଯେଣୁ  
ଖର ତନ୍ତୁରେ  
ଘନ ଅନ୍ଧାର ରାତି ॥

ସୁନହଟ-ବାଲେଶ୍ୱର, ପିନ୍-୭୫୬୦୦୧

ଉତ୍କଳମଣି ଗୋପବନ୍ଧୁ ଦାସ, ଭଗୀରଥି ମହାପାତ୍ର, ହରେକୃଷ୍ଣ ମହତାବ 'ସମାଜ'ରେ ବିବୃତି ଦେଇଥିଲେ । ଏହା ଫଳରେ ସେହି ତିନି ବ୍ୟକ୍ତିଙ୍କୁ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା । ଅବଶ୍ୟ ଏହା ପୂର୍ବରୁ ବିଲାତି ଲୁଗା ବର୍ଜନ ପାଇଁ ପିକେଟିଂ କରି ମହତାବଜୀ ତାଙ୍କ ଜୀବନରେ ପ୍ରଥମ କାରାଦଣ୍ଡର ଅଭିଜ୍ଞତା ଅର୍ଜନ କରିଥିଲେ । ଏହି ସମୟରେ ଯେଉଁ ଅସହଯୋଗ ଆନ୍ଦୋଳନ ଚାଲିଥିଲା, ତାହା ସ୍ଥଗିତ କରିବା ପାଇଁ ମହାତ୍ମା ଗାନ୍ଧୀ ନିର୍ଦ୍ଦେଶ ଦେଲେ । ଚୌରୀ ଚୌରା ଠାରେ ସତ୍ୟାଗ୍ରହୀମାନେ ପୋଲିସ୍‌ର ଅତ୍ୟାଚାର ସହିନ ପାରି ଅହିଂସାରେ ରହିପାରିନଥିଲେ । ସତ୍ୟାଗ୍ରହୀଙ୍କର ଏପରି ଆଚରଣ ଯୋଗୁଁ ଗାନ୍ଧିଜୀ ଆନ୍ଦୋଳନ ବନ୍ଦ କରି ଦେଲେ । ମାତ୍ର ଅହିଂସା ସମର ପାଇଁ ପ୍ରସ୍ତୁତି ପର୍ବର ଅବସାନ ଘଟି ନଥିଲା ।

ବାଲେଶ୍ୱରରେ 'ସ୍ୱରାଜ୍ୟ ମନ୍ଦିର' ସାଙ୍ଗକୁ ମହତାବଙ୍କର ସ୍ୱଗ୍ରାମ ଆଗରପଡ଼ାରେ କର୍ମ ମନ୍ଦିର' ସ୍ଥାପିତ ହେଲା । ମହତାବଙ୍କର ମହାନୁଭବତା ହେତୁ ସେଠାରେ ରଘୁନାଥଜିଉ ମନ୍ଦିରରୁ କର୍ମୀମାନେ ପ୍ରସାଦ ପାଇ ସୂତାକଟା, ଅସ୍ପୃଶ୍ୟତା ବର୍ଜନ, ନିଶା ନିର୍ବାରଣ ଇତ୍ୟାଦି କାର୍ଯ୍ୟରେ ଲାଗି ରହିଲେ । ମହତାବଙ୍କର ସହଧର୍ମିଣୀ ସୁଭଦ୍ରା ମହତାବ, ଭଗିନୀ ମଉନାବିବି, ଭାଇ ଗୋପୀନାଥ ଦାସଙ୍କ ସମେତ ବହୁ କର୍ମୀ ସୂତାକଟା ଇତ୍ୟାଦି ରଚନାତ୍ମକ କାର୍ଯ୍ୟରେ ଆଗରପଡ଼ା ଅଞ୍ଚଳର ଗ୍ରାମ ମଧ୍ୟରେ ଖଦୀ ଓ ସ୍ୱାବଲମ୍ବନର ଆଦର୍ଶ ଅକ୍ଷୁଣ୍ଣ ରଖିଥିଲେ । ଗୋପବନ୍ଧୁ ଚୌଧୁରୀ, ରମାଦେବୀ ପ୍ରଭୃତିଙ୍କଠାରୁ ଆରମ୍ଭ କରି କାକା କାଲେକର, ପ୍ରଫେସର ମାଲକାନୀଙ୍କ ଭଳି ଗାନ୍ଧିଜୀଙ୍କର ଅନ୍ତରଙ୍ଗମାନେ ଆଗରପଡ଼ାର ସଙ୍ଗଠନରେ ଅଭିଭୂତ ହୋଇ ପ୍ରଶଂସା କରିଯାଇ ଅଛନ୍ତି । ଏହି ସମୟରେ ରଚନାତ୍ମକ କର୍ମ ସହ ଗାନ୍ଧୀ ଆଦର୍ଶ ଓ ଅଭାପ୍ରସାର ପ୍ରଚାର ପାଇଁ ମହତାବଜୀ ବାଲେଶ୍ୱରରୁ 'ସ୍ୱରାଜ୍ୟ ସମାଚାର' ନାମକ ଏକ ଲିଥୋ ଛପା ପତ୍ରିକା ପ୍ରକାଶ କରୁଥିଲେ ।

ମହତାବଜୀଙ୍କର ସାଙ୍ଗଠନିକ ପ୍ରତିଭା ସହ ତାଙ୍କର ତତ୍କାଳୀନ ସମସ୍ୟା ସମାଧାନ ଦିଗରେ ଅଲୌକିକ ଶକ୍ତି ଥିଲା । ସେତେବେଳେ ଅସହଯୋଗ ପ୍ରତି ଲୋକ ସମର୍ଥନକୁ ଲକ୍ଷ୍ୟ କରି ବ୍ରିଟିଶ ସରକାର ଗୋଟିଏ ନିକୃଷ୍ଟ କୌଶଳ ଆରମ୍ଭ କରିଦେଲେ । ଗ୍ରାମେ ଗ୍ରାମେ ଅଚାନକ ଘରପୋଡ଼ି ହୋଇ ଯାଉଥାଏ । ଲୋକମାନଙ୍କୁ ଭୟଭୀତ ତଥା ସନ୍ତ୍ରସ୍ତ କରିବାର ଏହି ହୀନ ଚକ୍ରାନ୍ତର ମୁକାବିଲା କରିବା ପାଇଁ ମହତାବ ଏକ ଅଭିନବ କୌଶଳ ଅବଲମ୍ବନ କରିଥିଲେ । ଯେଉଁ ବ୍ରିଟିଶ ରାଜକର୍ମଚାରୀମାନେ ଏହି କୋକୁଆଭୟ ସୃଷ୍ଟି କରୁଥିଲେ, ମହତାବ ସେହିମାନଙ୍କ ସାହାଯ୍ୟରେ ଘରପୋଡ଼ି ବନ୍ଦ କରିବା ପାଇଁ ଉଦ୍ୟମ କଲେ । ଚାରିଆଡ଼େ ଆତଙ୍କ ଖେଳିଯାଇଥାଏ । ମହତାବ ଚତୁରତା ସହ ଲୋକମାନଙ୍କୁ ଏହି ବିପଦରୁ ରକ୍ଷା କରିବା ପାଇଁ ଗୋଟାଏ କମିଟି ଗଢ଼ିଲେ । ସେହି କମିଟିରେ ବାଲେଶ୍ୱର ଜିଲ୍ଲା କଲେକ୍ଟରଙ୍କୁ ସଭାପତି ଏବଂ ଏସ୍.ପି. ଙ୍କୁ ଏହି କମିଟିର ଅନ୍ୟତମ ସଭ୍ୟ ରୂପେ ରଖିଦେଲେ । ନିଜେ ଗୋଟେ ସ୍ୱେଚ୍ଛାସେବୀ ଦଳ ଗଢ଼ିଲେ । ଏହି ଦଳର ନାମ ଥିଲା- 'ଲାଲ ପାଇକ ଦଳ' । ସେମାନେ ରାତ୍ରି ଅନିଦ୍ରା ହୋଇ ପହରା ଦିଅନ୍ତି । ଖରାଦିନ ଦ୍ୱିପହରେ ବସ୍ତି ଅଞ୍ଚଳରେ ବୁଲି ଅଗ୍ନି ଭୟ ନିବାରଣ କରନ୍ତି । ଏ ଦିଗରେ ଇଂରାଜୀ ଅଫିସରଙ୍କ ସହାୟତା ନେଉଥିବାରୁ ମହତାବଜୀ ବହୁ ସମାଲୋଚନାର ମଧ୍ୟ ଶରବ୍ୟ ହୋଇଥିଲେ । ମାତ୍ର ତାହାର ସୁଫଳ ଦେଖି ସମସ୍ତେ ଯେ ଚମତ୍କୃତ ହୋଇଥିଲେ ସେତିକି ନୁହେଁ, ଉତ୍କଳମଣି ଗୋପବନ୍ଧୁ ପ୍ରଭୃତି ମହତାବଙ୍କର ସମୟୋପଯୋଗୀ କର୍ମପନ୍ଥା ପାଇଁ ପ୍ରଶଂସା ମଧ୍ୟ କରିଥିଲେ ।

୧୯୨୨ ଫେବୃୟାରୀରେ 'ପ୍ରଜାତନ୍ତ୍ର' ପ୍ରଥମେ କଟକରୁ ପ୍ରକାଶ ପାଉଥିଲା । ଅକ୍ଟୋବର ଠାରେ ବାଲେଶ୍ୱର ଟାଉନ୍ ପ୍ରେସରୁ ସାପ୍ତାହିକ 'ପ୍ରଜାତନ୍ତ୍ର' ପ୍ରକାଶିତ ହେଲା । ଏହି 'ପ୍ରଜାତନ୍ତ୍ର' ସେତେବେଳେ ବିପ୍ଳବର ବାର୍ତ୍ତା ପ୍ରଚାର କରୁଥାଏ । 'ପ୍ରଜାତନ୍ତ୍ର'ର ଖର୍ଚ୍ଚ ମେଣ୍ଟାଇବା ପାଇଁ ସୁଭଦ୍ରା ମହତାବଙ୍କର ଅଳଙ୍କାର ବିକ୍ରୟ କରିଥିବାର କଥା ମଧ୍ୟ ଶୁଣାଯାଏ । ମହତାବଜୀ ବନ୍ଦୀ ହୋଇଯିବା ପରେ ଏହି 'ପ୍ରଜାତନ୍ତ୍ର'ର ସମ୍ପାଦକ ରୂପେ ଅଡ଼ାଳପଙ୍କର ଉପେନ୍ଦ୍ର ପଣ୍ଡା ଓ ଭଦ୍ରକସ୍ଥ ତାଳପଦା ଗ୍ରାମର କମଳାକାନ୍ତ ମହାପାତ୍ର ମଧ୍ୟ ସମ୍ପାଦନା ଦାୟିତ୍ୱ ତୁଲାଉଥିଲେ ଏବଂ ବନ୍ଦୀ ହୋଇଥିଲେ । ପୂର୍ଣ୍ଣଚନ୍ଦ୍ର ଗିରି, ଦିବାକର ଘଡ଼େଇ, ନିତ୍ୟାନନ୍ଦ ମହାପାତ୍ର, ରବୀନ୍ଦ୍ର ମୋହନ ଦାସ, ପ୍ରିୟନାଥ ଦେ ପ୍ରଭୃତି କର୍ମୀଙ୍କର ସହଯୋଗରେ ମହତାବଜୀ ବାଲେଶ୍ୱରକୁ ଏକ ବଳିଷ୍ଠ ଅହିଂସା ବିପ୍ଳବର କେନ୍ଦ୍ର ଭାବରେ ଗଢ଼ିପାରିଥିଲେ । 'ପ୍ରଜାତନ୍ତ୍ର' ମୁଦ୍ରାଯନ୍ତ୍ରରୁ ଛପା ବନ୍ଦ କରିଥିଲେ ସରକାର ମାତ୍ର ହାତଲେଖା ଲିଥୋ 'ପ୍ରଜାତନ୍ତ୍ର' ପ୍ରକାଶ ପାଉଥିଲା । ଏହି ଲିଥୋ ପ୍ରଜାତନ୍ତ୍ର କଲିକତାକୁ ମଧ୍ୟ ଗୁପ୍ତଭାବରେ ଯାଉଥିଲା ।

୧୯୨୭ରେ ଭଦ୍ରକ ଅଞ୍ଚଳରେ ପ୍ରଳୟଙ୍କରୀ ବନ୍ୟାର କରାଳତା । ଉପାସଭୋକେ ଦିନ ଦିନ ପଡ଼ିରହିଛନ୍ତି ଲୋକେ । ବାସହୀନ ଲୋକଙ୍କ ମୁଖେ ଗଣ୍ଡେ ଆହାର ଦବ କିଏ ? ମହତାବଙ୍କର ପରଦୁଃଖ କାତର ପ୍ରାଣ ଅସ୍ଥିର ହୋଇ ଉଠିଲା । ଗୋପବନ୍ଧୁଙ୍କ ଠାରୁ ଆରମ୍ଭ କରି ଭାରତର ବରିଷ୍ଠ ଜନସେବକ ଠକ୍କର ବାବା ଓ ମହାତ୍ମାଜୀଙ୍କୁ ମହତାବ ଅବଗତ କରାଇଲେ । ଫଳରେ ମାରୁଆଡ଼ୀ ରିଲିଫ୍ ସଂସ୍ଥା ଓ ଅନ୍ୟାନ୍ୟ ବଦାନ୍ୟ ବ୍ୟକ୍ତି ତଥା ଅନୁଷ୍ଠାନର ସହାୟକଙ୍କ ହସ୍ତ ସଂପ୍ରସାରିତ ହେଲା-ବନ୍ୟାଗ୍ରସ୍ତ ଅନାହାର ପୀଡ଼ିତ ଜନଜୀବନ ରକ୍ଷା ପାଇଁ । ନିଜେ ମହାତ୍ମାଗାନ୍ଧୀ ମଧ୍ୟ ଆସିଥିଲେ ଏବଂ ଭେଡ଼ା ଅଞ୍ଚଳ ଚାନ୍ଦିବାଟିଆରେ ଅବସ୍ଥାନ କରିଥିଲେ । ଗାନ୍ଧୀଙ୍କର ଏହି ରହଣୀ କାଳ ପୂର୍ବରୁ ମହତାବଜୀ ଗୋଟାଏ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରସ୍ତାବ ଗାନ୍ଧିଜୀଙ୍କ ସମ୍ମୁଖରେ ଉପସ୍ଥାପନ କରିଥିଲେ । ତାହା ହେଉଛି-ଚିର ଦାରିଦ୍ର୍ୟ, ବାରମ୍ବାର ବନ୍ୟା କବଳିତ ଏହି ସମୁଦ୍ର ଉପକୂଳର ନିରୀହମାନଙ୍କର ଅନ୍ନସଂସ୍ଥାନ ପାଇଁ ସେମାନଙ୍କୁ ଲୁଣ ମାରିବାର ଅଧିକାର ଦେବା ଉଚିତ୍ । କିଏ ଜାଣେ ମହାତ୍ମାଗାନ୍ଧୀଙ୍କର ଲବଣ ସତ୍ୟାଗ୍ରହ ପରିକଳ୍ପନାରେ ମହତାବଙ୍କର ଏହି ମହତ ପରାମର୍ଶର ସ୍ପର୍ଶ ରହିଛି କି ନାହିଁ । ମାତ୍ର ଏକଥା ସତ୍ୟ ଯେ ଲବଣ ସତ୍ୟାଗ୍ରହ ପୂର୍ବରୁ ମହତାବଜୀ ବାଲେଶ୍ୱରର ଇଞ୍ଚୁଡ଼ି, ଶ୍ରୀଜଙ୍ଗ ପ୍ରଭୃତି ଅଞ୍ଚଳରେ ଆନ୍ଦୋଳନ ପାଇଁ ପ୍ରସ୍ତୁତି ଆରମ୍ଭ କରିଥିଲେ । ସମଗ୍ର ଭାରତରେ ୧୯୩୦ ମସିହା ଲବଣ ସତ୍ୟାଗ୍ରହ ଆନ୍ଦୋଳନ ଗାନ୍ଧିଜୀଙ୍କ ନେତୃତ୍ୱରେ ପ୍ରଥମ ସ୍ଥାନ ଅଧିକାର କରିଥିବାବେଳେ ଓଡ଼ିଶାର ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହ ଦ୍ୱିତୀୟ ସ୍ଥାନ ଅଧିକାର କରିବାର ଦାବୀ ରଖେ ।

ଏହି ସଫଳତା ମୂଳରେ ସରଦାର ସୁରେନ୍ଦ୍ର ଓ ମହତାବଜୀଙ୍କର ଉଦ୍ୟମର ଯାଦୁକାରୀ ପ୍ରଭାବ ହିଁ କାର୍ଯ୍ୟ କରିଥିଲା । ଏହି ଆନ୍ଦୋଳନରେ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ପ୍ରଭୃତି ସଂଗ୍ରାମୀ ନେତୃବୃନ୍ଦ ଗିରଫ ହେବା ପରେ ମହତାବ ମଧ୍ୟ ବନ୍ଦୀ ହୋଇଥିଲେ । ତତ୍‌ପରେ ଗାନ୍ଧୀ-ଇରଉଇନ୍ ସନ୍ଧି ଫଳରେ ସମସ୍ତ ସତ୍ୟାଗ୍ରହୀ ମୁକ୍ତ ହେଲେ ।

କଂଗ୍ରେସର ଗୋଟିଏ ଅଧିବେଶନ ପୁରୀଠାରେ ହେବ ବୋଲି ସ୍ଥିର ହେଲା । ଅଭ୍ୟର୍ଥନା ସମିତିର ସଭାପତି ହେଲେ ପଣ୍ଡିତ ନୀଳକଣ୍ଠ ଦାସ । ସ୍ୱେଚ୍ଛାସେବକ ସେବାଦଳର ଅଧିନାୟକ ହେଲେ ମହତାବ । ସେତେବେଳେ ସେହି ଶୃଙ୍ଖଳିତ ସ୍ୱେଚ୍ଛାସେବକ ବାହିନୀର ମାର୍ଚ୍ଚିଂ ସଙ୍ଗୀତ ଶୁଣି ଲୋମଟାଙ୍କୁରି ଉଠୁଥିଲା । ଦଳ ଦଳ ହୋଇ ଯୁବକମାନେ ତାଲିମ ପାଉଥିଲେ । ପ୍ରତିଦଳରେ ଦଳପତି ଥିଲେ, ଜଣେ ମାତ୍ର ମୁଖ୍ୟ ଦଳପତି ବା କମେଣ୍ଡର-ଇନ୍-ଚିଫ୍ ଥିଲେ । ସେହି କମେଣ୍ଡର-ଇନ୍-ଚିଫ୍ ପଦାଧିକାରୀ ଥିଲେ ମହତାବ । ପୁରୀରେ କଂଗ୍ରେସ୍ ଅଧିବେଶନ ପାଇଁ ବିପୁଳ ଆୟୋଜନ ଚାଲିଥାଏ । କିନ୍ତୁ ହଠାତ୍ ବ୍ରିଟିଶ୍ ସରକାର କଂଗ୍ରେସକୁ ପୁଣି ବେଆଇନ୍ ଘୋଷଣା କଲେ । ଗାନ୍ଧିଜୀ ବିଲାତର ଗୋଲଟେବୁଲ ବୈଠକରୁ ଆସି ବମ୍ବେରେ ପାଦ ଦେବା ମାତ୍ରେ ଗିରଫ ହେଲେ । ପୁଣି ଆନ୍ଦୋଳନ ଚାଲିଲା । ନିଶା ନିବାରଣ ପାଇଁ ମଦ ଦୋକାନ ଆଗରେ ପିକେଟିଂ, ଚଉକୀଦାରୀ ଟିକସ୍ ବନ୍ଦ ଇତ୍ୟାଦି ଆନ୍ଦୋଳନରେ ନେତା ତଥା କର୍ମୀମାନେ କାରାଦଣ୍ଡ ଭୋଗିଲେ । ମହତାବଙ୍କୁ ବିହାରସ୍ଥ ହଜାରୀବାଗ ଜେଲରେ ରଖାଯାଇଥିଲା । ସେଇ ଜେଲରେ ଉଚ୍ଚ ଶ୍ରେଣୀର ବନ୍ଦୀମାନେ ଥିଲେ । ମହତାବ ମଧ ଅନ୍ୟ ନେତାଙ୍କ ସହ ସେଇ ବନ୍ଦୀଶାଳାରେ ଥିଲେ । କିନ୍ତୁ ସେ ତ ଚୁପ୍ ଚାପ୍ ରହିବା ଲୋକ ନୁହେଁ । ଜେଲ ଭିତରୁ ଚିଠି ଦେଉଥିଲେ-ଆନ୍ଦୋଳନକୁ ଚାଲୁ ରଖିବା ପାଇଁ । ଚିଠି ଧରାପଡ଼ିଗଲା । ଫଳରେ ମହତାବଙ୍କୁ ଦଣ୍ଡ ମିଳିଲା । ସେ ତୃତୀୟ ଶ୍ରେଣୀର କୟେଦୀ ହୋଇ ପାଟନା କେମ୍ପ ଜେଲକୁ ଆସିଲେ ।

ଆନ୍ଦୋଳନକୁ ବ୍ରିଟିଶ ସରକାର ଦବାଇ ଦେଲେ ବୋଲି କହୁଥିଲେ ହେଁ ଗାନ୍ଧିଜୀ କହୁଥିଲେ ସତ୍ୟାଗ୍ରହୀର ଅହିଂସା ସମରରେ ପରାସ୍ତ ନାହିଁ । ତେଣୁ ସେ ରଚନାତ୍ମକ କାର୍ଯ୍ୟ ମାଧମରେ ଜନଚେତନାକୁ ଅଧିକ ତୀବ୍ର କରିବାକୁ ବସିଲେ । ଏତିକି ବେଳେ ମହତାବ ମଧ ରଚନାତ୍ମକ କାର୍ଯ୍ୟରେ ଲାଗିଥିଲେ । 'ପ୍ରଜାତନ୍ତ୍ର' ପତ୍ରିକା ପ୍ରକାଶ କରି ଗାନ୍ଧୀ-ଆଦର୍ଶକୁ ସାକାର କରୁଥିଲେ । ବାଲେଶ୍ୱର ତଥା ଆଗରପଡ଼ାରେ ରଚନାତ୍ମକ କାର୍ଯ୍ୟ ଚାଲିଥାଏ । 'କର୍ମମନ୍ଦିର' ସାଙ୍ଗକୁ ଆଗରପଡ଼ାରେ 'ବିଦ୍ୟାମନ୍ଦିର' ସ୍ଥାପିତ ହେଲା । ବାଲେଶ୍ୱରରେ 'ବୀରାଷ୍ଟମୀ'ର ଆବିଷ୍କର୍ତ୍ତା ଏହି ମହତାବ । ପ୍ରତିବର୍ଷ ବୀରାଷ୍ଟମୀରେ ଏବେ ବି ଆତ୍ମରକ୍ଷା ପାଇଁ କୁସ୍ତି କସରତ୍ ହୁଏ । ବିଭିନ୍ନ ଆଖଡ଼ାଦଳ ପଟୁଆରରେ ଆସନ୍ତି ।

୧୯୩୮ ରେ ହେଲା ଗଡ଼ଜାତ ଆନ୍ଦୋଳନ । ଏହି ଆନ୍ଦୋଳନରେ ସାରଙ୍ଗଧର ଦାସ, ମାଳତୀ ଚୌଧୁରୀ, ଗୌରାଙ୍ଗ ଦାସ, ନୀଳଗିରିର କୈଳାସବାବୁ ଓ ବନମାଳୀ ବାବୁଙ୍କର ଅବଦାନଠାରୁ ମହତାବଙ୍କର ଅବଦାନ କୌଣସି ଗୁଣରେ କମ ନୁହେଁ । ସମଗ୍ର ଭାରତବର୍ଷକୁ ଗଡ଼ଜାତ ମିଶ୍ରଣ ଦିଗ୍‌ଦର୍ଶନ ଦେଇଛି । ଭାରତରେ ଏହି ଅଭୂତପୂର୍ବ କାର୍ଯ୍ୟର ସୂତ୍ରଧର ଥିଲେ ହରେକୃଷ୍ଣ ମହତାବ ।

ସ୍ୱାଧୀନତା ସଂଗ୍ରାମର ଅନ୍ତିମ ପର୍ଯ୍ୟାୟ ପାଇଁ ଗାନ୍ଧିଜୀ ପ୍ରସ୍ତୁତ ହେଲେ । ୧୯୩୯ରେ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ତତ୍‌ପୂର୍ବରୁ ଅନେକ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥାଏ । ସେତେବେଳେ ଗରିଷ୍ଠ ଓ ବରିଷ୍ଠ ରାଜନୀତିକ ଦଳ ଥିଲା କଂଗ୍ରେସ । ବ୍ରିଟିଶ ସରକାର ଭାରତୀୟମାନଙ୍କର ମତାମତ ନନେଇ ଭାରତକୁ ଯୁଦ୍ଧରେ ସାମିଲ କରିଦେଲା । ବାଧ୍ୟତାମୂଳକ ଯୁଦ୍ଧ ଚାନ୍ଦା ଆଦାୟ କଲା । ସୈନ୍ୟମାନଙ୍କର ଦୌରାତ୍ମ୍ୟ ସାଙ୍ଗକୁ ଯୁଦ୍ଧ ଚାନ୍ଦା ବୋଝ ଉପରେ କୋରଡ଼ା ମାଡ଼ ପରି ହେଲା ।

ଗାନ୍ଧିଜୀ ଆନ୍ଦୋଳନ ଆରମ୍ଭ ପୂର୍ବରୁ ପ୍ରସ୍ତୁତି ଓ ସଙ୍ଗଠନ କାର୍ଯ୍ୟ କରିବାକୁ ଚାହିଁଲେ । ଆନ୍ଦୋଳନର ଅବ୍ୟବହିତ ପୂର୍ବରୁ ଗାନ୍ଧିଜୀଙ୍କ ମୀରାବେନ ମହତାବଙ୍କ ନିକଟକୁ ଆସିଥିଲେ ଏବଂ ଦୁହେଁ ମିଶି ଭାରତ ଛାଡ଼ ଆନ୍ଦୋଳନ ପାଇଁ ଓଡ଼ିଶାରେ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ଗ୍ରାମେ ଗ୍ରାମେ ବୁଲି ବୁଲି ଲୋକ ଚେତନା ଜାଗ୍ରତ କରିଥିଲେ । ୧୯୪୦ରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେଲା । ମହତାବ ରେମୁଣା(ବାଲେଶ୍ୱର)ଠାରେ ଗୋଟିଏ ସଭାରେ ଭାଷଣ ଦେଇ ବନ୍ଦୀ ହେଲେ । ଖଲାସ ହୋଇ ୧୯୪୨ ଅଗଷ୍ଟ ନଅ ତାରିଖରେ ପୁଣି ବନ୍ଦୀ ହୋଇ ଭାରତର ତୁଙ୍ଗ ନେତାମାନଙ୍କ ସହ ଅହମଦନଗର ଜେଲରେ ରହିଥିଲେ । ଏହି ଜେଲ ଭିତରେ ଦିନେ ଜବାହରଲାଲ ନେହେରୁ ମହତାବଙ୍କୁ ଖଣ୍ଡିଏ ବହି ଦେଖାଇଲେ । ତାହା ଜଣେ ଇଂରେଜ ଲେଖକଙ୍କର ବହି । ସେଥିରେ ଓଡ଼ିଶାର ଲୋକଙ୍କୁ ଅତି କୁତ୍ସିତ ଭାଷାରେ ନିନ୍ଦା କରାଯାଇଥିଲା । ମହତାବ ମର୍ମାହତ ହେଲେ । ସେହି ବେଦନାବୋଧ ହିଁ ବନ୍ଦୀଶାଳାରେ ଓଡ଼ିଶା ଇତିହାସ ଲେଖିବା ପାଇଁ ମହତାବଙ୍କୁ ପ୍ରବର୍ତ୍ତାଇଲା । ଓଡ଼ିଶା ଓ ଓଡ଼ିଆ ଜାତିର କଳଙ୍କ ମୋଚନ ପ୍ରୟାସ ଓ ପ୍ରତିକାରର ଫଳଶ୍ରୁତି ହେଲା ବୃହତ ଓଡ଼ିଶା ଇତିହାସର ସୃଷ୍ଟି ।

୧୯୪୪ରେ ଗାନ୍ଧିଜୀ କାରାମୁକ୍ତ ହେଲେ । ସମସ୍ତ ନେତୃବୃନ୍ଦଙ୍କ ସହ ମହତାବ ମଧ ମୁକ୍ତ ହେଲେ । ଓଡ଼ିଶାବାସୀ ତାଙ୍କର ଆଗମନରେ ନବ ଉଦ୍ଦୀପନା ଲାଭ କଲେ । କଟକର ସ୍ୱରାଜ୍ୟ ଆଶ୍ରମ ବ୍ରିଟିଶ କବଳରୁ ମୁକ୍ତ ହେଲା । ୧୯୩୮ ରେ ଯେଉଁ ଗଡ଼ଜାତ ଆନ୍ଦୋଳନ ହୋଇଥିଲା-ତାର ପରିସମାପ୍ତି ୧୯୪୮ ମସିହାରେ ହେଲା । ସେଥିପାଇଁ ସରଦାର ପଟେଲଙ୍କ ଭୂମିକାଠାରୁ ମହତାବଙ୍କ ଭୂମିକା ବଡ଼ ଥିଲା । ସେଦିନ ସେହି ଜାତୀୟ ଯଜ୍ଞର ପୂର୍ଣ୍ଣାହୁତି ଦେଇଥିଲେ ପ୍ରଧାନ ପୁରୋଧା ସ୍ୱୟଂ ହରେକୃଷ୍ଣ ମହତାବ । ସ୍ୱାଧୀନୋତ୍ତର ଭାରତରେ ସେହି ଅଦମ୍ୟ ଯୋଦ୍ଧାଙ୍କର ଜୀବନରେ ବିଶ୍ରାମ ନଥିଲା । ଶାସନ ଓ ସମାଜରୁ ଦୁର୍ନୀତି ଦୂର କରିବା ପାଇଁ ସେ କର୍ମରତ ଥିବା ସଙ୍ଗେ ସଙ୍ଗେ ମସୀଯୁଦ୍ଧ ମଧ ଚଳାଇଥିଲେ । ବିଶେଷତଃ 'ପ୍ରଜାତନ୍ତ୍ର'ର ଗାଁ ମଜଲିସ୍ ତାର ଏକ ବଳିଷ୍ଠ ନିଦର୍ଶନ ।

ଡ଼. ହରେକୃଷ୍ଣ ମହତାବଙ୍କ ଦେଶ ପାଇଁ ଅଶେଷ ଅବଦାନ ରହିଛି । ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ତାଙ୍କର ମନ ସ୍ୱଦେଶ ଚିନ୍ତାରେ ଆଲୋଡ଼ିତ ହେଉଥିଲା । ସ୍ୱାଧୀନତା ସଂଗ୍ରାମ ବ୍ୟତୀତ ଏ ଦେଶର ସାହିତ୍ୟ ସଂସ୍କୃତିର ଅଗ୍ରଗତି ପାଇଁ ତାଙ୍କର ଆୟାସର ଇୟତ୍ତା ନାହିଁ । ଅଳ୍ପ ହେଲେ ବି କେତେକ କ୍ଷେତ୍ରରେ ମୁଁ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସି ତାଙ୍କର ସେବା, ସଂଘର୍ଷ, ସଂଗ୍ରାମ ତଥା ସାହିତ୍ୟ-ସଂସ୍କୃତି ପାଇଁ ଗଭୀର ପ୍ରଚେଷ୍ଟାର ଆଭାସ ଅନୁଭବ କରିଛି । ଏପରି ଏକ କ୍ଷୁଦ୍ର ପ୍ରବନ୍ଧରେ ତାଙ୍କ ଭଳି ଏକ ବିରାଟ ବ୍ୟକ୍ତିତ୍ୱର ସଂଗ୍ରାମୀ ଜୀବନର ସାମଗ୍ରିକ ଆଲୋଚନା ମୋ' ପକ୍ଷେ ଅସମ୍ଭବ । ତଥାପି କ୍ଷୁଦ୍ର ଶିଶିର ବିନ୍ଦୁରେ ବିଶାଳ ସୂର୍ଯ୍ୟ ମଣ୍ଡଳ ପ୍ରତିବିମ୍ବିତ ହେଲାଭଳି ଏହି ନିବନ୍ଧରେ ମହତାବଙ୍କର ଏ ଦେଶର ମୁକ୍ତି ପାଇଁ ସଂଗ୍ରାମ-ସଙ୍ଗଠନର କିଛିଟା ଛବି ବର୍ଣ୍ଣିତ ହୋଇଛି ।

ସଭାପତି, ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସମିତି
'ନୀଡ଼ କୁଟୀର', ...-୭୫୨୦୦୦

# ବ୍ୟକ୍ତିତ୍ୱ ଓ ନେତୃତ୍ୱ

• ଡକ୍ଟର ହେମନ୍ତ କୁମାର ଦାସ

ବ୍ୟକ୍ତିତ୍ୱ ମଣିଷର ଆଚାର-ଆଚରଣ, ଚିନ୍ତା-ଚେତନା, ଦୃଷ୍ଟିଦର୍ଶନ, ଚାହାଣି-ଚଲଣି ପ୍ରଭୃତିର ଏକ ଅଭିନ୍ନ ଅଙ୍ଗ । ଲୋକ ବ୍ୟବହାର, ବଚନ-ବାଚନ, ଏପରିକି ପୋଷାକ ପରିଚ୍ଛଦର ମଧ୍ୟ ଏହାର ପ୍ରସ୍ତୁତିରେ କିଛି କିଛି ଭୂମିକା ରହିଥାଏ । ସବୁଠୁ ବଡ଼ ଭୂମିକା ଥାଏ ପରିବେଶର । କେହି କେହି ମନେ କରନ୍ତି ଯେ, ମଣିଷର ଏହା ହେଉଛି ଏକ ସହଜାତ ଗୁଣ । ବଳିଷ୍ଠ ବ୍ୟକ୍ତିତ୍ୱ ଓ ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱର କବଚ କୁଣ୍ଡଳ ପିନ୍ଧି ମଣିଷ ଜନ୍ମ ଗ୍ରହଣ କରିଥାଏ । ଏହାର ଗଠନରେ ପରିବାରର ଏକ ବିଶେଷ ଭୂମିକା ଥାଏ । ବିଶେଷ କରି ଭାରତରେ ଏହି ବିଶ୍ୱାସର ଅନୁଗାମୀ ଅନେକ । ଆମର ଏକ ଲୋକୋକ୍ତି ପ୍ରଚାର କରେ, ଯାହାର ବାପ ଚଢ଼େ ଘୋଡ଼ା, ତାହାର ପୁଅ ଚଢ଼େ ଥୋଡ଼ା ଥୋଡ଼ା ଅର୍ଥାତ୍ ପ୍ରକାରାନ୍ତରେ କହିବାକୁ ଗଲେ କର୍ତ୍ତୃତ୍ୱ ହେଉଛି ସମ୍ପୂର୍ଣ୍ଣ ଭାବରେ ବଂଶଗତ । ବାପ ରାଜା ହୋଇଥିଲେ ପୁଅ ନିଶ୍ଚୟ ରାଜା ହେବ । ଏଥିପାଇଁ ଯୋଗ୍ୟତାର ପ୍ରଶ୍ନ ଆଦୌ ଉଠିବ ନାହିଁ । ଭାରତୀୟମାନେ ମଧ୍ୟ ଯୁଗଯୁଗରୁ ଏହି ବଂଶାନୁଗତ୍ୟକୁ ସ୍ୱୀକାର କରି ଆସିଛନ୍ତି । ଅନ୍ୟତ୍ର ଯେ ଏହା ଆଦୌ ହୁଏ ନାହିଁ, ତାହା ନୁହେଁ, ତେବେ ଆମ ଏଠାରେ ଏହା ଏକ ପ୍ରତିଷ୍ଠିତ ସତ୍ୟର ମାନ୍ୟତା ପାଇ ଆସିଛି । ଐତିହାସିକ ରବର୍ଟ ଓର୍ମେ(Robert Orme ଅଷ୍ଟାଦଶ ଶତକ) ଏ ସମ୍ପର୍କରେ ଗୋଟିଏ ଚମତ୍କାର କଥା କହିଛନ୍ତି । ତାଙ୍କ ମତରେ There is no Country in which titles of descent are less instrumental to the fotunes of man than they are · in Indostannone but. those of royal blood are considered as hereditary nobility" ଓର୍ମେ ମହାଶୟ ୧୭୪୨ ଖ୍ରୀ.ଅ. ବେଳକୁ ଭାରତରେ ଥାଇ ସ୍ୱଚକ୍ଷୁରେ ଯାହା ଦେଖିଥିଲେ, ତାହାରି ଭିତ୍ତିରେ ସେ ଭାରତୀୟମାନଙ୍କ ସମ୍ପର୍କରେ ନିଜର ଧାରଣା ପ୍ରସ୍ତୁତ କରିଥିଲେ । ଅଧିକାର ପ୍ରତିଷ୍ଠା ନିମନ୍ତେ ସେ ବାହୁବଳର ଗୁରୁତ୍ୱକୁ ଅବଶ୍ୟ ସ୍ୱୀକାର କରିଛନ୍ତି । ମୁଣ୍ଡରେ କିଛି ବୁଦ୍ଧି, ହୃଦୟରେ ସାହସ ତଥା ବାହୁରେ ଅସି ଚାଳନାର ଶକ୍ତି ଥିଲେ, ଏଠାରେ ଯେ କୌଣସି ବ୍ୟକ୍ତି ନିଜର ଭାଗ୍ୟ ବଦଳାଇ ଦେଇପାରେ ବୋଲି ତାଙ୍କର ଧାରଣା । ଏ ସବୁ କଥା କହିବାର ଏକମାତ୍ର ଲକ୍ଷ୍ୟ ହେଉଛି, ବ୍ୟକ୍ତିତ୍ୱ ଗଠନରେ ପରିବାର, ସାମାଜିକ ସ୍ଥିତିର ଭୂମିକା ସମ୍ପର୍କରେ ସୂଚନା ଦେବା ।

ଏଥିରେ ସନ୍ଦେହ ନାହିଁ ଯେ, ଶିକ୍ଷା ବ୍ୟକ୍ତିତ୍ୱ ଗଠନରେ ଏକ ବିଶେଷ ଭୂମିକା ଗ୍ରହଣ କରେ । ଏଥିରୁ ଆସେ ଆତ୍ମବିଶ୍ୱାସ ଏବଂ ମତପ୍ରକାଶର ସ୍ୱଚ୍ଛ ଦୃଷ୍ଟିକୋଣ । ସାମାଜିକ ସ୍ଥିତି, ପଦ-ପଦବୀ ଇତ୍ୟାଦି ଏହାର ସହାୟକ ହୋଇଥାଏ । ଅର୍ଥ ଏବଂ ପଦ-ଏଥିରୁ ଅର୍ଜିତ ବ୍ୟକ୍ତିତ୍ୱ କିନ୍ତୁ ଏକାନ୍ତ ଭାବରେ ଅସ୍ଥାୟୀ । କାରଣ ଏହା ବ୍ୟକ୍ତି ଚରିତ୍ରରେ ଔଦ୍ଧତ୍ୟ ସୃଷ୍ଟି କରେ । ପ୍ରଭାବଶାଳୀ ବ୍ୟକ୍ତିତ୍ୱ କିନ୍ତୁ ସନ୍ଧ୍ୟାଦୀପର ନିଷ୍କମ୍ପ ଶାନ୍ତ ଶିଖା ଭଳି ପ୍ରତିବିମ୍ବିତ ଓ ଆକର୍ଷଣୀୟ । ପ୍ରଥମଟି ଦୂରକୁ ଠେଲି ଦେଉଥିଲା ବେଳେ ଦ୍ୱିତୀୟଟି ପାଖକୁ ଟାଣେ । ତାହାରି ଛାଇରେ ଘଡ଼ିଏ ବସି ଥକ୍କା ମେଣ୍ଟାଇବା ନିମନ୍ତେ ସଂସାର ଦାବଦାହ ପୀଡ଼ିତ ମାନବ ଆତ୍ମା ତୃଷିତ ହୋଇଉଠେ ।

ଅସୁବିଧା ହେଉଛି ଯେ, ଉପରସ୍ତରର ବ୍ୟକ୍ତିତ୍ୱକୁ ନେଇ ଜାତୀୟ ଚରିତ୍ରର ମାନ ନିର୍ଦ୍ଧାରିତ ହୋଇଥାଏ । ଯେହେତୁ ସେମାନଙ୍କ କାନ୍ଧରେ ଜାତୀୟଜୀବନ ଗଠନର ଦାୟିତ୍ୱ ନ୍ୟସ୍ତ ଥାଏ । ତେଣୁ ସେଇମାନଙ୍କ ଆଚରଣକୁ ନେଇ ଜାତିର ବ୍ୟକ୍ତିତ୍ୱ ନିର୍ଦ୍ଧାରିତ ହୋଇଯାଏ । ଭାରତରେ ଇଂରେଜ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କରିଥିବା ରବର୍ଟ କ୍ଲାଇଭ୍, ଭାରତୀୟମାନଙ୍କର ଚରିତ୍ର ସମ୍ପର୍କରେ ସେ କାଳର 'ହାଉସ୍ ଅଫ୍ କମନସ୍' ସଭାରେ ୧୭୭୨ ମସିହା ମାର୍ଚ୍ଚ ୩୦ ତାରିଖରେ କହିଥିଲେ ଯେ, Indostan was always an absolute despotic govt. The inhabitants, especially of Bengal in inferior stations are servile mean, submissive and humble. In superior stations they one luxurious, effiminate tyramical, trecherous, venal, cruel.....''ପ୍ରତାରଣା, ଷଡ଼ଯନ୍ତ୍ର, ନିଷ୍ଠୁରତା, ହତ୍ୟା ବିଭୀଷିକାର ନାରକୀୟ ଲୀଳା ଚଳାଇ ଭାରତରେ ଇଂରେଜ ଶାସନର ବୁନିଆଦ ସ୍ଥାପନ କରିଥିବା କ୍ଲାଇଭ୍ ସାହେବଙ୍କର ଭାରତୀୟ ବିଶେଷ କରି ବଂଗୀୟମାନଙ୍କ ସମ୍ପର୍କରେ ଏହି ଭଳି ଭାଗବତପାଠ କେତେ ଦୂର ଯୁକ୍ତି ଯୁକ୍ତ, ତାହା ଅନୁମାନ ସାପେକ୍ଷ । ମାକଲେ ପ୍ରଭୃତି ଆଉ କେତେକ ସାହେବ ଆହୁରି ଭୟଙ୍କର କଥାମାନ କହିଛନ୍ତି । ସେ ସବୁ ସମ୍ପର୍କରେ ବିଶେଷ ଆଲୋଚନା ନ କରି ତେବେ ଏତିକି କୁହାଯାଇପାରେ ଯେ, ଶାସକ ସମ୍ପ୍ରଦାୟର ଅନୁକମ୍ପା ଲାଳସୀ ମୁଷ୍ଟିମେୟ ଲୋକଙ୍କୁ ନେଇ ସେମାନଙ୍କର ଏହି ଧାରଣା । ତାହାକୁ ଜାତୀୟ ଚରିତ୍ରର ଏକ ସାଧାରଣ ଧର୍ମ ବୋଲି ଗ୍ରହଣ କରି ନେବାର କୌଣସି କାରଣ ନାହିଁ ।

କେବଳ ମାତ୍ର ଆନୁଷ୍ଠାନିକ ଶିକ୍ଷା ପାଇଗଲେ, ଜଣେ ବ୍ୟକ୍ତିତ୍ୱସମ୍ପନ୍ନ ହୋଇଯାଏ ନାହିଁ । ଗୋଟିଏ ଜନ୍ମରେ ଶିକ୍ଷା ମିଳିଯାଇପାରେ, ମାତ୍ର ସଂସ୍କୃତି ମିଳେ ନା । ଏହା ପଛରେ ଥାଏ ଯୁଗଯୁଗର ପାରିବାରିକ ଏବଂ ସାମାଜିକ ସାଧନା । ବ୍ୟକ୍ତିତ୍ୱ ଗଠନରେ ଯେଉଁ ଉଦାରତା, ମହାନତା, ଧୈର୍ଯ୍ୟଶୀଳତା, ସୌଭ୍ରାତୃତ୍ୱ, ମାନବିକତା, କ୍ଷମା ପରାୟଣତା, ବିଶ୍ୱମୟତା ପ୍ରଭୃତିର ପ୍ରୟୋଜନ ହୋଇଥାଏ, ସେ ସବୁ ବ୍ୟକ୍ତିକୁ ମିଳେ କିଛି ପରିବାର ସୂତ୍ରରୁ, କିଛି ସାମାଜିକ ଜୀବନରୁ । ଏହାର ପ୍ରସ୍ତୁତି ବାଲ୍ୟକାଳରୁ ଆରମ୍ଭ ହୋଇଯାଏ । ଜନ୍ମ ସୂତ୍ରରେ କେହି ଏହାର ଅଧିକାରୀ ହୋଇଥାଏ, ଏକଥା କହିବା ତେଣୁ ସମ୍ପୂର୍ଣ୍ଣ ଠିକ୍ ନୁହେଁ ।

ଏଇ ପରିପ୍ରେକ୍ଷୀରେ ନବ-ଉତ୍କଳର ନିର୍ମାତା ଡ଼ଃ ହରେକୃଷ୍ଣ ମହତାବଙ୍କ ବ୍ୟକ୍ତିତ୍ୱର ବିଶ୍ଳେଷଣ କରିବାକୁ ଗଲେ, ପୂର୍ବୋକ୍ତ ମତର ସମର୍ଥନ ମିଳିଯାଇଥାଏ । ଡ଼ଃ ମହତାବ ଏକ ବହୁମୁଖୀ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ମୁଖ୍ୟତଃ, ତାଙ୍କ ବ୍ୟକ୍ତିତ୍ୱର ଦୁଇଟି ଦିଗ । ଗୋଟିଏ

ହେଉଛି ରାଜନୀତି, ଅନ୍ୟଟି ହେଉଛି ସାହିତ୍ୟ । ସାହିତ୍ୟିକ ମହତାବ ଓଡ଼ିଆ ସାହିତ୍ୟ ପାଇଁ କେଉଁ ଭୂମିକା ଗ୍ରହଣ କରିଥିଲେ, ତାହା କାହାରିକୁ ଅଛପା ନାହିଁ । କାବ୍ୟ କବିତା, ନାଟକ ଏକାଙ୍କିକା, ଗଳ୍ପ ଉପନ୍ୟାସ, ପ୍ରବନ୍ଧ ଗମ୍ୟ ରଚନା ଗୋଟିଏ କଥାରେ କହିବାକୁ ଗଲେ, ସାହିତ୍ୟର ସମସ୍ତ ବିଭାଗକୁ ସେ ସ୍ପର୍ଶ କରିଛନ୍ତି । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ସେବା । ସ୍ୱପ୍ନ ଥିଲା ଦେଶର ସର୍ବାଙ୍ଗୀନ ଉନ୍ନତି ସାଧନ । ସାହିତ୍ୟକୁ ସେ ଏଥିପାଇଁ ବ୍ୟବହାର କରିଛନ୍ତି । ନିଜର ଦୃଷ୍ଟି ଓ ଦର୍ଶନକୁ, ଚିନ୍ତା ଆଉ ଭାବନାକୁ ଏହାରି ମାଧ୍ୟମରେ ଲୋକଙ୍କ ପାଖରେ ପହଞ୍ଚାଇ ଦେଇଛନ୍ତି । ଜଟିଳ ସମସ୍ୟାକୁ ସରଳ ରୂପରେ ବ୍ୟାଖ୍ୟା କରିଛନ୍ତି । ଏହା ହିଁ ହୋଇଛି ତାଙ୍କର ଲକ୍ଷ୍ୟ ।

ସେମିତି ରାଜନୀତି କ୍ଷେତ୍ରରେ ମଧ୍ୟ ସେ ନିଜ ବିଶ୍ୱାସର ରୂପାୟନ ନିମନ୍ତେ କୌଣସି ପାଲିସ୍ କରିନାହାନ୍ତି । କ୍ଷମତାର ବଳୟ ମଧ୍ୟରେ ଦେଦୀପ୍ୟମାନ ହେବାପାଇଁ ଚାହିଁ ନାହାନ୍ତି । ବାଟ ଗୋଟାଏ ଠିକଣା କରିନେବା ପରେ(ହୋଇପାରେ ତାହା ଏକ ଭୁଲ୍ ବାଟ, ତେବେ ତାହା ତାଙ୍କ ନିଜର ବାଟ) । ସେଇଥିରେ ସେ ଚାଲିଛନ୍ତି ଆମୃତ୍ୟୁ । ହୁଏତ ଏଥିରେ ତାଙ୍କୁ ସହଯାତ୍ରୀ ମିଳିଛନ୍ତି, କିମ୍ବା ମିଳିନାହାନ୍ତି । ସେଥିରେ କିନ୍ତୁ ତାଙ୍କର କ୍ଷତି ବୃଦ୍ଧି ହୋଇନାହିଁ । ସେ ତାଙ୍କର ଚାଲିଛନ୍ତି । ଶେଷରେ ହୁଏତ ତାଙ୍କର ନିଷ୍ପତ୍ତି ଭୁଲ୍ ବୋଲି ପ୍ରମାଣିତ ହୋଇଛି । ସେ ଏହାକୁ ଜିବାର ବିଭ୍ରାଟ ବୋଲି ମାନି ନେଇଛନ୍ତି, ମାତ୍ର ସାଧାରଣ ଭଳି ଅନୁତାପ କରି ନାହାନ୍ତି । ବରଂ ନିଜକୁ ବୁଝାଇଛନ୍ତି, "ପ୍ରତ୍ୟେକ ଜୀବନ ବାସ୍ତବିକ ତା' ପକ୍ଷରେ ଏକ ବିରାଟ ସାଧନା । ସେ ନିଜେ ତାହା ଜାଣି ପାରୁ ବା ନ ପାରୁ; ତା'ର ନିର୍ଦ୍ଦିଷ୍ଟ ସାଧନା ସେ ସମ୍ପାଦନ କରୁଛି । ଜୀବନଟି ଜନ୍ମଠାରୁ ଆରମ୍ଭ ହୋଇ ନାହିଁ କି ମୃତ୍ୟୁରେ ତାର ଶେଷ ହୋଇଯାଉନାହିଁ । ବହୁ ଅଭିଜ୍ଞତା ଓ ସାଧନା ପ୍ରତ୍ୟେକ ଜୀବନ ବହୁକାଳରୁ ଅର୍ଜନ କରି ଆସୁଛି । ପ୍ରତ୍ୟେକ ନିଜ ନିଜ ସାଧନାର ପଥ ଅତିକ୍ରମ କରି ଯାଉଛନ୍ତି(ସାଧନାର ପଥେ : ପୃ : ୧-୨) ଜୀବନକୁ ପରିଦୃଶ୍ୟମାନ ସମୟର ସୀମା ମଧ୍ୟରେ ଆବଦ୍ଧ ନ ରଖି ଡ଼ଃ ମହତାବ ତାହାର ଏକ ନିରବଚ୍ଛିନ୍ନ ପ୍ରକ୍ରିୟା ସମ୍ପର୍କରେ ଯେଉଁ ଦାର୍ଶନିକ ମନ୍ତବ୍ୟ ଦେଇଛନ୍ତି, ତାହା ହେଉଛି ଏକ ଭାରତୀୟ ସଂସ୍କାର । ଶଙ୍କରାଚାର୍ଯ୍ୟଙ୍କର 'ପୁନରପି ଜନନଂ ପୁନରପି ମରଣଂ' ଭିତରେ ଜୀବନ-ଚକ୍ର ଯେଉଁଭଳି ନିରବଚ୍ଛିନ୍ନ ଭାବେ ଆବର୍ତ୍ତିତ ହେଉଥାଏ, ମହତାବୀ-ଚିନ୍ତା ହେଉଛି ତାହାର ଏକ ସମାନ୍ତରାଳ ରୂପ ମାତ୍ର । ଏଇ ସଂସ୍କାର କିନ୍ତୁ ହେଉଛି ତାଙ୍କ ବ୍ୟକ୍ତିତ୍ୱର ଏକ ପ୍ରମୁଖ ଦିଗ, ଯାହା ତାଙ୍କୁ ମିଳିଥିଲା ଏ ଦେଶରେ ଜନ୍ମ ହୋଇଥିବାରୁ, ଏ ଦେଶର ପାଣି ପବନରେ ବଢ଼ି ଉଠିଥିବାରୁ । ମହତାବ ଯେତେବେଳେ ଚିନ୍ତା କରନ୍ତି, "ମନୁଷ୍ୟ ମନୁଷ୍ୟ ଭିତରେ ଭେଦ ମୁଁ କରାଇ ଦେବି ନାହିଁ । ସମସ୍ତଙ୍କ ସମାନ ଅଧିକାର, ସମସ୍ତଙ୍କର ସମାନ ସୁଯୋଗ'(ରୂପାନ୍ତର) ସେତେବେଳେ ଏ ଦେଶର 'ସର୍ବେ ଭବନ୍ତୁ ସୁଖିନଃ'ର ସନାତନ-ଦର୍ଶନ ତାଙ୍କ ଉପରକୁ ଆଉଜି ଯାଇଥିବାର ସ୍ପଷ୍ଟ ଅନୁଭୂତ ହୁଏ ।

ପରମ୍ପରା ଆମର ଭିତ୍ତି । ତେବେ କେବଳ ତାହାକୁ ଲକ୍ଷ୍ୟ ରୂପରେ ଗ୍ରହଣ କରି ନେଲେ ଜୀବନର ଅଗ୍ରଗତି ରୁଦ୍ଧ ହୋଇଯାଏ । ସ୍ଥାଣୁତା ଜୀବନକୁ ଗ୍ରାସ କରେ । ପୁରୋଦୃଷ୍ଟିହୀନ ଜୀବନରେ ଚମତ୍କାରିତା କିଛି ନଥାଏ । ପରମ୍ପରା ସହିତ ପୁରୋଦୃଷ୍ଟିର ସମନ୍ୱୟରେ ଜୀବନର ଯେଉଁ ରୂପ ପ୍ରସ୍ତୁତ ହୁଏ, ତାହା ହିଁ ହେଉଛି ଏହାର ଯଥାର୍ଥ ରୂପ । ଡ଼ଃ ମହତାବ ଥିଲେ ଏକ ପରମ୍ପରାବାଦୀ-ପରିବାରର ସୁଯୋଗ୍ୟ ଦାୟାଦ । ପରମ୍ପରା ପ୍ରତି ଅନୁରକ୍ତି ତେଣୁ ତାଙ୍କୁ ଜନ୍ମ ସୂତ୍ରରେ ମିଳିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ମହତାବଙ୍କ ପିତା କୃଷ୍ଣଚନ୍ଦ୍ର ସେ ଯୁଗରେ ଗୋଟିଏ ଜମିଦାରୀ ଚଳାଇବାର ଦାୟିତ୍ୱ ଲାଭ କରି ସେଠାରେ ଶିକ୍ଷା, ସ୍ୱାସ୍ଥ୍ୟ, ଯୋଗାଯୋଗ ପ୍ରଭୃତି ବ୍ୟବସ୍ଥାର ଉନ୍ନତି ପାଇଁ ଯେଉଁ ନିୟମିତ ଚେଷ୍ଟା ଚଳାଇଥିଲେ, ତହିଁରୁ ତାଙ୍କର ପ୍ରଗତିବାଦୀ ଦୃଷ୍ଟିକୋଣର ପରିଚୟ ମିଳେ । ତେବେ ପିଲାମାନଙ୍କୁ ମଣିଷ କରିବା ପାଇଁ ସେ ଯେଉଁ ବାଟ ବାଛି ନେଇଥିଲେ, ତାହା ତାଙ୍କର ରକ୍ଷଣଶୀଳ ମନୋବୃତ୍ତିର ପରିଚାୟକ ବୋଲି କୁହାଯାଇପାରେ । ଉତ୍କଳରେ ଡ଼ଃ ମହତାବ ଏବଂ ତାଙ୍କର ଅଗ୍ରଜ ଜଣେ ସତର୍କ ଅଭିଭାବକଙ୍କ କଡ଼ା ଦୃଷ୍ଟି ତଳେ ପାଠ ପଢ଼ିବା ପାଇଁ ପ୍ରେରିତ ହୋଇଥିଲେ । ପିତାଙ୍କ ବ୍ୟବସ୍ଥାରେ ଯେଉଁଭଳି ଜୀବନ ତାଙ୍କୁ କଟାଇବାକୁ ପଡ଼ିଥିଲା, ତାହା ଅପେକ୍ଷା ସାଧାରଣ ପରିବାରର ଛାତ୍ରମାନେ ବେଶ୍ ଭଲରେ ଥିଲେ ବୋଲି ଡ଼ଃ ମହତାବଙ୍କର ବିଶ୍ୱାସ ହୋଇଥିଲା । ଏଥିରୁ ମୁକୁଳିବା ପାଇଁ ସେ ନାନା ପ୍ରକାର ଚେଷ୍ଟା କରି ସେଥିରେ ଅସଫଳ ହୋଇଥିଲେ । ଏଭଳି ବ୍ୟବସ୍ଥା ଅନ୍ତତଃ ତାଙ୍କ ପାଇଁ 'ଅତି ଉତ୍କୃଷ୍ଟ' ପ୍ରମାଣିତ ହୋଇଥିଲା ବୋଲି ସ୍ୱୀକାର କରି ଥିଲେ ହେଁ ଏହା ଦ୍ୱାରା 'ଅପରିଚିତ ଲୋକମାନଙ୍କ ସହିତ ସାହସରେ ମିଶିବା ଓ ନିଃସଂକୋଚରେ ସେମାନଙ୍କ ସହିତ କାରବାର କରିବା ଭଳି ଅଭ୍ୟାସ ଆଉ ଜୀବନସାରା ହୋଇ ପାରିଲା ନାହିଁ । ଆଜି ମଧ୍ୟ ପିଲା ସ୍ୱଚ୍ଛନ୍ଦଭାବରେ ସମସ୍ତଙ୍କ ସହିତ ମିଶି ନପାରିଲେ ତାକୁ ଲାଜକୁଳା କୁହାଯାଏ । ଏଥିପାଇଁ ପିଲା ଅପେକ୍ଷା ତା'ର ଅଭିଭାବକଙ୍କର ଦାୟିତ୍ୱ ଯେ ଯଥାର୍ଥରେ ଅଧିକ ଥାଏ, ଏ କଥା କେହି ସ୍ୱୀକାର କରନ୍ତି ନାହିଁ । ଅନୁକୂଳ ପ୍ରୋତ୍ସାହନ ଜୀବନରେ ଏକ ସ୍ୱାଭାବିକ ବିକାଶ-ଧାରା ଥାଏ । ଉପଯୁକ୍ତ ପାଇଲେ ଏହା ଯଥାଯଥ ଭାବରେ ବିକଶିତ ହୋଇଥାଏ । ଅଥଚ ଅଭିଭାବକଙ୍କ କଡ଼ା ପହରା ତଳେ ଏହି ଏହି ବିକାଶ ବାଧାପ୍ରାପ୍ତ ହୁଏ । ଶାସନର

ଏହାର ଆଉ ଗୋଟିଏ ଅନ୍ଧକାର ଦିଗ ମଧ୍ୟ ରହିଛି । ଶାସନର ଏକ ବୟସ ରହିଛି । ତାହା ଅତିକ୍ରମ କରିଗଲାପରେ ପିଲା ଉପରେ ଏହା ପ୍ରତିକୂଳ ପ୍ରତିକ୍ରିୟା ପ୍ରକାଶ କରିଥାଏ । ପ୍ରାୟ ଦେଖାଯାଏ ଯେ ଏହି ବୟସରେ ପହଞ୍ଚିବା ପରେ କିମ୍ବା ଅଭିଭାବକଙ୍କଠାରୁ ଦୂରେଇ ଯିବା ହେତୁ ଏହା ପୂର୍ବରୁ ମଧ୍ୟ ପିଲା ବିଦ୍ରୋହୀ ହୋଇଉଠେ । ବହୁ କାଳରୁ ଯେଉଁ ପୁଞ୍ଜୀଭୂତ କୋପ ମନ ଭିତରେ ସଞ୍ଚିତ ଥାଏ, ତାହା ହଠାତ୍ ବିସ୍ଫୋରିତ ହୁଏ । ଡ଼ଃ ମହତାବ ସ୍କୁଲଜୀବନରେ ଯେଉଁ ବହୁ ଛୋଟ ଛୋଟ ଉତ୍ତେଜନାପୂର୍ଣ୍ଣ କାର୍ଯ୍ୟ କରିଥିଲେ, ସେସବୁ ହେଉଛି, ଏହାର ରୂପାନ୍ତରିତ ପ୍ରକାଶ ମାତ୍ର । ଗୋଟିଏ ଦିଗରେ ପିତାଙ୍କର ତାଙ୍କୁ ନୀତିନିୟମ, ପରମ୍ପରା, ଦାୟିତ୍ୱ, କର୍ତ୍ତବ୍ୟ ଅକର୍ତ୍ତବ୍ୟର ଶୃଙ୍ଖଳରେ ବାନ୍ଧି କରିବା ନିମନ୍ତେ ପ୍ରଚଣ୍ଡ ଉଦ୍ୟମ ତଥା ଅନ୍ୟ ଦିଗରେ ଏ ସବୁଠାରୁ ଦୂରେଇଯାଇ ବନ୍ଧନ-ମୁକ୍ତିର ଆନନ୍ଦରେ ପ୍ରମତ୍ତ ଏକ ସ୍ୱତନ୍ତ୍ର ଜୀବନର ସ୍ୱପ୍ନ ବସ୍ତୁତଃ ଏ ଉଭୟର ଦ୍ୱନ୍ଦ୍ୱ ମଧ୍ୟରେ ତାଙ୍କର ଆଦ୍ୟ ଯୌବନ ଅତିବାହିତ ହୋଇଯାଉଥିଲା । କୃଷ୍ଣଚନ୍ଦ୍ର ପରାଜୟ ବରଣ କରି ନିଜକୁ ସମ୍ବରଣ କରି ନେଇଥିଲେ । ପ୍ରାଚୀନ-ନବୀନର ସଂଘର୍ଷରେ ନବୀନର

ପ୍ରତୀଣଙ୍କୁ ହିଁ ପଛକୁ ହଟିଯିବାକୁ ପଡ଼େ । କାଳର ପ୍ରଶସ୍ତ ବକ୍ଷରେ ଏବେ ମଧ ଉତ୍କୀର୍ଣ୍ଣ ହୋଇ ରହିଛି, ଏଇ ଧରଣର ଅଜସ୍ର କାହାଣୀ । କପିଳବାସ୍ତୁର ସେଇ ସନ୍ୟାସୀ ରାଜପୁତ୍ର ସିଦ୍ଧାର୍ଥ ଏବଂ ଏ ଯୁଗର ସଂସାର-ବିରାଗୀ ହରେକୃଷ୍ଣ-ଏ ଉଭୟଙ୍କ ସାମାଜିକ ସ୍ଥିତି ଏବଂ ଜୀବନ ଦୃଷ୍ଟିର ଅଦ୍ଭୁତ ସାମଞ୍ଜସ୍ୟ ରହିଛି । ଗୃହପରିବାର ଭୋଗ ବିଳାସ ତଥା ଆଦର୍ଶ-ଏ ଉଭୟର ଦ୍ୱନ୍ଦ୍ୱରେ ଦ୍ୱନ୍ଦ୍ୱକ୍ଷେତ୍ରରେ ଆଦର୍ଶ ହିଁ ଜୟ ଲାଭ କରିଥିବାର ଦେଖାଯାଉଛି । ସିଦ୍ଧାର୍ଥଙ୍କର ଆଦ୍ୟ-ଜୀବନ ହେଉଛି ଲୌହ ପରଦା ଅନ୍ତରାଳର ଜୀବନ । ହରେକୃଷ୍ଣଙ୍କର ଜୀବନ ମଧ ସେଇଆ । ବନ୍ଧନମୁକ୍ତି ଏବଂ ବିଦ୍ରୋହ ଉଭୟ କ୍ଷେତ୍ରରେ ସମାନ ସ୍ଥିତିରେ ଆସିଛି । ସିଦ୍ଧାର୍ଥ ପୀଡ଼ିତ ଦୁଃଖ ଜର୍ଜରିତ ମାନବ ଜାତିର ମୁକ୍ତି ପାଇଁ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ଡ଼ଃ ମହତାବ ଏଥିପାଇଁ ନିଜର ସୀମିତ କ୍ଷେତ୍ରକୁ ହିଁ ବାଛି ନେଇଥିଲେ । ପାର୍ଥକ୍ୟ କେବଳ ଏତିକି ।

ଡ଼ଃ ମହତାବ ଅନ୍ତତଃ ବିବାହ କରି ପୂର୍ଣ୍ଣ ଗୃହସ୍ଥ ଜୀବନ ବରଣ କରିନେବା ପର୍ଯ୍ୟନ୍ତ କଦାପି ଅଭିଭାବକମାନଙ୍କର ଇଚ୍ଛା ବିରୁଦ୍ଧରେ ଯାଇ ନାହାନ୍ତି । ପାରମ୍ପରିକ ସଂସାରୀ ଜୀବନ ପାଇଁ ତାଙ୍କର କୌଣସି ଆଗ୍ରହ ପ୍ରକାଶ ପାଉ ନଥିଲା । ବରଂ ମାତାଙ୍କର ମୃତ୍ୟୁରେ ତାଙ୍କର ମନ କ୍ରମଶଃ ବୈରାଗ୍ୟ-ମୁଖୀ ହୋଇଉଠିଥିଲା । ତଥାପି ସେ ନିଜର ଇଚ୍ଛାକୁ ଗୁରୁତ୍ୱ ଦେଇ ନାହାନ୍ତି ବରଂ ସମୟ ସ୍ରୋତରେ ନିଜକୁ ଭସାଇ ଦେଇଛନ୍ତି । ଏଇ ଭଳି ଭାବରେ ଦେଖିବାକୁ ଗଲେ ତାଙ୍କର ପରମ୍ପରା ଆନୁଗତ୍ୟର ବହୁ ଦୃଷ୍ଟାନ୍ତ ମିଳିଯିବ । ସେହିଭଳି ଦୃଷ୍ଟାନ୍ତ ରହିଛି ତାଙ୍କର ଦୂରଦୃଷ୍ଟିର । ମାଟ୍ରିକ ପାସ୍ କରିବାପରେ ସାଧାରଣ ଗୃହସ୍ଥ ଜୀବନ ବରଣ କରିବା ଏବଂ ସାଧାରଣଙ୍କର କିଛି ନା କିଛି ସେବା କରିବା ପାଇଁ ନିଜକୁ ପ୍ରସ୍ତୁତ କରିବା ଏ ଉଭୟ ବ୍ୟାପାର ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ, ତହିଁରୁ ତାଙ୍କର ଦୂରଦୃଷ୍ଟିର ପରିଚୟ ମିଳିଥାଏ । କଲେଜ ଶିକ୍ଷା ହେଉଛି ଏଥି ନିମନ୍ତେ ଆତ୍ମ ପ୍ରସ୍ତୁତିର ପ୍ରଥମ ପାହାଚ ।

ସାମାଜିକ ଜୀବନର ଯେତେ ବୈଷମ୍ୟ, ଛାତ୍ରାବସ୍ଥାରୁ ତାହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଥିଲା, ତାଙ୍କର ପ୍ରଧାନ ଲକ୍ଷ୍ୟ । ପରମ୍ପରା ତାଙ୍କୁ ଶିକ୍ଷା ଦେଇଥିଲା, ସାମ୍ୟମୈତ୍ରୀ ଆଉ ପ୍ରୀତିର ମନ୍ତ୍ର । ପ୍ରଗତିର ସ୍ୱପ୍ନ ନେଇ ସେ କଳ୍ପନା କରିଥିଲେ ଏକ ଶ୍ରେଣୀହୀନ ଆଉ ଶୋଷଣମୁକ୍ତ ସମାଜର । ସାମନ୍ତତନ୍ତ୍ର ଭିତରୁ ସେ ଏଇ ଦୁର୍ଗତିର ପ୍ରକୃତ କାରଣ ଖୋଜି ବାହାର କରି ପାରିଥିଲେ । ତେଣୁ ସେ ଘୋଷଣା କରିଥିଲେ,''ଯେ ରାଜଶକ୍ତି ପ୍ରତିଭାକୁ ବିଶ୍ଳେଷଣ କରୁଛି, ସେ ରାଜଶକ୍ତି ମଧ ଲୋପ ପାଇଯିବ । ଏଇ ଦେଖାଯାଉଛି, ପ୍ରତିକ୍ରିୟାର ପ୍ରବଳ ସ୍ରୋତ ମାଡ଼ି ଆସୁଛି, ଭାସି ଯିବ ଏ ରାଜଶକ୍ତି ଓ ତା' ସଙ୍ଗେ ପ୍ରତିଭା ଉପରେ ଜନ୍ମଗତ ଦାବୀ-''(ରୂପାନ୍ତର) । ଜାତିବାଦର ଅସାରତା ପ୍ରମାଣ କରିବାକୁ ଯାଇ ସେ କହିଥିଲେ,'' କ୍ଷତ୍ରିୟ ଏକାକୀ ସମାଜର ରକ୍ଷାକର୍ତ୍ତା ହୋଇ ରହିବ ନାହିଁ, ବୈଶ୍ୟ ଏକାକୀ ଧନର ଅଧିକାରୀ ହୋଇ ରହିବ ନାହିଁ । ଶୂଦ୍ର ସେବାକାର୍ଯ୍ୟରେ ମନ ମାରି ରହିପାରିବ ନାହିଁ । ଶତସହସ୍ର ବର୍ଷର ପରିପୋଷିତ ବିଶ୍ୱାସକୁ ଭାଙ୍ଗି ଦେବାକୁ ଆସୁଛି ପ୍ରବଳ ବନ୍ୟା.... ବରଂ ଦେଶବ୍ୟାପୀ ବିପ୍ଳବ ହୋଇ ଦେଶ ଛାରଖାର ହୋଇଯାଉ, କିନ୍ତୁ କେତେକ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଅଧିକାର ଭୋଗ କରି ରହିବେ ଓ ଦେଶର ସାଧାରଣ ଜନତା ମନମାରି ଭାଗ୍ୟକୁ ଆଦରି ରହିବେ, ଏହା ହବ ନାହିଁ, ହବ ନାହିଁ । (ତତ୍ରୈବ)

ଏଇ ଉକ୍ତିରୁ ମହତାବ୍‌ଙ୍କର ପ୍ରଗତିବାଦୀ ଦୃଷ୍ଟିକୋଣର ପରିଚୟ ମିଳୁଛି । ଜଣେ ଦ୍ରଷ୍ଟା ରୂପରେ ସେ ଭବିଷ୍ୟତ୍ ଜୀବନର ଯେଉଁ ଚିତ୍ର କଳ୍ପନା କରିଥିଲେ, ତାହାର କେତେକାଂଶ ମାତ୍ର ସଫଳ ହୋଇଛି । ସାମନ୍ତତନ୍ତ୍ରର ପ୍ରାଧାନ୍ୟ ହ୍ରାସ ପାଇଛି ସତ୍ୟ, ତେବେ ରାଜନୈତିକ ଭାରତର ଯେଉଁ ନୂତନ ସାମନ୍ତମାନେ ଆତ୍ମପ୍ରକାଶ କରିଛନ୍ତି, ସେମାନେ ହିଁ ପ୍ରତିଭା ଉପରେ ନିଜର ବଂଶଗତ ଦାବୀକୁ ପ୍ରତିଷ୍ଠା କରିବାରେ ଲାଗିଛନ୍ତି । ପୂର୍ବ ସାମନ୍ତମାନେ ଏହା କରୁଥିଲେ ବାହୁ ବଳରେ । ନୂତନ ସାମନ୍ତମାନେ ଏତକ ହାସଲ କରୁଛନ୍ତି କୂଟ ବୁଦ୍ଧିରେ, ପଛ ଦ୍ୱାର ବାଟେ । ତାହା ହିଁ ହୋଇ ଯାଇଛି ଗଣତନ୍ତ୍ର ଶାସନର ବିଶେଷ ଧର୍ମ । ଦେଶରୁ ମନୁ ନିର୍ଦ୍ଦେଶିତ ଜାତିଭେଦ ଦୂର ହୋଇଛି । ତେବେ ଶ୍ରେଣୀ-ବୈଷମ୍ୟ ଅଧିକ ତୀବ୍ର ହୋଇଥିବାର ଦେଖାଯାଉଛି । ସୁଖ ସ୍ୱାଛନ୍ଦ୍ୟ ଓ ଅଧିକାର ସୁବିଧାବାଦୀ ଗୋଷ୍ଠୀ ମାଡ଼ି ବସିଛନ୍ତି । ସାଧାରଣ ଜନତା ପୂର୍ବଭଳି ଭାଗ୍ୟକୁ ଆଦରି କାଳ କାଟୁଛନ୍ତି । ଆମର ବିଶ୍ୱାସ ଶ୍ରେଣୀହୀନ ସମାଜ କଳ୍ପନାଟି ହିଁ ହେଉଛି ଏକ ସ୍ୱପ୍ନ ବିଳାସ । ମାର୍କ୍ସ ହୁଅନ୍ତୁ ବା ଲେନିନ୍ ହୁଅନ୍ତୁ, ରୁଷୋ ହୁଅନ୍ତୁ ବା ଭଲ୍‌ଟେୟାର୍ ହୁଅନ୍ତୁ, ଏମାନଙ୍କର ତତ୍ତ୍ୱ କଦାପି ସୃଷ୍ଟିରୁ ଏଇ ବୈଷମ୍ୟ ଦୂର କରିପାରିବ ନାହିଁ । ସୃଷ୍ଟିର ଆବହମାନ କାଳରୁ ତାହା ରହିଆସିଚି । ସୃଷ୍ଟିଥିବା ପର୍ଯ୍ୟନ୍ତ ତାହା ରହିଥିବ । ଶାରୀରିକ, ମାନସିକ, ଆର୍ଥିକ, ଶୈକ୍ଷିକ ବିଭିନ୍ନ ମାନଦଣ୍ଡରେ ଏଇ ଶ୍ରେଣୀ ସୃଷ୍ଟି ହୋଇଚାଲିଚି । ସାମନ୍ତତନ୍ତ୍ରର ବିଲୋପରେ ଏଇ ବୈଷମ୍ୟ ଦୂର ହୋଇଯିବ ନାହିଁ, ହୋଇ ନାହିଁ ମଧ । ଅଚିରେ ନୂତନ ସାମନ୍ତ ଗୋଷ୍ଠୀ ଆସି ଶୂନ୍ୟତାକୁ ପୂର୍ଣ୍ଣ କରି ଦେଇଛନ୍ତି । ପ୍ରକୃତିର ନିୟମରେ କୌଣସି ଶୂନ୍ୟତା ସ୍ଥାୟୀ ନୁହେଁ ।

ତଥାପି ଯୁଗେ ଯୁଗେ ଦ୍ରଷ୍ଟାମାନେ ଏହା ବିରୁଦ୍ଧରେ ସଂଗ୍ରାମ ଚଳାଇ ଆସିଛନ୍ତି । ମହତାବ୍ ଥିଲେ ଏଇ ଗୋଷ୍ଠୀର । ଆଗାମୀ-ଯୁଗର ସେ ଯେଉଁ ସ୍ୱପ୍ନ ଦେଖୁଥିଲେ, ସେଥିପାଇଁ ସାରାଜୀବନ ଧରି ଆନ୍ତରିକ ଭାବରେ ଉଦ୍ୟମ କରି ଯାଇଥିଲେ । ନିଜେ ଏକ ପ୍ରତିଷ୍ଠିତ ସାମନ୍ତ ପରିବାରର ପ୍ରତିନିଧି ହୋଇ ମଧ ସେ ଜମିଦାରୀ ଉଚ୍ଛେଦ ନିମନ୍ତେ ବଳିଷ୍ଠ ପଦକ୍ଷେପ ନେଇଥିଲେ ଏବଂ ଦେଶୀୟ ରାଜ୍ୟଗୁଡ଼ିକର ବିଲୁପ୍ତିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ବ୍ୟକ୍ତିଗତ ଭାବେ ଏହାଦ୍ୱାରା ସେ କେତେ ଦୂର କ୍ଷତିଗ୍ରସ୍ତ ହେଲେ, ସେ ବିଷୟରେ ତାଙ୍କର ଚିନ୍ତା ନଥିଲା । ସମୂହ କଲ୍ୟାଣ ହିଁ ଥିଲା ତାଙ୍କର ବ୍ରତ । ଆମେ ବ୍ୟକ୍ତିତ୍ୱ ଗଠନ ପ୍ରସଙ୍ଗରେ ଏଇ କଥା କହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି, ଲକ୍ଷ୍ୟଣୀୟ ବ୍ୟକ୍ତିତ୍ୱର ଅସାଧାରଣତ୍ୱ ସମ୍ପର୍କରେ ସୂଚନା ଦେବା । ସାଧାରଣ ମଣିଷ ତାର ବ୍ୟକ୍ତି ସ୍ୱାର୍ଥର ଗଣ୍ଡି ମଧ୍ୟରେ ଏ ଭଳି ସୀମାବଦ୍ଧ ହୋଇ ରହିଯାଏ ଯେ, ସୀମାହୀନ ଜନତାର ଭିଡ଼ ଭିତରୁ ତାକୁ ଖୋଜି ବାହାର କରିବା ସମ୍ଭବ ହୁଏ ନାହିଁ । ଏମାନଙ୍କର ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଖୋଜିବାର ତେଣୁ କୌଣସି ଅର୍ଥ ହୁଏ ନାହିଁ ।

ଆମେ ପ୍ରାୟ ଶୁଣୁ ଯେ ଡ଼ଃ ମହତାବ ପ୍ରଚଣ୍ଡ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ଏଇ ପ୍ରଚଣ୍ଡ ବ୍ୟକ୍ତିତ୍ୱର ପ୍ରକୃତ ସ୍ୱରୂପ କ'ଣ ? ଏହା କ'ଣ

ତାଙ୍କର ବିଦ୍ୟା, ବପୁ, ବିଭବ, ବାକ୍‌ରୀତି ବା ବସ୍ତ୍ର କିମ୍ବା ଆଉ କିଛି ? ଏହା ସତ୍ୟ ଯେ ଯେଉଁ ପାଞ୍ଚଟି 'ବ' କଥା ଆମେ ଏଠାରେ ଉଲ୍ଲେଖ କଲୁ, ସେ ସବୁ ତାଙ୍କର ଥିଲା ଏବଂ ଏ ସବୁ ତାଙ୍କର ବ୍ୟକ୍ତିତ୍ୱର ସହାୟକ ମଧ୍ୟ ହୋଇଥିଲା । ତେବେ ଏ ସବୁ ବ୍ୟକ୍ତିତ୍ୱର ବାହ୍ୟ ଧର୍ମ ମାତ୍ର ।

ସାଧାରଣ ଜୀବନର କୌଣସି ଲକ୍ଷ୍ୟ ନ ଥାଏ । ସୁଅ ମୁହଁର ପତର ଭଳି ଭାସୁ ଭାସୁ ସେ କେଉଁଠି ଗୋଟାଏ ଯାଗାଁ ପହଞ୍ଚିଯାଏ ଆଉ ଭାଗ୍ୟକୁ ଆଦରି ତାକୁ ହିଁ ସେ ତାର ଲକ୍ଷ୍ୟ ବୋଲି ଗ୍ରହଣ କରିନିଏ । ଅର୍ଥାତ୍ ଜୀବନ ସହିତ ଗୋଟାଏ ବୁଝାମଣା କରିନିଏ । ବୁଝାମଣାର ଅନ୍ୟନାମ ଜୀବନ ବୋଲି ତାକୁ କହିଦିଆଯାଏ । ମାତ୍ର ବ୍ୟକ୍ତିତ୍ୱଶାଳୀ ଲୋକଟି ଏ ସବୁଥିରୁ ନିଜକୁ ଦୂରେଇ ରଖେ । ଲକ୍ଷ୍ୟ ତା'ର ବହୁ ପୂର୍ବରୁ ସ୍ଥିର ଥାଏ । [illegible]ଇଆକୁ ଆଖିରେ ରଖି ସେ ପାଦେ ପାଦେ ଆଗେଇଥାଏ । ଜୀବନ ସହିତ ତାକୁ ବୁଝାମଣା କରିବାକୁ ପଡ଼େ ନାହିଁ, ବରଂ ଜୀବନ ତା' ସହିତ ବୁଝାମଣା କରିନିଏ । ଗୋଟିଏ ଛୋଟ ଦୃଷ୍ଟାନ୍ତ ଦେଇ ଆମେ ଏହାର ଯଥାର୍ଥତା ବୁଝାଇ ଦେବା । ଦୃଷ୍ଟାନ୍ତଟି ଦେବା ଡ଼ଃ ମହତାବଙ୍କ ଜୀବନରୁ । ମହତାବ ଜଣେ ଅତି ବିଚକ୍ଷଣ ଛାତ୍ର ଥିଲେ । ପଢ଼ାପଢ଼ିରେ ଠିକ୍ ମନ ଦେଇଥିଲେ, ଏ କ୍ଷେତ୍ରରେ ସେ ନିଶ୍ଚୟ ବିଶେଷ କୃତିତ୍ୱ ଦେଖାଇ ପାରିଥାଆନ୍ତେ । କଲେଜ ଶିକ୍ଷା ତାଙ୍କର ଲକ୍ଷ୍ୟ ପାଇଁ ଏକ ସହାୟକ ମାତ୍ର ଥିଲା । ତେଣୁ ଏଥିରେ ସେ କେବେ ନିଜର ଶକ୍ତି ସାମର୍ଥ୍ୟ ବା ଚିନ୍ତା ଖଟାଇ ନାହାନ୍ତି । ତଥାପି ସେ ମନ୍ଦରେ ଆଇ.ଏସ୍.ସି. ପାଶ୍ କରି ନାହାନ୍ତି । ବିଜ୍ଞାନ ପଢ଼ିଲେ ଏବଂ ତହିଁରେ କୃତିତ୍ୱ ଦେଖାଇବାକୁ ହେଲେ ନିୟମିତ ପଢ଼ିବାକୁ ହେବ । ସେଥିପାଇଁ ସମୟ ଦେଲେ ତାଙ୍କୁ ମୂଳ ଲକ୍ଷ୍ୟରୁ ଦୂରେଇ ଯିବାକୁ ପଡ଼ିବ । ସେଇଥିପାଇଁ ସେ ବିଜ୍ଞାନରୁ କଳା ବିଭାଗକୁ ଆସିଛନ୍ତି । ସେଇ ସମୟରେ ତାଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ ଦେଖାଯିବ ଯେ, ମହତାବ ସେତେବେଳେ ଛାତ୍ର କମ୍ ଆଉ ସମାଜ ସେବୀ ଅଧିକ । କେଉଁଠି ସରକାରୀ କର୍ମଚାରୀ କି ପୋଲିସ୍ ଯଦି ସାଧାରଣ ଲୋକଙ୍କ ଉପରେ ଜୁଲୁମ୍ କଲା, ତେବେ ସେ ବିଷୟରେ ତାଙ୍କର ଲେଖା ବାହାରୁଥିଲା ସେ କାଳର ପ୍ରସିଦ୍ଧ ପତ୍ରିକା 'ଉତ୍କଳ ଦୀପିକା'ରେ । ଏଥିପାଇଁ ତାଙ୍କୁ ଉଭୟ ନିନ୍ଦା ଏବଂ ପ୍ରଶଂସା ଶୁଣିବାକୁ ମିଳୁଥିଲା । ମାତ୍ର ସେଥିରେ ସେ ବିଚଳିତ ନଥିଲେ ।

ବ୍ୟକ୍ତିତ୍ୱ ଗଠନର ଅନ୍ୟ ଏକ ମାର୍ଗ ହେଉଛି, ନିଜପାଇଁ ଅଲଗା କିଛି ଚିନ୍ତା କରିବା, ଅଲଗା ବାଟରେ ଯିବା । ନିଜର ଅନ୍ତର୍ନିହିତ ଶକ୍ତି ସମ୍ପର୍କରେ ସଚେତନ ରହି ତାକୁ ଜାଗ୍ରତ କରାଇବା ନିମନ୍ତେ ଉଦ୍ୟମ କରିବା । ଅଲଗା ବାଟରେ ଯିବା ଅର୍ଥ ଠିକ୍ ଅବାଟରେ ଯିବା ନୁହେଁ । ସଂସ୍କୃତରେ ଗୋଟିଏ ବହୁ ଚର୍ଚ୍ଚିତ ନୀତିବାଣୀ ଅଛି । ତାହା ହେଉଛି 'ମହାଜନୋ ଯେନ ଗତଃ ସ ପନ୍ଥାଃ'- ଯେଉଁ ବାଟରେ ମହାପୁରୁଷମାନେ ଯାଇଛନ୍ତି, ସେଇ ହେଉଛି ପ୍ରକୃତ ବାଟ । ଦୃଷ୍ଟାନ୍ତ ତ ଆଖିଆଗରେ ଥାଏ । ଇତିହାସ, ପୁରାଣ, ଶାସ୍ତ୍ର ଏହିଭଳି ଅନେକ ବାଟର କଥା ଯୁଗଯୁଗରୁ କହି ଆସୁଛି । ଶାସ୍ତ୍ର କହୁଛି–

"ଆପଦାଂ କଥିତ ପନ୍ଥାଃ ଇନ୍ଦ୍ରିୟାଣାମସଂଯମଃ
ତଜ୍ଜୟ ସମ୍ପଦାମାର୍ଗ ଯେନେଷ୍ଟଂ ତେନ ଗମ୍ୟତାମ୍"

ମନ ଯାହା ଚାହୁଁଛି, ଇନ୍ଦ୍ରିୟ ଯେଉଁ ଆକାଂକ୍ଷାର ପରିତୃପ୍ତି ଚାହୁଁଛି, ସାଧାରଣତଃ, ତାହା ଅସଂଯମର ପଥ । ତାକୁ ଆୟତ୍ତ କରି ପାରିଲେ ହିଁ ପ୍ରକୃତ ବାଟର ସନ୍ଧାନ ମିଳେ । ସେଇ ହେଉଛି ପ୍ରକୃତ ବାଟ । ଏ ବିଷୟରେ ଡ଼ଃ ମହତାବ ଗୋଟିଏ ଛୋଟ ଦୃଷ୍ଟାନ୍ତ ଦେଇଛନ୍ତି । କଲେଜରେ ଦ୍ୱିତୀୟ ବର୍ଷରେ ଅଧ୍ୟୟନ କରୁଥିବା ବେଳର ଘଟଣା । ସେତେବେଳେ ମୋହନ ସି.ଆର୍.ଡ଼ି ନାଇଡ଼ୁ ବୋଲି ଜଣେ ଯୁବକ ସହିତ ତାଙ୍କର ପରିଚୟ ହେଲା । ସେ ତରୁଣମାନଙ୍କୁ ଆସନ, ପ୍ରାଣାୟାମ ଇତ୍ୟାଦି ଶିକ୍ଷାଦେଇ ସେମାନଙ୍କୁ ଭବିଷ୍ୟତ୍ ଜୀବନ ନିମନ୍ତେ ପ୍ରସ୍ତୁତ କରିବା ପାଇଁ ବାଟ ଦେଖାଉଥିଲେ । ଖୁବ୍ କମ୍ ଛାତ୍ର ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଶେଷକୁ ତାଙ୍କଠୁଁ ଶିଖିବା ପାଇଁ ରହିଲେ କେବଳ ନବକୃଷ୍ଣ ଚୌଧୁରୀ ଆଉ ଡ଼ଃ ମହତାବ୍ । ମହତାବ ସ୍ୱୀକାର କରିଛନ୍ତି, ଏହା କରିବା ଦ୍ୱାରା ନିଜ ଭିତରେ ଅନ୍ତର୍ନିହିତ ଶକ୍ତି ବଢ଼ାଇବା ପାଇଁ ଏକ ପ୍ରବଳ ଅଭିଳାଷ ଜାଗ୍ରତ ହୋଇଥିଲା । 'ମୁଁ ସାହସୀ', 'ମୁଁ ଦୃଢ଼', 'ମୁଁ ଜଣେ ବଡ଼ ମଣିଷ', 'ମୋ ଦ୍ୱାରା ଜଗତର ବହୁ ମହତ୍ କାର୍ଯ୍ୟ ସାଧିତ ହେବ' ଇତ୍ୟାଦି ଚିନ୍ତାର ଧାରା ସୃଷ୍ଟି ହୋଇଥିଲା ଏବଂ ସବୁଠାରୁ ବଡ଼ କଥା ହେଉଛି, ଯେଉଁ ବାଟରେ ଯିବାପାଇଁ ଡଃ ମହତାବ୍ ଚିନ୍ତା କରୁଥିଲେ ସେ ଦିଗରେ ଆଗେଇବା ପାଇଁ ଏ ସବୁ ଶିକ୍ଷା ସହାୟକ ହୋଇଥିଲା ।

ଛୋଟ ଘଟଣାଟିଏ । ମାତ୍ର ତା'ର ପ୍ରତିକ୍ରିୟା କେତେ ସୁଦୂରପ୍ରସାରୀ ତାହା ଏଇଥିରୁ ଜଣାଯାଇଥାଏ । କଲେଜରେ ସେତେବେଳେ ଅନେକ ଛାତ୍ର ଥିବେ । ବାଟ ବାଛିବା ପାଇଁ ଏ ସୁଯୋଗ ସମସ୍ତଙ୍କର ଥିଲା । ମାତ୍ର ତା'ର ସଦୁପଯୋଗ କଲେ ମାତ୍ର ଦୁଇଜଣ । ନୂଆ କିଛି ଗ୍ରହଣ କରିବା ପାଇଁ ଏ ଦୁହିଁଙ୍କର ମନ ପ୍ରସ୍ତୁତ ହୋଇଥିଲା । ଅନ୍ୟମାନେ ପାରମ୍ପରିକ ବାଟରେ ଚାଲିବାକୁ ଠିକ୍ କରିଥିବା ବେଳେ, ଏ ଦୁହେଁ ଟିକିଏ ଅଲଗା ବାଟ ବାଛି ନେଲେ । ମନର ଯେଉଁ ପ୍ରସ୍ତୁତି, ତାହା ଘଟିଥାଏ ପୂର୍ବସଂସ୍କାର ବଶତଃ । ଡଃ ମହତାବ ହୁଅନ୍ତୁ କିମ୍ବା ଚୌଧୁରୀ ହୁଅନ୍ତୁ, ଯେମିତି ଯେଉଁ ପରିବେଶରୁ ଆସିଥିଲେ, ତହିଁରେ [illegible]ବ୍ୟକ୍ତିସ୍ୱାର୍ଥ ସହିତ ଅନ୍ୟ ପଚାରଙ୍କ ସ୍ୱାର୍ଥ କଥା ମଧ୍ୟ ଚିନ୍ତା କରିବାକୁ ପଡ଼ୁଥିଲା । ଉଭୟେ ସମାଜର ପ୍ରତିନିଧି ଥିଲେ । ସାଧାରଣତଃ ଏମାନେ ବ୍ୟକ୍ତିସ୍ୱାର୍ଥ ସମ୍ପର୍କରେ ଅତି ସଚେତନ ଥାଆନ୍ତି । ମାତ୍ର ସେମାନଙ୍କ ଭିତରେ ଅଳ୍ପ କିଛି ଲୋକ ଯେଉଁମାନେ ସମୂହ କଲ୍ୟାଣ କଥା ଚିନ୍ତା କରନ୍ତି । ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର ନିର୍ଦ୍ଦୋଷ ସୀତାଙ୍କୁ ବନବାସ ଦେବା ହେଉଛି ଏହି ଚିନ୍ତାର ଏକ ପ୍ରସାରିତ ରୂପ । ଯେଉଁମାନେ ବ୍ୟକ୍ତି-ସ୍ୱାର୍ଥକୁ ନେଇ ମଗ୍ନ ରହିଥିବେ, ସେମାନେ ସ୍ରୋତର ଅନୁକୂଳରେ ନିଜକୁ ଭସାଇ ଦିଅନ୍ତି ଏବଂ ଟିକେ ସମୟର ସ୍ରୋତରେ କାହିଁ କୁଆଡ଼େ ଭାସିଯାଆନ୍ତି । ଇତିହାସ ଏମାନଙ୍କ ଖବର ରଖେନାହିଁ । ମାତ୍ର ସେଇ ଅବସ୍ଥାରେ ଥାଇ ଯେଉଁମାନେ ସ୍ରୋତର ବିପରୀତରେ ଯିବାକୁ ନିଜର ଲକ୍ଷ୍ୟ ରୂପରେ ଗ୍ରହଣ କରି ନିଅନ୍ତି, ସେମାନଙ୍କୁ ନେଇ ଇତିହାସ ସୃଷ୍ଟି ହୁଏ । ଲକ୍ଷ ଜୀବନର ବିନ୍ଦୁ ବିନ୍ଦୁ ଯୋଗ ବାଗି ହୋଇପଡ଼ନ୍ତି । ଡଃ ମହତାବ ଥିଲେ ଏହି ଶ୍ରେଣୀର ।

ବ୍ୟକ୍ତିତ୍ୱ ସହିତ ନେତୃତ୍ୱର ଅବିଚ୍ଛେଦ୍ୟ ସମ୍ପର୍କ ରହିଛି । ବ୍ୟକ୍ତିତ୍ୱ ଥିବାରୁ ନେତୃତ୍ୱ ଆସେ କିମ୍ବା ନେତୃତ୍ୱର ଅଧିକାର ଆସିଗଲେ ବ୍ୟକ୍ତିତ୍ୱ ଆପେ ଆପେ ଆସିଯାଏ, ଏହା ଏକ ଅଛିଣ୍ଡା ପ୍ରଶ୍ନ । ତେବେ ଏଥିରେ ସନ୍ଦେହ ନାହିଁ ଯେ, ଉଭୟ ଅନ୍ୟୋନ୍ୟ ନିର୍ଭରଶୀଳ । ପରିବେଶ, ଶିକ୍ଷା, ଆଦର୍ଶ- ଏଥିପାଇଁ ପ୍ରୟୋଜନ ସତ୍ୟ, ତେବେ ଅପରିହାର୍ଯ୍ୟ ନୁହେଁ । ଏ ସବୁ ନଥାଇ ମଧ୍ୟ କୋରାପୁଟର ନିଘଞ୍ଚ ଜଙ୍ଗଲ ମଧ୍ୟରୁ ଲକ୍ଷ୍ମଣ ନାୟକ

ପାଞ୍ଚହଜାର ଲୋକଙ୍କର ନେତା ହୋଇ ବାହାରି ଆସିପାରନ୍ତି । ସାମାନ୍ୟ ଏକ୍ସ ମେଟ୍ରିକ ପିଲା ଦେଶର ଶାସକ ହୋଇପାରନ୍ତି । ଦୃଷ୍ଟାନ୍ତ ଏମିତି ବହୁତ ଅଛି । ତେବେ ଶିକ୍ଷା ଆଦି ବ୍ୟକ୍ତିତ୍ୱକୁ ପରିମାର୍ଜିତ କରିଥାଏ । ଏକଥା କିନ୍ତୁ ଅସ୍ୱୀକାର କରିହେବ ନାହିଁ ।

ଡଃ. ମହତାବଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଦୀର୍ଘକାଳ ଧରି ଓଡ଼ିଶାକୁ ନେତୃତ୍ୱ ଦେଇଥିଲା । ଆଧୁନିକ ଓଡ଼ିଶାର ରୂପକାରମାନଙ୍କ ମଧ୍ୟରେ ତାଙ୍କର ଏକ ଦର୍ଶନୀୟ ସ୍ଥାନ ଥିଲା । ଓଡ଼ିଶା ପାଇଁ ତାଙ୍କର ଅନେକ ସ୍ୱପ୍ନ ଥିଲା । ଶୁଣାଯାଏ ଯେ, କେନ୍ଦ୍ରରୁ ଋଣ ଆଣି ଓଡ଼ିଶାରେ ଯେତେବେଳେ ହୀରାକୁଦ ଜଳ-ବିଦ୍ୟୁତ୍ ପ୍ରକଳ୍ପର ନିର୍ମାଣ କରିବାର ପ୍ରସ୍ତାବ ଉଠିଲା, ସେତେବେଳେ ଅନେକେ ଆପତ୍ତି କରିଥିଲେ । ଓଡ଼ିଶା ଭଳି ଏକ ଦରିଦ୍ର ରାଜ୍ୟ ଶହେ କୋଟି ଟଙ୍କାର ଋଣ ଭାର କଦାପି ସମ୍ଭାଳି ପାରିବ ନାହିଁ ବୋଲି କୁହାଯାଉଥିଲା । ଡଃ ମହତାବ୍ ଧୈର୍ଯ୍ୟ ଧରି ସମସ୍ତଙ୍କ କଥା ଶୁଣିବା ପରେ କୁଆଡ଼େ କହିଥିଲେ, 'ଟଙ୍କା ସୁଝି ନପାରିଲେ ନେହେରୁ ବନ୍ଧକୁ ଭାଙ୍ଗି ଦିଲ୍ଲୀ ନେଇଯିବେ ନା କ'ଣ !'' ସମସ୍ୟା ଯେତେ ଉତ୍କଟ ହେଉ ବା କାହିଁକି, ତାହାର ତାତ୍କାଳିକ ସମାଧାନ ହେଉଛି ବଳିଷ୍ଠ ନେତୃତ୍ୱର ଲକ୍ଷଣ । ପ୍ରତ୍ୟୁତ୍ପନ୍ନମତିତ୍ୱ ବଳରେ ସମାଧାନର ଏକ ସର୍ବମାନ୍ୟ ସୂତ୍ର ତତ୍କ୍ଷଣାତ୍ ବାହାର କରି ନପାରିଲେ, ଲୋକଙ୍କର ପତିଆରା ଆସେ ନାହିଁ । ନେତୃତ୍ୱରେ ସଂକଟ ଦେଖାଦିଏ । ଏ ସମ୍ପର୍କରେ ଏକ ଦୃଷ୍ଟାନ୍ତ । ୧୯୨୧ ମସିହାର ଘଟଣା । ଅସହଯୋଗ ଆରମ୍ଭ ହୋଇ ସାରିଥାଏ । ଡଃ ମହତାବ ବାଲେଶ୍ୱରରେ ସ୍ୱରାଜ୍ୟ ମନ୍ଦିର ସ୍ଥାପନ କରି ଏହାର ବାର୍ତ୍ତା ପ୍ରଚାର କରୁଥାଆନ୍ତି ଏବଂ ଆଉ କିଛି ରଚନାତ୍ମକ କାର୍ଯ୍ୟ ମଧ କରୁଥାଆନ୍ତି । ଏହି ସମୟରେ ଦିନେ ଡଃ ମହତାବ୍ ତନ୍ତ ଚଳାଉଥିବା ସମୟରେ ଜଣେ ଗାଡ଼ିବାଲା ବିଲାତି ଲୁଗା ବୋହି ସହର ଭିତରକୁ ଆସୁଥିବାର ଶୁଣାଗଲା । କାଳବିଳମ୍ବ ନକରି ସେ ଗାଡ଼ିଆଗରେ ଯାଇ ଶୋଇ ପଡ଼ିଲେ ଏବଂ ଅନ୍ୟମାନେ ତାଙ୍କୁ ଅନୁସରଣ କଲେ । ସମସ୍ତଙ୍କୁ ଜେଲ୍ ଭୋଗିବାକୁ ପଡ଼ିଲା ସତ୍ୟ, ମାତ୍ର ସହରକୁ ବିଲାତି ଲୁଗା ଆମଦାନୀ ବନ୍ଦ ହୋଇଗଲା ।

ଡଃ ମହତାବ୍‌ଙ୍କର ପ୍ରତ୍ୟୁତ୍ପନ୍ନମତିତା ପ୍ରମାଣ କରିବା ପାଇଁ ଏହି ଛୋଟ ଘଟଣାଟିର ଉଲ୍ଲେଖ କରାଗଲା । ନେତୃତ୍ୱ ପାଇଁ ଏହା ଅପରିହାର୍ଯ୍ୟ । ଏହା କେହି କାହାକୁ ଶିଖାଏ ନାହିଁ । ଅନୁଭୂତି, ଅଭିଜ୍ଞତା, ପର୍ଯ୍ୟବେକ୍ଷଣୀ-ଶକ୍ତି, ବିଚାର ଆଲୋଚନା ପ୍ରଭୃତି ଦ୍ୱାରା ଅର୍ଜନ କରାଯାଏ । କେବଳ ସେତିକି ନୁହେଁ, ବାଙ୍ମୟ ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ନଥିଲେ ମଧ, ଏହି ଗୁଣଟିକୁ ହାସଲ କରାଯାଇପାରେ ନାହିଁ । ଯେଉଁମାନଙ୍କର ମନ ସଦା ଅସ୍ଥିର, ଯେଉଁମାନେ ପ୍ରକୃତ ଦୃଷ୍ଟିରୁ ଚଞ୍ଚଳ, ସେମାନେ ସାଧାରଣତଃ ଏହି ଶକ୍ତିର ଅଧିକାରୀ ହୋଇପାରନ୍ତି ନାହିଁ । ସାଧାରଣ ମଣିଷର ଚିନ୍ତା-ଶକ୍ତି ସୀମାବଦ୍ଧ । ଏକାଥରେ ସେ ଅନେକ ଗୁଡ଼ିଏ ସମସ୍ୟାକୁ ନେଇ ଚିନ୍ତା କରିପାରେ ନାହିଁ । 'ଅଷ୍ଟାବଧାନୀ' ବୋଲାଇବା ସମ୍ମାନଜନକ ହୋଇପାରେ, ମାତ୍ର ତାହା ଆଦୌ ସୁଲଭ ନୁହେଁ । ତେବେ ଯେଉଁମାନେ ସାଧାରଣ ଜୀବନରେ ରହିବେ, ସେମାନେ କଷ୍ଟସାଧ ହୋଇଥିଲେ ମଧ ଏହାକୁ ଆୟତ୍ତ କରିବା ନିମନ୍ତେ ଚେଷ୍ଟା କରିବେ । ମହାତ୍ମାଗାନ୍ଧୀ କହିଥିଲେ, ''ଅନେକ ଗୁଡ଼ାଏ ବିଷୟ ଭାବନାହିଁ । ଗୋଟିଏ ବିଷୟ ଭାବ ଓ ତାକୁ କାମରେ ପରିଣତ କର ।'' ଡଃ ମହତାବ ଏହାକୁ ଧ୍ରୁବ ବାକ୍ୟ ରୂପରେ ଗ୍ରହଣ କରିନେଇ ଆଜୀବନ ପାଳନ କରିଥିଲେ । ଏହା ଦ୍ୱାରା ତାଙ୍କର କର୍ମଜୀବନ ଯଥାସମ୍ଭବ ସ୍ଥିରତାପୂର୍ଣ୍ଣ ରହୁଥିଲା ।

ଡଃ ମହତାବଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ଆଲୋଚନା କରି ଆମେ ଏଠାରେ ତାହା ଯେ ନେତୃତ୍ୱ ନିମନ୍ତେ ସମ୍ପୂର୍ଣ୍ଣ ଉପଯୋଗୀ, ଏହା ଦେଖାଇବାକୁ ଚେଷ୍ଟା କରିଛୁ । ଆଲୋଚନାରୁ ଏହା ପ୍ରମାଣିତ ହୋଇଛି ଯେ, ବ୍ୟକ୍ତିତ୍ୱ ବା ନେତୃତ୍ୱ କୌଣସି ଜନ୍ମଜାତ କିମ୍ବା ବଂଶଗତ ବ୍ୟାପାର ନୁହେଁ । ଏହା ହେଉଛି ଜୀବନର ଏକ ସ୍ୱତନ୍ତ୍ରଧାରା, ଯାହା ନିଜର ଆଦର୍ଶ ପାଇଁ ମଣିଷକୁ ସ୍ୱାର୍ଥପର କରିଦିଏ । ଯେ ପର୍ଯ୍ୟନ୍ତ ମଣିଷ ପ୍ରଚଳିତ ଧାରା ବିପକ୍ଷରେ ବିପ୍ଳବ କରିବାକୁ ନ ଶିଖିଛି, ସେ ପର୍ଯ୍ୟନ୍ତ ତାହାର ବ୍ୟକ୍ତିତ୍ୱ ଉଲ୍ଲେଖଯୋଗ୍ୟ ହୋଇ ପାରିବନାହିଁ କିମ୍ବା ନେତୃତ୍ୱରେ ତାହାର ଅଧିକାର ଆସିବନାହିଁ । ଡଃ ମହତାବ ଠାଏ ଲେଖିଛନ୍ତି, ''ପ୍ରଣୟ ପାଇଁ ମନଅଛି, ମାତ୍ର ସୁବିଧା ନାହିଁ ଏପରି ଲୋକ ଦୟନୀୟ ''(ଗୁପ୍ତପ୍ରଣୟ) । ପୃଥିବୀରେ କିନ୍ତୁ ଏହି ଭଳି ଲୋକଙ୍କର ସଂଖ୍ୟା ବେଶୀ । ପଦେ ପଦେ ସାଲିସ୍ କରୁକରୁ ତାଙ୍କର ଜୀବନ କଟିଯାଏ । ସେମାନେ ପେଟର କଥାକୁ ପାଟିରେ ରୂପ ଦେଇ ପାରନ୍ତି ନାହିଁ, ଅର୍ଥାତ୍ ଆମୃତ୍ୟୁ ଏକ ଛଳନାପରକ ଦ୍ୱୈତ-ଜୀବନ ଜିଉ ଥାଆନ୍ତି । ବ୍ୟକ୍ତିତ୍ୱ-କାମୀ ଲୋକ ସାଲିସ୍ ବୁଝେ ନାହିଁ, ବୁଝାମଣା କରେ ନାହିଁ, ଆବେଗରେ ଭାସିଯାଏ ନାହିଁ, ଅଶ୍ରୁରୋମାଞ୍ଚ ପୁଲକରେ ଗଦ୍‌ଗଦ୍ ହୋଇ ଉଠେ ନାହିଁ । ବରଂ ନିଜ ଆଦର୍ଶରେ ସ୍ଥିର ରହି ପ୍ରତିକୂଳତା ବିରୁଦ୍ଧରେ ଲଢ଼ି ଲଢ଼ି ମନ୍ଥର ଗତିରେ ଆଗକୁ ବଢୁଥାଏ । ଏ ଦୃଷ୍ଟିରୁ ସେ ହେଉଛି ଜଣେ ତପସ୍ୱୀ, ସାଧକର ନିନ୍ଦା-କଣ୍ଟକିତ ପଥରେ ତା'ର ନିତ୍ୟ ଯାତ୍ରା । ତେବେ ଆଶ୍ୱାସନାର ବିଷୟ, ସେଇ ବାଟରେ ଚାଲି ସେ ଯେଉଁ ସଫଳତା ଲାଭ କରେ, ତା'ର ଫଳ ଭୋଗ କରନ୍ତି ସମସ୍ତ ମାନବ ସମାଜ । ଡଃ ମହତାବ୍ ଥିଲେ ଏଭଳି ଜଣେ ସାଧକ । ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ସହିତ ବଳିଷ୍ଠ ନେତୃତ୍ୱର ଯେଉଁ ଦୁର୍ଲଭ ସମନ୍ୱୟ ତାଙ୍କଠାରେ ହୋଇଥିଲା, ନବ-ଉତ୍କଳ ନିର୍ମାଣରେ ତାହାର ଅବଦାନ ଏ ଜାତି କସ୍ମିନ୍ କାଳେ ଭୁଲିବ ନାହିଁ ।

*ତାରାମଣି ନିବାସ, ତେଲେଙ୍ଗା ସାହି, କଟକ-୮*

• • •

# ମହତାବଙ୍କ ମହତାବୀ ପଣିଆ

• ଶ୍ରୀ ଫକୀର ହରିଚନ୍ଦନ

ଉତ୍କଳ କେଶରୀ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱ ଓଡ଼ିଶାରେ ଅପ୍ରତିଦ୍ୱନ୍ଦ୍ୱୀ ଥିଲା । କିନ୍ତୁ ଏହି ନେତୃତ୍ୱ ସହିତ ନିଜ କାଳଜୟୀ ବ୍ୟକ୍ତିତ୍ୱର ପ୍ରତିଦ୍ୱନ୍ଦ୍ୱିତା ପ୍ରତିପାଦିତ ହୋଇଥିଲା-ତାଙ୍କର ମହାନ୍ ଜାତୀୟତାବୋଧ ପ୍ରଣୋଦିତ ମହାନୁଭବତାରେ ଏବଂ ଜାତୀୟ ସ୍ୱାର୍ଥ ସିଦ୍ଧି ପାଇଁ ସାମଗ୍ରିକଭାବେ ଉତ୍ସର୍ଗୀକୃତ କର୍ମ ପ୍ରବାହରେ । ନିଜ ନେତୃତ୍ୱ ସହିତ ନିଜ ବ୍ୟକ୍ତିତ୍ୱର ପ୍ରତିଦ୍ୱନ୍ଦ୍ୱିତା-ଏପରି କହିବାକୁ ଅସ୍ୱାଭାବିକ ଏବଂ ଶୁଣିବାକୁ ଉଦ୍ଭଟ ବୋଧହୁଏ । କିନ୍ତୁ ତାହା ହିଁ ଥିଲା ମହତାବଙ୍କ ଜୀବନରେ ବହୁଧା ପ୍ରତିପାଦିତ ନଗ୍ନ ବାସ୍ତବତା । ସାହିତ୍ୟ, ସଂସ୍କୃତି, ସେବା, ସଙ୍ଗଠନ, ସାମ୍ବାଦିକତା ଓ ରାଜନୀତି ଆଦି ବିଭିନ୍ନ କ୍ଷେତ୍ରରେ ସୁଦୂର ପ୍ରସାରିତ ତାଙ୍କର ଜୀବନ ଦର୍ଶନ ଥିଲା ଏକ ବିଶାଳ ମହାକାବ୍ୟ । ସ୍ଥାନ କାଳ ପାତ୍ର ନିର୍ବିଶେଷରେ ସେ ମହାକାବ୍ୟର ପ୍ରଭାବ କାଳଜୟୀ । ତେଣୁ ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆଜାତି ବଞ୍ଚିଥିବ, ସେତେଦିନ ପର୍ଯ୍ୟନ୍ତ ସେ ମହାକାବ୍ୟର ଆଲୋଚନା ଓ ପର୍ଯ୍ୟାଲୋଚନାର ପରିସମାପ୍ତି ଘଟିବ ନାହିଁ ।

ବହୁ ଦିଗରେ ସଂପ୍ରସାରିତ ଡ଼କ୍ଟର ମହତାବଙ୍କର ବହୁମୁଖୀ ପ୍ରତିଭାର ମୁଖ୍ୟତଃ ଚାରିଗୋଟି ଦିଗ ବିଶେଷଭାବେ ଜନଜୀବନ ଉପରେ ସୁପ୍ରଭାବ ବିସ୍ତାର କରିଥିଲା । ପୂର୍ବ ଦିଗରେ ଥିଲା ତାଙ୍କର ଜୀବନ ବ୍ୟାପୀ ଦେଶସେବା-ଦେଶ ମାତୃକାର ସେବା ପାଇଁ ରାଜଭୋଗତ୍ୟାଗ ଏବଂ ବିଦେଶୀଶାସନ କବଳରୁ ଭାରତ ମାତାର ମୁକ୍ତି ପାଇଁ ଉଭୟ ଦୈହିକ ଓ ମାନସିକ ସ୍ତରରେ ସଂକଳ୍ପବଦ୍ଧ ସାଧନା ଓ ସଂଗ୍ରାମ । ସେହି ସାଧନା ଓ ସଂଗ୍ରାମର ସୁଦୃଢ଼ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇଥିଲା ତାଙ୍କର ବଳିଷ୍ଠ ଓ ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ ଏବଂ ସେ ନେତୃତ୍ୱ ଥିଲା ତାଙ୍କ ରାଜନୈତିକ ଜୀବନାକାଶରେ ଦୀପ୍ତିମନ୍ତ ସୂର୍ଯ୍ୟ ।

ଉତ୍ତର ଦିଗରେ ଥିଲା ତାଙ୍କର କାଳଜୟୀ ସାରସ୍ୱତ ପ୍ରତିଭାର ଅମ୍ଳାନ ଧ୍ରୁବତାରା, ଯାହା ଯୁଗ ଯୁଗ ପାଇଁ ଅମ୍ଳାନ ହୋଇ ରହିଥିବ । କବିତା, ଗଳ୍ପ, ପ୍ରବନ୍ଧ, ଉପନ୍ୟାସ ଓ ନାଟକ ଇତ୍ୟାଦି ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା । ରାଜନୈତିକ ଜୀବନର ସଂଘର୍ଷ ଓ ଝଡ଼ଝଞ୍ଜାରେ ଆନ୍ଦୋଳିତ ପ୍ରତ୍ୟେକଟି ମୁହୂର୍ତ୍ତର ପ୍ରତିକୂଳ ପ୍ରଭାବ ସାରସ୍ୱତ ସାଧନା କ୍ଷେତ୍ରରେ ବ୍ୟାଘାତ ସୃଷ୍ଟି କରିବା ସ୍ୱାଭାବିକ ଥିଲା । କିନ୍ତୁ ମହତାବଙ୍କ ଜୀବନରେ ସେଇ ସ୍ୱାଭାବିକତା ମଧ୍ୟରେ ଧାରାବାହିକ ସାହିତ୍ୟ ସେବାଭଳି ଏକ ଅସ୍ୱାଭାବିକ ସାଧନାପୁଷ୍ଟ ସୁଫଳ ସମ୍ଭବପର ହୋଇଥିଲା; ରାଜନୈତିକ ଆବର୍ଜନାପୂର୍ଣ୍ଣ ଗଭୀର ପଙ୍କ ଭିତରୁ ଫୁଟି ଉଠିଥିଲା ସଦ୍ୟ ସୁଶୋଭନ ତାଙ୍କର ସାରସ୍ୱତ-ସରୋଜ, ଆଉ ସେହି ସଦ୍ୟ ସାରସ୍ୱତ ସରୋଜର ସୁରଭିତ କେଶର ମଧ୍ୟରେ ପୂରି ରହିଥିଲା ଶ୍ରୀ-ମଲ୍ଲିକ୍ବଳି ବହୁ ମାନସ ମନ୍ଥନ ନିର୍ଗତ ମଧୁକୋଷ ।

ଦକ୍ଷିଣ ଦିଗରେ ପ୍ରବାହିତ ହେଉଥିଲା ଡ଼କ୍ଟର ମହତାବଙ୍କ [illegible] ଜୀବନର ଏକ ଶାଶ୍ୱତ ପ୍ରବାହ । ପ୍ରୟାଗ କ୍ଷେତ୍ରରେ ଗଙ୍ଗା-ଯମୁନା-ସରସ୍ୱତୀର ପବିତ୍ର ସଂଯୋଗ ପରି ସେ ତାଙ୍କର ଶୁଦ୍ଧ ସାରସ୍ୱତ ସଂକେତବାହୀ ଶୁଭ୍ର ପ୍ରବାହ ସହିତ ନିଷ୍ପାପ ସାହିତ୍ୟ ସେବାର [illegible] ସବୁଜ ପ୍ରବାହ ଏବଂ କୁଟିଳ ରାଜନୀତିର ପଙ୍କିଳ ପ୍ରବାହକୁ ଅପୂର୍ବ ଆନ୍ତରିକତା ଓ ନିପୁଣତାର ସହିତ ଏକତ୍ର ସଂଯୋଗ କରି ଏକ ଅଭିନବ ପ୍ରୟାଗ-ପ୍ରବାହର ମହାତୀର୍ଥ ସୃଷ୍ଟି କରିଦେଲେ ଏବଂ ମହାନଦୀର ବିପୁଳ ଜଳ ପ୍ରବାହକୁ ହୀରାକୁଦ ନଦୀବନ୍ଧ ଯୋଜନାରେ ବାନ୍ଧି ରଖିବା ପରି ସେ ତାଙ୍କର ସାମ୍ବାଦିକତା, ସାହିତ୍ୟ ଓ ରାଜନୀତିର ସମ୍ମିଳିତ ମହାପ୍ରବାହକୁ ବାନ୍ଧି ରଖିବା ପାଇଁ ପ୍ରଜାତନ୍ତ୍ର ଅନୁଷ୍ଠାନ ଭଳି ଏକ ସୁପରିକଳ୍ପିତ ବହୁମୁଖୀ ବିକାଶ ଯୋଜନାର ବନ୍ଧ ବାନ୍ଧି ଦେଲେ । ସେ ଯୋଜନାର ନୂତନ ପ୍ରବାହ ଉତ୍କଳର ବହୁ ନୀରସ ଦିଗକୁ ସରସ କରିଦେଲା, ଜନଜୀବନ କ୍ଷେତ୍ରରେ ବହୁ ସବୁଜ ସମ୍ଭାରର ସମାବେଶ ସୃଷ୍ଟି କରି ଦେଲା । ବସ୍ତୁତଃ ଓଡ଼ିଶା ପାଇଁ ତାହା ଏକ ବହୁମୁଖୀ ପ୍ରତିଭାର ଉତ୍ପାଦନ-କେନ୍ଦ୍ରରେ ପରିଣତ ହୋଇଗଲା; ରାଜନେତାମାନେ ଗଢ଼ାହେଲେ ସେଇଠି, ସାହିତ୍ୟିକ ଓ କଳାକାରମାନେ ଉଦ୍ଦୀପିତ ହେଲେ ସେଇଠି ଏବଂ ସାମ୍ବାଦିକମାନେ ତାଲିମପ୍ରାପ୍ତ ହେଲେ ସେଇଠି । ସୁତରାଂ ସେଇ ବହୁମୁଖୀ ବିରଳ ପ୍ରତିଭା ବିକାଶର ପୁଣ୍ୟ ପୀଠରେ ହିଁ ମହତାବଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ତାଙ୍କ ନିଜର ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ ସହିତ ପ୍ରତିଦ୍ୱନ୍ଦ୍ୱିତାର ସୂତ୍ରପାତ ହେଲା । ସେ କେନ୍ଦ୍ରରୁ ଉତ୍ପାଦିତ ତାଙ୍କର ପଟ୍ଟଶିଷ୍ୟ ରାଜନେତାମାନେ ପରବର୍ତ୍ତୀକାଳରେ ତାଙ୍କ ନେତୃତ୍ୱ ପ୍ରତି ଯେଉଁ ଯେତିକି ଆହ୍ୱାନ ଦେଇ ଚାଲିଲେ, ନିଷ୍ପାପର ସାମ୍ବାଦିକତା ଓ ସାହିତ୍ୟ ସାଧନା ବଳରେ ତାଙ୍କର ବିରଳ ବ୍ୟକ୍ତିତ୍ୱ ସେତିକି ସେତିକି ଉଦ୍ଭାସିତ ହୋଇ ବଢ଼ି ଚାଲିଲା । ସୁତରାଂ "ମାନବିକତାର ଶ୍ରେଷ୍ଠ ସମ୍ପଦ ରୂପେ ବିବେଚିତ ବ୍ୟକ୍ତିତ୍ୱର ସୁପ୍ରତିଷ୍ଠା ପାଇଁ ନେତୃତ୍ୱ ବିପନ୍ନ ହେଉ ପଛେ ନେତୃତ୍ୱର ନିରାପତ୍ତା ପାଇଁ ବ୍ୟକ୍ତିତ୍ୱ ବିପନ୍ନ ନହେଉ"-ଏହା ଥିଲା ମହତାବଙ୍କର ମହତାବୀ ପଣିଆ, -ତାଙ୍କର ନିଜସ୍ୱ ସ୍ୱତନ୍ତ୍ରତା ।

ଡକ୍ଟର ମହତାବଙ୍କର ପ୍ରମୁଖ ଚୌମୁଖୀ ପ୍ରତିଭାର ସର୍ବୋତ୍କୃଷ୍ଟ ଦିଗ ପ୍ରତିଫଳିତ ହୋଇଥିଲା ତାଙ୍କର ଐତିହାସିକ ଜୀବନ ଦର୍ଶନରେ । ପଶ୍ଚିମ ଦିଗ୍‌ବଳୟରେ ପ୍ରତିଭାତ ତାଙ୍କର ବିପୁଳ ଐତିହାସିକ ପ୍ରତିଭାର ପଟାନ୍ତର ନଥିଲା । ସାତତାଳ ପଙ୍କତଳେ ପୋତି ହୋଇ ପଡ଼ିଥିବା ଗଙ୍ଗାଠାରୁ ଗୋଦାବରୀ ଯାଏଁ ପରିବ୍ୟାପ୍ତ ପ୍ରାଚୀନ ଉତ୍କଳ ଅଥବା ପ୍ରାଚୀନ କଳିଙ୍ଗର ଅବଲୁପ୍ତ ପ୍ରାୟ ଇତିହାସର ପୁନରୁଦ୍ଧାର କରି ସେ ସୁପ୍ତ ଓଡ଼ିଆ ଜାତିର ପ୍ରାଣତନ୍ତ୍ରୀରେ ଅପୂର୍ବ ଜାଗରଣ ଆଣି ଦେଇଥିଲେ, ଏ ଜାତିର ସମ୍ମୁଖରେ ସଜାଇ ଦେଇଥିଲେ ଗୌରବମୟ ପ୍ରାଚୀନ ଐତିହାସିକ ବିଭବର ସୁବିଶାଳ ବିପଣି-ବିଥୀ, ମହାକାଳର ବିସ୍ମୃତିଗର୍ଭରୁ [illegible]

ଏ ଜାତିର ସ୍ମୃତିପଟରେ ଆଙ୍କି ଦେଇଥିଲେ ପୂର୍ବ ପୁରୁଷଙ୍କ ଗର୍ବ, ଗୌରବ ଓ ସ୍ୱାଭିମାନର ଅଳିଭା ଆଲେଖ୍ୟ । ସୁତରାଂ ଏହାଥିଲା ଡ଼କ୍ଟର ମହତାବଙ୍କ ବିରଳ ବ୍ୟକ୍ତିତ୍ୱର ସର୍ବଶ୍ରେଷ୍ଠ ନିଦର୍ଶନ ।

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶାରୁ ମରହଟ୍ଟାମାନଙ୍କୁ ତଡ଼ି କଟକର ବାରବାଟି ଦୁର୍ଗ ଦଖଲକଲେ । ପରେ ପରେ ୧୮୦୪ରେ ପୁଣି ଖୋର୍ଦ୍ଧା ଦୁର୍ଗ ଅଧିକାର କରି ଖୋର୍ଦ୍ଧାରାଜ୍ୟ ସହିତ ଓଡ଼ିଶାର ସ୍ୱାଧୀନତାକୁ ସଂପୂର୍ଣ୍ଣଭାବେ ଲୋପ କରିଦେଲେ । ୧୫୯୨ ଖ୍ରୀଷ୍ଟାବ୍ଦରୁ ସେ ପର୍ଯ୍ୟନ୍ତ ଓଡ଼ିଶାର ଅଧିକାଂଶ ଗଡ଼ଜାତ ଖୋର୍ଦ୍ଧାରାଜାଙ୍କ ଅଧୀନରେ କରଦ ରାଜ୍ୟ ହୋଇ ରହିଥିଲା ଏବଂ ସେହିସବୁ ରାଜ୍ୟର ରାଜାମାନେ ଖୋର୍ଦ୍ଧାରାଜାଙ୍କ ପ୍ରତି ଆନୁଗତ୍ୟ ପୋଷଣ କରି ଆସୁଥିଲେ । କିନ୍ତୁ ସେହି ସବୁ ରାଜ୍ୟର ରାଜାମାନେ ଖୋର୍ଦ୍ଧାରାଜାଙ୍କ ପ୍ରତି ଆନୁଗତ୍ୟ ପୋଷଣକରି ଆସୁଥିଲେ । କିନ୍ତୁ ଇଂରେଜମାନେ ଖୋର୍ଦ୍ଧାଦୁର୍ଗକୁ ମାଟିରେ ମିଶାଇ ଖୋର୍ଦ୍ଧାର ରାଜାଙ୍କୁ ବନ୍ଦୀ ଏବଂ ତାଙ୍କର ପ୍ରତିନିଧିତ୍ୱ କରୁଥିବା ଜୟୀରାଜଗୁରୁଙ୍କୁ ଫାଶି ଦେବା ସମୟରେ ଗଡ଼ଜାତରାଜାମାନେ ନୀରବଦ୍ରଷ୍ଟା ହୋଇ ଇଂରେଜଙ୍କ ବଶ୍ୟତା ସ୍ୱୀକାର କଲେ । ଇଂରେଜମାନେ ଓଡ଼ିଶା ତଥା ଓଡ଼ିଆଜାତିର ସ୍ୱାଧୀନତା ଅପହରଣ କରି ନେଉଥିବାବେଳେ ସେମାନଙ୍କର ଏ ପ୍ରକାର ହୀନ ମନୋଭାବ ଓଡ଼ିଆଜାତିର ସ୍ୱାଭିମାନପ୍ରତି ଚରମ ବିଶ୍ୱାସଘାତକତା ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ସେତିକି ନୁହେଁ : ଦୀର୍ଘ ଦେଢ଼ଶହ ବର୍ଷ ବ୍ୟାପୀ ଇଂରେଜ ଶାସନକାଳରେ ଓଡ଼ିଆଜାତିର ସ୍ୱାଧୀନତା ଓ ସ୍ୱାଭିମାନର ପୁନରୁଦ୍ଧାର ପାଇଁ ସେମାନେ କିଛିମାତ୍ର ପ୍ରଚେଷ୍ଟା କଲେ ନାହିଁ ; ଏପରିକି ଇଂରେଜଙ୍କ କବଳରୁ ଭାରତର ମୁକ୍ତି ସଂଗ୍ରାମ ପ୍ରତି ସମର୍ଥନ ଜଣାଇବା ତ ଦୂରର କଥା, ଓଲଟି ଇଂରେଜମାନେ ଭାରତରୁ ବିଦାୟ ନେଇ ଗଲାପରେ ମଧ ସେମାନେ ଦେଶ ଓ ଜାତିର ମୁଖ୍ୟସ୍ରୋତରୁ ଅଲଗା ହୋଇରହି ସ୍ୱାଧୀନ ଭାରତର ଅଖଣ୍ଡତା ପ୍ରତି ବିପଦ ସୃଷ୍ଟି କରିବାଭଳି ପ୍ରୟାସ କରିଥିଲେ । ସେହି ବିପଦକୁ ଏଡ଼ାଇବା ଲକ୍ଷ୍ୟରେ ଡ଼କ୍ଟର ମହତାବ ସ୍ୱାଧୀନତା ପ୍ରାପ୍ତିର ମାତ୍ର ସାଢ଼େ ଚାରିମାସ ପରେ ସେମାନଙ୍କର ଛୋଟ ଛୋଟ ଗଡ଼ଜାତ ରାଜ୍ୟଗୁଡ଼ିକୁ ଓଡ଼ିଶା ସହିତ ମିଶାଇ ଦେଇ ନବଉତ୍କଳର ନିର୍ମାତା ଉତ୍କଳକେଶରୀଭାବେ ଅଭିହିତ ହେଲେ । ଶହ ଶହ ବର୍ଷଧରି ସେମାନଙ୍କର ନିଜ ନିଜ ରାଜ୍ୟରେ ଅଖଣ୍ଡ ପ୍ରଭାବ ଓ ପ୍ରତିପତ୍ତି ଅକ୍ଷୁଣ୍ଣ ରହିଥିଲା ଏବଂ ସେମାନଙ୍କୁ ଗାଦିଚ୍ୟୁତ କରି ସେମାନଙ୍କ ରାଜ୍ୟକୁ ଓଡ଼ିଶା ସହିତ ମିଶାଇ ଦେଲାପରେ ସେମାନେ ନିଶ୍ଚୟ ନିଜ ନିଜ ରାଜ୍ୟର ପ୍ରଜାମାନଙ୍କ ଉପରେ ଥିବା ପ୍ରଭାବ ପ୍ରୟୋଗ କରି ପରିବର୍ତ୍ତିତ ନୂତନ ଓଡ଼ିଶାରେ ମହତାବଙ୍କ ନେତୃତ୍ୱପ୍ରତି ବିପଦ ସୃଷ୍ଟି କରିବେ । ଏହା ମଧ ଡ଼କ୍ଟର ମହତାବ ଭଲଭାବେ ଜାଣିଥିଲେ ; କିନ୍ତୁ ଏହା ଜାଣି ମଧ ଦେଶ ଓ ଜାତିର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ନିଜର ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ ପ୍ରତି ବିପଦ ଓ ପ୍ରତିଦ୍ୱନ୍ଦ୍ୱିତାର କ୍ଷେତ୍ର ନିଜ ହାତରେ ପ୍ରସ୍ତୁତ କରିବାକୁ ସେ ତିଳେମାତ୍ର ସଙ୍କୋଚ ବା ଦ୍ୱିଧା ପ୍ରକଟ କରିନଥିଲେ । ଏହା ହିଁ ଥିଲା ମହତାବଙ୍କର "ମହତାବୀ ପଣିଆ"- ନିଜ ନେତୃତ୍ୱର ବିପଥରେ ନିଜର ବଳିଷ୍ଠ ବ୍ୟକ୍ତିତ୍ୱର ଉଲ୍ଲେଖନୀୟ ଭୂମିକା । ତା' କରି ନଥିଲେ ସମ୍ଭବତଃ ଆଉ ବହୁବର୍ଷ ପର୍ଯ୍ୟନ୍ତ ମହତାବଙ୍କ ନେତୃତ୍ୱପ୍ରତି ଓଡ଼ିଶାରେ କୌଣସି ଆହ୍ୱାନର ଆଶଙ୍କା ଉପୁଜି ନଥାନ୍ତା ; କିନ୍ତୁ ସେ ଆଉ ବହୁନେତାଙ୍କ ଭଳି କେବଳ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ନେତା ହୋଇ ରହିଯାଇଥାନ୍ତେ ସିନା, ଯେଉଁ ମହତାବୀ ପଣିଆ ପାଇଁ ସେ ଅନ୍ୟନେତାମାନଙ୍କଠାରୁ ପୃଥକ୍‌ଭାବେ ବାରି ହୋଇଯାନ୍ତି, ସେଭଳି ବିରଳ ବ୍ୟକ୍ତିତ୍ୱର ଅଧିକାରୀ ହୋଇ ସେ ଆଧୁନିକ ଓଡ଼ିଶାର ନିର୍ମାତାଭାବରେ 'ଉତ୍କଳକେଶରୀ' ରୂପେ ସମଗ୍ର ଓଡ଼ିଆ ଜାତିର ଚିରନମସ୍ୟ ହୋଇ ପାରିନଥାନ୍ତେ ।

ଆଜି ସେ ମରି ମଧ ଅମର, ତାଙ୍କର କୃତି ଓ ସ୍ମୃତି ଚିର ଭାସ୍ୱର । ତାଙ୍କର ସ୍ମୃତିଚାରଣ କରି ତାଙ୍କ ଶତାବ୍ଦୀ ପୂର୍ତ୍ତି ଜନ୍ମଜୟନ୍ତୀ ଅବସରରେ ସେହି ମହାନ୍ ସ୍ୱର୍ଗତ ଆତ୍ମାପ୍ରତି ଉଦ୍ଦିଷ୍ଟ ଶ୍ରଦ୍ଧାଞ୍ଜଳି ଜଣାଉଛି ।

ପଲ୍ଲୀବାଣୀ ମନ୍ଦିର, କଣାସ, ପୁରୀ

## ଡକ୍ଟର ହରେକୃଷ୍ଣ ମହତାବ୍

● ଶ୍ରୀମତୀ ଅନ୍ନପୂର୍ଣ୍ଣା ସ୍ୱାଇଁ

ଡ଼ରି ନାହିଁ ଯିଏ ବିଦେଶୀ କମାଣ
ବୀର ସିଏ ଏ ମାଟିର
କରି ନାହିଁ ଯିଏ, ନିଜ ସ୍ୱାର୍ଥ ଚିନ୍ତା
ଶ୍ରୀର ସିଏ ଏ ଦେଶର ।
ଟଳି ନାହିଁ ଯିଏ, ନିଜ ଶପଥରୁ
ଗାସ୍ତ ସିଏ ଏ ଭୂମିର,
ରଖିଅଛି ଯିଏ, ଏ ଜାତି ସମ୍ମାନ,
ଜାତିର ସେ କର୍ଣ୍ଣଧାର ।
ହସି ହସି ଯିଏ ସମସ୍ତଙ୍କ କଥା,
ଶୁଣିଅଛି ମନ ଦେଇ,
ରେଖା ଟାଣି ଅଛି, ସବୁରି ମନରେ,
ଏ ଜାତିର ନେତା ସେହି ।
କୃପଣ ନୁହଁଲ ରାଜନୀତି କ୍ଷେତ୍ରେ
ଉଦାର ଯାହାର ମନ
ଶୁଣି ଅଛି ଯିଏ, ଦୀନଦୁଃଖୀ କଥା,
ଦାନୀ ପଣେ ସିଏ କର୍ଣ୍ଣ ।
ମରଣକୁ ଯିଏ ଡ଼ରିନାହିଁ କେବେ,
ନିର୍ଭୟ ସବୁ କଥାରେ
ହଟି ନାହିଁ ଯିଏ, ନିଜ କର୍ତ୍ତବ୍ୟରୁ
ପରାକ୍ରମୀ ସେ, ଏ ସଂସାରେ ।
ତାଙ୍କୁ କିଏ ଆଉ ଭୁଲିଯିବ ନାହିଁ,
ସେତ ଓଡ଼ିଶା ଜନକ,
ବର୍ଷ ବର୍ଷ ଧରି ଏ ଜାତି ରଖିବ,
ତାଙ୍କରି ଗୌରବ, ଟେକ ।

ଗୋପାଳଚାନ୍ଦ ଲେନ, ଚୌଧୁରୀ ବଜାର, କଟକ- ୧

# ଜାତୀୟ ରାଜନୀତିରେ ଡଃ ମହତାବଙ୍କ ଭୂମିକା

● ଡଃ ଅତୁଲ ଚନ୍ଦ୍ର ପ୍ରଧାନ

ଔପନିବେଶିକ ଶାସନର ପରିସମାପ୍ତି ବେଳକୁ ଓଡ଼ିଶା ତଥା ଭାରତର ରାଜନୀତିରେ ଡଃ. ହରେକୃଷ୍ଣ ମହତାବ ଉଲ୍ଲେଖନୀୟ ପ୍ରତିଷ୍ଠା ଲାଭ କରି ସାରିଥିଲେ । ସେତେବେଳେ ସେ ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ବିଶିଷ୍ଟ ସଙ୍ଗଠକ ତଥା ଗାନ୍ଧିବାଦୀ ରଚନାତ୍ମକ କର୍ମୀ ଓ ନେତା ଭାବରେ ବେଶ୍ ପରିଚିତ ଥିଲେ । ୧୯୪୬ ମସିହାର ବିଧାନ ସଭା ନିର୍ବାଚନ ପରେ ସେ ଓଡ଼ିଶା କଂଗ୍ରେସ ବିଧାୟକ ଦଳର ନେତା ରୂପେ ନିର୍ବାଚିତ ହୋଇଥିଲେ ଓ ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାବେ ନିଯୁକ୍ତ ହୋଇଥିଲେ । ୧୯୪୬-୪୭ ମସିହାରେ ନୂତନ ଓଡ଼ିଶା ନିର୍ମାଣ ପାଇଁ ତିନିଟି ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପରେ ଡଃ. ମହତାବ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲେ । ସେଗୁଡ଼ିକ ହେଲା-ହୀରାକୁଦ ବନ୍ଧ ନିର୍ମାଣ, ଗଡ଼ଜାତ ମିଶ୍ରଣ ଓ ଭୁବନେଶ୍ୱରରେ ନୂତନ ରାଜଧାନୀ ସ୍ଥାପନ ।-ସ୍ୱାଧୀନତା ପୂର୍ବରୁ ଜାତୀୟ ରାଜନୀତିରେ ଡ଼. ମହତାବ ସ୍ୱୀକୃତି ଲାଭ କରିଥିଲେ । ସୁଭାଷ ଚନ୍ଦ୍ର ବୋଷ କଂଗ୍ରେସ ସଭାପତି ଥିଲାବେଳେ ସେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ହୋଇଥିଲେ । ଭାରତଛାଡ଼ ଆନ୍ଦୋଳନ ସମୟରେ ତାଙ୍କୁ କଂଗ୍ରେସର କେତେକ ତୁଙ୍ଗ ନେତାଙ୍କ ସହିତ ଅହମଦନଗର ଜେଲରେ ରଖାଯାଇଥିଲା । ଏହା ଫଳରେ ସେ ପଣ୍ଡିତ ଜବାହର ଲାଲ ନେହେରୁ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରଭୃତିଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିପାରିଥିଲେ । କଂଗ୍ରେସର ତୁଙ୍ଗ ନେତାମାନଙ୍କ ବ୍ୟତୀତ ସେ ଔପନିବେଶିକ ଭାରତର ଶେଷ ଦୁଇ ବଡ଼ଲାଟ ଲର୍ଡ଼ ୱାଭେଲ୍ ଓ ଲର୍ଡ଼ ମାଉଣ୍ଟବ୍ୟାଟେନ୍, ଏବଂ ମୁସଲିମ୍ ଲିଗ୍ ନେତା ମହମ୍ମଦ ଅଲି ଜିନା ଓ ଲିଆକତ୍ ଅଲି ଖାଁଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିଥିଲେ ।୧୯୪୬ ମସିହାରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ସମୟରେ ବଡ଼ଲାଟ ଲର୍ଡ଼ ୱାଭେଲଙ୍କ କାର୍ଯ୍ୟକାରୀ ପରିଷଦ ପାଇଁ ପ୍ରଥମେ ଯେଉଁ ସଦସ୍ୟ ତାଲିକା ପ୍ରସ୍ତୁତ କରାଯାଇଥିଲା, ସେଥିରେ ଡ଼. ମହତାବ ସ୍ଥାନ ପାଇଥିଲେ । ଅବଶ୍ୟ ପରେ ତାଙ୍କର ନାମ ସେହି ତାଲିକାରୁ ବାଦ ପଡ଼ିଥିଲା । କିନ୍ତୁ ୧୯୫୦ ମସିହାରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଡଃ. ମହତାବଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରେ କେବିନେଟ୍ ପାହ୍ୟା ମନ୍ତ୍ରୀ ଭାବେ ସ୍ଥାନ ଦେଇଥିଲେ ।

୧୯୫୦ ମସିହା ମେ ମାସ ୧୩ ତାରିଖରେ ଡଃ. ମହତାବ କେନ୍ଦ୍ରରେ କେବିନେଟ୍ ମନ୍ତ୍ରୀଭାବେ ଶପଥ ନେଇଥିଲେ । ଏହି ପଦରେ ନିଯୁକ୍ତି ପାଇବାରେ ସେ ଥିଲେ ପ୍ରଥମ ଓଡ଼ିଆ । କେବିନେଟ୍ ମନ୍ତ୍ରୀଭାବେ ନିଯୁକ୍ତ ହେଲା ବେଳେ ତାଙ୍କୁ ୫୧ ବର୍ଷ ହୋଇଥିଲା । ଡଃ. ମହତାବଙ୍କୁ ଶିଳ୍ପ ଓ ଯୋଗାଣ ବିଭାଗର ଦାୟିତ୍ୱ ଦିଆଯାଇଥିଲା । ସେ ପଣ୍ଡିତ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ଯୋଗ ଦେଲାବେଳେ ସର୍ଦ୍ଦାର ପଟେଲ ଗୃହମନ୍ତ୍ରୀ ଥିଲେ । ଉଭୟ ନେହେରୁ ଓ ପଟେଲ ମହାତ୍ମାଗାନ୍ଧୀଙ୍କର ପ୍ରିୟ ଅନୁଗାମୀ ଥିଲେ । କିନ୍ତୁ ଉଭୟଙ୍କ ଦୃଷ୍ଟିକୋଣ ଓ କାର୍ଯ୍ୟପନ୍ଥା ଭିନ୍ନ ଥିଲା । ନେହେରୁ ଥିଲେ ବାମପନ୍ଥୀ ଆଦର୍ଶବାଦୀ । ପଟେଲ ଥିଲେ ଦକ୍ଷିଣପନ୍ଥୀ ବାସ୍ତବବାଦୀ । ଉଭୟଙ୍କ ମଧ୍ୟରେ ସବୁବେଳେ ମତଭେଦ ଲାଗି ରହିଥିଲା ।

ଅହମଦନଗର ଜେଲରେ ଡଃ. ମହତାବ ପଟେଲଙ୍କର ଅତି ଘନିଷ୍ଠ ହୋଇଯାଇଥିଲେ ଏବଂ ପଟେଲଙ୍କ ନେତୃତ୍ୱ ଓ ସକ୍ରିୟ ସମର୍ଥନ ବଳରେ ଓଡ଼ିଶାରେ ଗଡ଼ଜାତ ମିଶ୍ରଣ କରାଇଥିଲେ । କେନ୍ଦ୍ରମନ୍ତ୍ରୀ ମଣ୍ଡଳରେ ଯୋଗ ଦେଲା ପରେ ନେହେରୁ-ପଟେଲ ବିବାଦରେ ଡ଼: ମହତାବ ପ୍ରଥମେ ନିରପେକ୍ଷ ରହିବା ପାଇଁ ଚେଷ୍ଟା କରିଥିଲେ ଏବଂ ପରେ ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ପକ୍ଷ ସମର୍ଥନ କରିଥିଲେ । ୧୯୫୦ ମସିହା ଶେଷ ଅନୁରୂ କଂଗ୍ରେସ ସଭାପତି ନିର୍ବାଚନ ନେଇ ନେହେରୁ ଓ ପଟେଲଙ୍କ ମଧ୍ୟରେ ମତଦ୍ୱୈଧ ଦେଖା ଦେଇଥିଲା । ଏହି ପଦ ପାଇଁ ନେହେରୁ ତାଙ୍କ ପକ୍ଷରୁ ଜେ.ବି. କୃପାଲିନୀଙ୍କୁ ପ୍ରାର୍ଥୀଭାବେ ଛିଡ଼ା କଲେ ଏବଂ ପଟେଲ ପୁରୁଷୋତ୍ତମ ଦାସ ଟଣ୍ଡନଙ୍କୁ ପ୍ରାର୍ଥୀ କରାଇଲେ । ନିର୍ବାଚନରେ ଟଣ୍ଡନ ଜିତିଲେ । ଏଥିରେ ଅସନ୍ତୁଷ୍ଟ ହୋଇ ନେହେରୁ ଓ ତାଙ୍କର ସହଯୋଗୀମାନେ କଂଗ୍ରେସ କାର୍ଯ୍ୟକାରୀ କମିଟିରୁ ଇସ୍ତଫା ଦେଲେ । ଫଳରେ କଂଗ୍ରେସ ଦଳରେ ଏକ ସଙ୍କଟ ସୃଷ୍ଟି ହେଲା । ଏହି ସଙ୍କଟର ସମାଧାନ କରିବାରେ ଡଃ. ମହତାବ ଏକ ବିଶେଷ ଭୂମିକା ଗ୍ରହଣ କରିଥିଲେ । ସେ କହିଲେ ଯେ ପ୍ରଧାନମନ୍ତ୍ରୀ ହିଁ କଂଗ୍ରେସ ସଭାପତି ପଦରେ ଅଧିଷ୍ଠିତ ହେବା ଉଚିତ । ଏହି ପ୍ରସ୍ତାବ ଅନୁସାରେ ଟଣ୍ଡନ ନେହେରୁଙ୍କ ସପକ୍ଷରେ ସଭାପତି ପଦରୁ ଇସ୍ତଫା ଦେଲେ ।

କେନ୍ଦ୍ରରେ ଶିଳ୍ପମନ୍ତ୍ରୀ ଭାବରେ ଡଃ. ମହତାବ ପରୋକ୍ଷ ଭାବରେ ଶିଳ୍ପ ସ୍ଥାପନ ପାଇଁ ବହୁ ଉଦ୍ୟୋଗୀମାନଙ୍କୁ ଅନୁମତି ପ୍ରଦାନ କରିଥିଲେ । ଏହି ସମୟରେ ସେ Kalinga Tubes ସ୍ଥାପନ ପାଇଁ ବିଜୁ ପଟ୍ଟନାୟକଙ୍କୁ ଲାଇସେନ୍ସ ପ୍ରଦାନ କରିଥିଲେ । ଡଃ. ମହତାବ ଶିଳ୍ପମନ୍ତ୍ରୀ ଥିଲାବେଳେ ସରକାରୀ ଉଦ୍ୟମରେ ନିମ୍ନଲିଖିତ ଶିଳ୍ପମାନ ସ୍ଥାପିତ ହୋଇଥିଲା- ପିମ୍ପ୍ରି ପେନ୍‌ସିଲିନ୍ କାରଖାନା, ସିନ୍ଧିରି ସାର କାରଖାନା, ବାଙ୍ଗାଲୋର Machine Tools ଓ Hindustan Aeronautics.

୧୯୫୧ ମସିହା ଅକ୍ଟୋବର ମାସରେ ଡଃ., ହରେକୃଷ୍ଣ ମହତାବ ଲଣ୍ଡନରେ ରାଜ୍ୟଗୋଷ୍ଠୀ ମନ୍ତ୍ରୀ ସମ୍ମିଳନୀରେ ଯୋଗ ଦେଇଥିଲେ ।

ସେତେବେଳେ ଭି.କେ. କୃଷ୍ଣମେନନ୍ ଲଣ୍ଡନରେ ଭାରତର ହାଇକମିଶନର ଥିଲେ । ସେ ରାଜ୍ୟଗୋଷ୍ଠୀ ମନ୍ତ୍ରୀ ସମ୍ମିଳନୀରେ ଡ଼. ମହତାବଙ୍କ ଭୂମିକାକୁ ବହୁତ ପ୍ରଶଂସା କରିଥିଲେ । ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ଲେଖିଥିଲେ, "He was easily the top of the Visiting Ministers some of whom like, Mr. Howe has had some fifteen years as a cabinet minister."(ନିଶ୍ଚିତ ଭାବରେ ସେ ପରିଦର୍ଶନକାରୀ ମନ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ । ଏମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ହାଓଙ୍କ ଭଳି ପନ୍ଦରବର୍ଷ ଅଭିଜ୍ଞତା ଲାଭ କରିଥିବା କେବିନେଟ୍ ମନ୍ତ୍ରୀ ଥିଲେ ।)

୧୯୫୨ ଲୋକସଭା ନିର୍ବାଚନରେ ଡଃ. ମହତାବ ନିର୍ବାଚିତ ହୋଇଥିଲେ ଓ ଏହି ନିର୍ବାଚନ ପରେ ଯେଉଁ ନୂତନ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା, ସେଥିରୁ ତାଙ୍କୁ ବାଦ ଦିଆଯାଇଥିଲା । ଘୋଷ ପ୍ରସ୍ତାବ

ଯୋଜନା ଆଦି କେତେକ ବିଷୟରେ ପଣ୍ଡିତ ନେହେରୁଙ୍କ ସହିତ ତାଙ୍କର ମତଭେଦ ହେବାରୁ ତାଙ୍କୁ ଏହି ମନ୍ତ୍ରିମଣ୍ଡଳରେ ଅନ୍ତର୍ଭୁକ୍ତ କରାଯାଇନଥିଲା । ଅବଶ୍ୟ ପରେ ନେହେରୁ ତାଙ୍କୁ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସେକ୍ରେଟାରୀ ଜେନେରାଲ ପଦରେ ନିଯୁକ୍ତ କରିଥିଲେ । ଏହି ପଦରେ ଅଧିଷ୍ଠିତ ହୋଇ ଡଃ. ମହତାବ ମନ୍ତ୍ରୀ ଓ ସାଂସଦ, ମନ୍ତ୍ରୀ ଓ ଜନତା ଏବଂ ପ୍ରଶାସନ ଓ ଜନତା ମଧ୍ୟରେ ଯୋଗାଯୋଗ ଓ ସମ୍ପର୍କ ସ୍ଥାପନ କରିବା ପାଇଁ ଉଦ୍ୟମ କରିଥିଲେ । ସେ ପ୍ରଶାସନର ଦୋଷଦୁର୍ବଳତାକୁ ସମାଲୋଚନା କରିବା ଫଳରେ କେତେକ ମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀ ନେହେରୁଙ୍କର ଅପ୍ରିୟ ହୋଇ ପଡ଼ିଲେ । ଏପରି ପ୍ରଧାନମନ୍ତ୍ରୀ ନେହେରୁ ଓ ଡଃ. ମହତାବଙ୍କ ମଧ୍ୟରେ ଏପରି ତିକ୍ତତା ସୃଷ୍ଟି ହେଲା ଯେ ଡଃ. ମହତାବ ନେହେରୁଙ୍କ ପାଖକୁ ଇସ୍ତଫାପତ୍ର ପଠାଇ ଦେଲେ । ନେହେରୁ ଏହା ଗ୍ରହଣ ନ କରି ଡଃ. ମହତାବଙ୍କୁ ଲେଖିଥିଲେ, "I confess I do not understand all this. Old comrades do not suddenly take such steps without parsonal talks and consultations. We are bound together by closer ties than normal Political associations." (ମୁଁ ଏସବୁ କିଛି ବୁଝି ପାରୁନାହିଁ । ବ୍ୟକ୍ତିଗତ କଥାବାର୍ତ୍ତା ଓ ପରାମର୍ଶ ବିନା ପୁରାତନ ବନ୍ଧୁମାନେ ହଠାତ୍ ଏଭଳି ପଦକ୍ଷେପ ନିଅନ୍ତି ନାହିଁ । ଆମ୍ଭମାନଙ୍କର ସମ୍ପର୍କ ସାଧାରଣ ରାଜନୈତିକ ସମ୍ପର୍କଠାରୁ ଅଧିକ ଘନିଷ୍ଠ ।)

୧୯୫୨ ମସିହା ଶେଷ ଆଡ଼କୁ ମାର୍କିନ୍ ଯୁକ୍ତରାଷ୍ଟ୍ର ସରକାର ଦ୍ୱାରା ଆମନ୍ତ୍ରିତ ହୋଇ ଡଃ. ମହତାବ ଯୁକ୍ତରାଷ୍ଟ୍ର ଗସ୍ତରେ ଯାଇଥିଲେ । ସେ ସେଠାରେ ବିଭିନ୍ନ ଶ୍ରେଣୀର ଲୋକଙ୍କ ସହିତ ସାକ୍ଷାତ୍ କରିଥିଲେ ଏବଂ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଇଥିଲେ । ଭାରତକୁ ଫେରିବା ସମୟରେ ସେ ଜାପାନ ଗସ୍ତ କରିଥିଲେ ।

୧୯୫୪ ମସିହାରେ ଆଭାଡ଼ିଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଡଃ. ମହତାବ ବୈଦେଶିକ ନୀତି ଉପରେ ପ୍ରସ୍ତାବ ଉପସ୍ଥାପନ କରିଥିଲେ । ସେତେବେଳେ ଅବିଭକ୍ତ ବମ୍ବେ ପ୍ରଦେଶର ମୁଖ୍ୟମନ୍ତ୍ରୀ ମୋରାରଜୀ ଦେଶାଇ ତାଙ୍କୁ ବମ୍ବେର ରାଜ୍ୟପାଳ ପଦ ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ । ଅବସରପ୍ରାପ୍ତ ଆଇ.ସି.ଏସ୍. ଅଫିସର ଗିରିଜାଶଙ୍କର ବାଜପେୟୀଙ୍କ ମୃତ୍ୟୁପରେ ବମ୍ବେର ରାଜ୍ୟପାଳ ପଦ ଖାଲି ପଡ଼ିଥିଲା । ବାଜପେୟୀଙ୍କ ଅମଲାତାନ୍ତ୍ରିକ ମନୋଭାବକୁ ଦେଶାଇ ପସନ୍ଦ କରିନଥିଲେ । ତେଣୁ ସେ ରାଜ୍ୟପାଳ ପଦରେ ଜଣେ ରାଜନୈତିକ ବ୍ୟକ୍ତିଙ୍କୁ ନିଯୁକ୍ତ କରାଯାଉ ବୋଲି ଚାହୁଁଥିଲେ । ଶେଷରେ ଡଃ. ମହତାବ ବମ୍ବେର ରାଜ୍ୟପାଳ ପଦ ଗ୍ରହଣ କଲେ । ୧୯୫୫ ମସିହା ମାର୍ଚ୍ଚମାସ ୨ ତାରିଖ ଦିନ ସେ ବମ୍ବେର ରାଜ୍ୟପାଳ ଭାବେ ଶପଥ ଗ୍ରହଣ କରିଥିଲେ । ରାଜ୍ୟପାଳ ପଦରେ ପୂର୍ବରୁ ଓଡ଼ିଶାର କୌଣସି ବ୍ୟକ୍ତି ଅଧିଷ୍ଠିତ ହୋଇ ନଥିଲେ । ଅବିଭକ୍ତ ବମ୍ବେ ପ୍ରଦେଶର ରାଜ୍ୟପାଳ ପଦ ଏକ ସମ୍ମାନଜନକ ପଦ ଥିଲା ।

ଡଃ. ମହତାବ ଯେତେବେଳେ ବମ୍ବେର ରାଜ୍ୟପାଳ ହେଲେ, ସେତେବେଳେ ଏହି ପ୍ରଦେଶରେ ବିଭିନ୍ନ ସମସ୍ୟା ଓ ବାଦ ବିସମ୍ବାଦ ଦେଖା ଦେଇଥିଲା । ରାଜନୈତିକ କ୍ଷେତ୍ରରେ ମୁଖ୍ୟମନ୍ତ୍ରୀ ମୋରାରଜୀ ଦେଶାଇ ଓ ପ୍ରଦେଶ କଂଗ୍ରେସ ସଭାପତି ଏସ୍.କେ. ପାଟିଲଙ୍କ ମଧ୍ୟରେ ମନୋମାଳିନ୍ୟ ଲାଗି ରହିଥିଲା । ଜଣେ ପୁରୁଣା କଂଗ୍ରେସ ଲୋକ ଭାବରେ ଡଃ. ମହତାବ ଏ ଦୁହିଁଙ୍କ ମଧ୍ୟରେ ମନୋମାଳିନ୍ୟ ଦୂର କରିବାରେ ଚେଷ୍ଟା କରିଥିଲେ । ଏହାଛଡ଼ା ମୁଖ୍ୟମନ୍ତ୍ରୀ ଦେଶାଇ ଓ ହାଇକୋର୍ଟର ମୁଖ୍ୟ ବିଚାରପତି ଏମ୍. ସି ଚାଗଲାଙ୍କ ମଧ୍ୟରେ ଏବଂ ସରକାର ଓ ବିଶ୍ୱବିଦ୍ୟାଳୟ ମଧ୍ୟରେ ମତ ପାର୍ଥକ୍ୟ ଦୂର କରିବା ପାଇଁ ଡଃ. ମହତାବ ଚେଷ୍ଟା କରି ସଫଳ ହୋଇଥିଲେ ।

ଅବିଭକ୍ତ ବମ୍ବେ ରାଜ୍ୟରେ ସବୁଠାରୁ ବଡ଼ ସମସ୍ୟା ଥିଲା ଆଞ୍ଚଳିକ ସମସ୍ୟା । ଏଥିରେ ତିନିଟି ଅଞ୍ଚଳ ଥିଲା, ଯଥା-ଗୁଜରାଟ, ମହାରାଷ୍ଟ୍ର ଏବଂ କର୍ଣ୍ଣାଟକ । ବାଣିଜ୍ୟ ଓ ଶିଳ୍ପ କ୍ଷେତ୍ରରେ ଗୁଜରାଟୀମାନେ ଅନ୍ୟମାନଙ୍କଠାରୁ ଆଗୁଆ ଥିଲେ । ମରାଠାମାନେ ଶିକ୍ଷା ଓ ଶ୍ରମିକ ନିଯୁକ୍ତି କ୍ଷେତ୍ରରେ ପ୍ରତିପତ୍ତି ବିସ୍ତାର କରିଥିଲେ । କର୍ଣ୍ଣାଟକ ଅଞ୍ଚଳ ଅନୁନ୍ନତ ଥିଲା । ସଂଯୁକ୍ତ ମହାରାଷ୍ଟ୍ର ଦଳ ଏକ ସ୍ୱତନ୍ତ୍ର ମହାରାଷ୍ଟ୍ର ପ୍ରଦେଶ ଗଠନ ଦାବୀ କରୁଥିଲା । ବମ୍ବେ ପ୍ରଦେଶ କଂଗ୍ରେସ ଏହି ଦୁଇ ଦଳ ମଧ୍ୟରେ ଏକ ମୁକାବିଲାଜନକ ପରିସ୍ଥିତି ଉପୁଜି ଥିଲା । ୧୯୫୬ ମସିହାରେ ବମ୍ବେରେ ଏ.ଆଇ.ସି. ଅଧିବେଶନ ବସିଥିଲା । ସେତେବେଳେ ସଂଯୁକ୍ତ ମହାରାଷ୍ଟ୍ର ଦଳ ନିଜର ଦାବୀ ସାବ୍ୟସ୍ତ କରିବା ପାଇଁ ଏହି ଅଧିବେଶନରେ ଗଣ୍ଡଗୋଳ ସୃଷ୍ଟି କରିବାକୁ ଚାହୁଁଥିଲା । ଡଃ. ମହତାବ ଏହି ଦଳର କର୍ମକର୍ତ୍ତାମାନଙ୍କୁ ବୁଝାଇ ଶୁଝାଇ ସେମାନଙ୍କୁ ଏଭଳି କାର୍ଯ୍ୟପନ୍ଥାରୁ ନିବୃତ୍ତ କରାଇଥିଲେ ।

ତାଙ୍କ ପରାମର୍ଶ ଅନୁସାରେ ସଂଯୁକ୍ତ ମହାରାଷ୍ଟ୍ରବାଦୀମାନେ ଏକ ସ୍ୱତନ୍ତ୍ର ସଭାର ଆୟୋଜନ କରିଥିଲେ ଏବଂ ସେ ଏଥିରେ ଉଦ୍‌ବୋଧନ ଦେଇଥିଲେ ।

ଡଃ. ମହତାବ ବମ୍ବେର ରାଜ୍ୟପାଳ ପଦରେ ପୂରା ପାଞ୍ଚ ବର୍ଷ ରହିବାକୁ ଚାହୁଁଥିଲେ । କିନ୍ତୁ ଦୁଇବର୍ଷ ନ ପୂରୁଣୁ କଂଗ୍ରେସହାଇକମାଣ୍ଡଙ୍କ ନିର୍ଦ୍ଦେଶ ଅନୁସାରେ ୧୯୫୬ ମସିହା ଅକ୍ଟୋବର ମାସରେ ସେ ଓଡ଼ିଶା ରାଜନୀତିକୁ ମୁଖ୍ୟମନ୍ତ୍ରୀ ଭାବରେ ପ୍ରତ୍ୟାବର୍ତ୍ତନ କରିଥିଲେ । ବମ୍ବେର ରାଜ୍ୟପାଳ ଭାବରେ ଡଃ. ମହତାବଙ୍କ କାର୍ଯ୍ୟକଳାପକୁ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ଓ ପ୍ରଧାନମନ୍ତ୍ରୀ ନେହେରୁ ବହୁତ ପ୍ରଶଂସା କରିଥିଲେ ।

୧୯୫୬ ମସିହାଠାରୁ ୧୯୬୦ ମସିହା ପର୍ଯ୍ୟନ୍ତ ଡଃ. ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ଏହାପରେ ଓଡ଼ିଶା କଂଗ୍ରେସର ନେତୃତ୍ୱ ବିଜୁ ପଟ୍ଟନାୟକଙ୍କ ହାତକୁ ଗଲା । ୧୯୬୨ ମସିହାରେ ଡଃ. ମହତାବ ଲୋକସଭାକୁ ନିର୍ବାଚିତ ହେଲେ । ନେହେରୁ ତାଙ୍କୁ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଉପଦଳପତି ପଦରେ ନିଯୁକ୍ତ କଲେ । ୧୯୬୨ ମସିହାର ଶରତ ଋତୁରେ ଚୀନ ଭାରତ ଆକ୍ରମଣ କଲା । ସାମରିକ ପ୍ରସ୍ତୁତିର ଅଭାବ ହେତୁ ଭାରତୀୟ ସୈନ୍ୟବାହିନୀ ଚୀନ ସୈନ୍ୟବାହିନୀ ହାତରେ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହେଲେ । ଡଃ. ମହତାବ ପ୍ରମୁଖ କଂଗ୍ରେସର କେତେକ ନେତା ଏହି ବିପର୍ଯ୍ୟୟ ପାଇଁ ପ୍ରତିରକ୍ଷା ମନ୍ତ୍ରୀ ଭି.କେ. କୃଷ୍ଣମେନନଙ୍କୁ ଦାୟୀ କଲେ ଏବଂ ତାଙ୍କର ଇସ୍ତଫା ଦାବୀ କଲେ । ଫଳରେ ମେନନ ଇସ୍ତଫା ଦେଲେ ।

ଓଡ଼ିଶା କଂଗ୍ରେସରେ ନୂତନ ନେତୃତ୍ୱର ଅଭ୍ୟୁଦୟ ହେତୁ ଡଃ. ମହତାବ କଂଗ୍ରେସରୁ ଦୂରେଇ ଗଲେ ଏବଂ ଜନ କଂଗ୍ରେସ ଦଳ ଗଠନ କଲେ । ୧୯୬୭ ନିର୍ବାଚନରେ ସ୍ୱତନ୍ତ୍ର-ଜନ କଂଗ୍ରେସ ମେଣ୍ଟର ବିଜୟ ଏବଂ ଏହାପରେ ଏହି ମେଣ୍ଟର ସରକାର ଗଠନରେ ଡଃ ମହତାବ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୧୯୭୭ ମସିହା ପର୍ଯ୍ୟନ୍ତ ଡ଼. ମହତାବ ଓଡ଼ିଶା ବିଧାନସଭାର ସଦସ୍ୟ ରହିଥିଲେ । ଏହାପରେ ସେ ଲୋକସଭା କିମ୍ବା ବିଧାନସଭା

ନିର୍ବାଚନରେ ଅଂଶ ଗ୍ରହଣ ନକଲେ ମଧ୍ୟ ସାଧାରଣ ଜୀବନ ଓ ରାଜନୀତି ସହିତ ସବୁବେଳେ ସମ୍ପୃକ୍ତ ରହିଥିଲେ । ସେ ଇନ୍ଦିରାଗାନ୍ଧୀଙ୍କ ଜରୁରୀକାଳୀନ ଶାସନକୁ ସମାଲୋଚନା କରି ଗିରଫ ହୋଇଥିଲେ ଏବଂ ୧୯ ମାସ ଧରି ସାଧାରଣ ବନ୍ଦୀ ଭଳି ଜେଲରେ ରହିଥିଲେ । ଏହି ସମୟରେ ତାଙ୍କର ପତ୍ନୀ ସୁଭଦ୍ରାଦେବୀ ପରଲୋକ ଗମନ କରିଥିଲେ । ମୃତ୍ୟୁର ଅଳ୍ପ କେତେ ଦିନ ପୂର୍ବରୁ ଜାତୀୟ ରାଜନୀତିରେ ତାଙ୍କର ଭୂମିକା ସମ୍ପର୍କୀୟ ତଥ୍ୟ-ସମ୍ବଳିତ ଆତ୍ମଜୀବନୀମୂଳକ ପୁସ୍ତକ While Serving My Nation-Recollections of a Congresman ର ଉନ୍ମୋଚନ ପାଇଁ ଡଃ. ମହତାବ ଦିଲ୍ଲୀ ଯାତ୍ରା କରିଥିଲେ । ଏହି ପୁସ୍ତକକୁ ୧୯୮୬ ମସିହା ନଭେମ୍ବର ୨୫ ତାରିଖ ଦିନ ଡଃ ରାଜାରାମ ଶାସ୍ତ୍ରୀ ଉନ୍ମୋଚନ କରିଥିଲେ । ସେତେବେଳକୁ ବାର୍ଦ୍ଧକ୍ୟ ହେତୁ ସେ ଠିକ୍ ଭାବରେ ଚାଲିପାରୁନଥିଲେ ।

ଓଡ଼ିଶା ଡଃ. ମହତାବଙ୍କ ମୁଖ୍ୟ କର୍ମକ୍ଷେତ୍ର ହେଲେ ମଧ୍ୟ ସେ ସର୍ବଦା ଜାତୀୟତାବାଦୀ ଥିଲେ । ସର୍ଦ୍ଦାର ପଟେଲଙ୍କ ମତରେ ସେ ଓଡ଼ିଶାଠାରୁ ଭାରତକୁ ଅଧିକ ଭଲ ପାଉଥିଲେ । ଲର୍ଡ଼ ମାଉଣ୍ଟବ୍ୟାଟେନଙ୍କ ମତରେ ସାରା ଭାରତର ସ୍ୱାଧୀନତା ଓ ପ୍ରଗତି ପାଇଁ ଡଃ. ମହତାବଙ୍କ ଅବଦାନ ସର୍ବତ୍ର ସ୍ୱୀକୃତି ପାଇଥିଲା ।

ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ରାଜନୀତିରେ ସାଂସଦ, କେବିନେଟ୍ ମନ୍ତ୍ରୀ, କଂଗ୍ରେସ ଦଳର ସଙ୍ଗଠକ ଏବଂ ବମ୍ବେର ରାଜ୍ୟପାଳ ଭାବରେ ଡଃ. ମହତାବ ତାଙ୍କର ଭୂମିକା ସମ୍ପାଦନ କରିଥିଲେ । ଏତଦ୍ ବ୍ୟତୀତ ବିଭିନ୍ନ ଜାତୀୟ ସମସ୍ୟା ଓ ବିଷୟ ଉପରେ ସେ ବିଭିନ୍ନ ସମୟରେ ସରକାରଙ୍କୁ ସୁପରାମର୍ଶ ଦେଉଥିଲେ ଏବଂ ନିଜର ସୁଚିନ୍ତିତ ବକ୍ତବ୍ୟ ନିର୍ଭୀକ ଭାବରେ ପ୍ରକାଶ କରୁଥିଲେ । ପଣ୍ଡିତ ନେହେରୁ ଓ ମହଲାନୋବିସ୍ଙ୍କ ଭଳି ବିଜ୍ଞ ବ୍ୟକ୍ତିମାନେ ତାଙ୍କର ମତାମତକୁ ସମ୍ମାନ କରୁଥିଲେ ।

୧୯୫୨ ମସିହାରେ ମାର୍କିନ୍ ଯୁକ୍ତରାଷ୍ଟ୍ରର ସହାୟତାରେ ଗୋଷ୍ଠୀ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରାଗଲା । କେବିନେଟ୍ ସହିତ ପରାମର୍ଶ ନ କରି ମାର୍କିନ୍ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରଦୂତ ଚେଷ୍ଟରବୋଲ୍ସଙ୍କ ଉପଦେଶ ଅନୁସାରେ ପ୍ରଧାନମନ୍ତ୍ରୀ ନେହେରୁ ଏହି ଯୋଜନା ଆରମ୍ଭ କରିଥିଲେ । ଡଃ. ମହତାବ ଏହାକୁ ବିରୋଧ କରିଥିଲେ । ତାଙ୍କର ମତ ଥିଲା-ବୈଦେଶିକ ସାହାଯ୍ୟ ନ ନେଇ ଦେଶର ସମ୍ପଦକୁ ବିନିଯୋଗ କରି ଏହି ଗୋଷ୍ଠୀ ଉନ୍ନୟନ ଯୋଜନା କାର୍ଯ୍ୟକାରୀ ହେବା ଉଚିତ ।

ଡଃ. ମହତାବ ଆଚାର୍ଯ୍ୟ ବିନୋବା ଭାବେଙ୍କ ଭୂଦାନ ଆନ୍ଦୋଳନ, ବିଶେଷତଃ ଏହି ଆନ୍ଦୋଳନରେ ସରକାରୀ କଳର ଉପଯୋଗକୁ ବିରୋଧ କରିଥିଲେ । ତାଙ୍କର ମତ ଥିଲା ଯେ ଭୂଦାନ ଆନ୍ଦୋଳନ ଦାରିଦ୍ର୍ୟ ବଣ୍ଟନ ପାଇଁ ଆନ୍ଦୋଳନ । ଲୋକସଂଖ୍ୟା ଅନୁପାତରେ ଚାଷୋପଯୋଗୀ ଭୂମିର ପରିମାଣ କମ୍ ଥିବାରୁ ଭୂମି ବଣ୍ଟନ ଫଳରେ ମଧ୍ୟବିତ୍ତ ଚାଷୀ ଲୋପ ପାଇବେ ଏବଂ ସବୁ ଚାଷୀ ଦରିଦ୍ରରୂପେ ପରିଗଣିତ ହେବେ ବୋଲି ସେ କହିଥିଲେ । ତାଙ୍କର ମତ ଥିଲା ଯେ ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଦୂରୀକରଣ ପାଇଁ ଗ୍ରାମ୍ୟ ଶିଳ୍ପ ଉପରେ ଗୁରୁତ୍ୱ ଦିଆଯିବା ଉଚିତ ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ଗ୍ରାମାଞ୍ଚଳମାନଙ୍କରେ ଶିଳ୍ପର ବିକାଶ ପାଇଁ ଡଃ.ମହତାବ ଏକ ସମ୍ପୂର୍ଣ୍ଣ ଚିଠା ପ୍ରସ୍ତୁତ କରିଥିଲେ । ତାଙ୍କର ଏହି ଚିଠାକୁ ପି.ସି. ମହଲାନୋବିସ୍ ଓ ଡି.ଜି. କର୍ଭେ ବହୁତ ପସନ୍ଦ କରିଥିଲେ । ୧୯୫୭ ମସିହାରେ ଭୂଦାନ ପାଇଁ ଏହି ଚିଠା ସେ ଯୋଜନା କମିଶନଙ୍କୁ ପଠାଇଥିଲେ ।

ଡଃ. ମହତାବ ବମ୍ବେରେ ରାଜ୍ୟପାଳ ଥିବା ସମୟରେ କେନ୍ଦ୍ର ସରକାର ଭାଷା ସମସ୍ୟାର ସମାଧାନ କରିବା ପାଇଁ ବି.ଜି. ଖେର୍ଙ୍କ ଅଧ୍ୟକ୍ଷତାରେ ଏକ କମିଶନ୍ ନିଯୁକ୍ତ କରିଥିଲେ । ଡଃ. ମହତାବ ଏହି କମିଶନ୍କୁ ଏକ ମେମୋରେଣ୍ଡମ୍ ଦେଇଥିଲେ । ତାଙ୍କର ମତ ଥିଲା ଯେ ଉଭୟ ଇଂରାଜୀ ଓ ହିନ୍ଦୀ ଭାରତର ରାଷ୍ଟ୍ରଭାଷା ହେବା ଉଚିତ ଏବଂ ଆଞ୍ଚଳିକ ଭାଷା ଶିକ୍ଷାର ମାଧ୍ୟମ ହେଲେ କ୍ଷୁଦ୍ର ରାଜ୍ୟଗୁଡ଼ିକ ବିଶେଷ କ୍ଷତିଗ୍ରସ୍ତ ହେବେ । ଏହି ସମୟରେ ଦକ୍ଷିଣ ଭାରତରେ ହିନ୍ଦୀବିରୋଧୀ ଆନ୍ଦୋଳନ ପ୍ରବଳ ହେଲା । ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ରାଜଗୋପାଳଚାରୀ ଏହି ଆନ୍ଦୋଳନକୁ ସମର୍ଥନ କଲେ । ରାଜାଜୀ ଇଂରାଜୀ ଭାଷାର ସପକ୍ଷରେ ଏବଂ ଦକ୍ଷିଣ ଭାରତ ଉପରେ ହିନ୍ଦୀକୁ ଜବରଦସ୍ତି ଭାବରେ ଲଦିବା ଉଦ୍ୟମକୁ ବିରୋଧ କରୁଥିଲେ । ଫଳରେ ରାଜାଜୀ ସ୍ୱତନ୍ତ୍ର ତାମିଲ ରାଷ୍ଟ୍ର ଗଠନ ଦାବୀକୁ ସମର୍ଥନ କରୁଛନ୍ତି ବୋଲି ତାଙ୍କ ବିରୋଧରେ ଅଭିଯୋଗ ହେଲା । ଭାଷା ସମସ୍ୟା ସମ୍ପର୍କରେ ନେହେରୁ ଓ ରାଜାଜୀଙ୍କ ମଧ୍ୟରେ ମତ ଦ୍ୱୈଧ ସୃଷ୍ଟି ହେଲା । ଡଃ. ମହତାବ ଭାଷା ସମସ୍ୟା ସମ୍ପର୍କରେ ରାଜାଜୀଙ୍କୁ ଚିଠି ଲେଖିଥିଲେ ଏବଂ ରାଜାଜୀଙ୍କ ଉତ୍ତରର ନକଲ ସହିତ ନେହେରୁଙ୍କୁ ପତ୍ର ଲେଖିଥିଲେ । ଡଃ. ମହତାବଙ୍କ ପତ୍ର ଉତ୍ତରରେ ନେହେରୁ ଲେଖିଥିଲେ, "Nobody denies the importance of the English language. I am sure it will spread more in the future than in the past. Nobody wants forcibly to impose Hindi"(ଇଂରାଜୀ ଭାଷାର ଗୁରୁତ୍ୱ କେହି ଅସ୍ୱୀକାର କରୁନାହାନ୍ତି । ଅତୀତଠାରୁ ଭବିଷ୍ୟତରେ ଏହାର ପ୍ରସାର ଅଧିକ ହେବ ଏ ବିଷୟରେ ମୁଁ ନିଶ୍ଚିତ । ହିନ୍ଦୀକୁ କେହି ଜବରଦସ୍ତି ଲଦି ଦେବାକୁ ଚାହୁଁ ନାହାନ୍ତି ।)

ସରକାର ଓ ଜନତା ମଧ୍ୟରେ ବ୍ୟବଧାନ ବଢୁଥିବାରୁ ଡଃ. ମହତାବ ୧୯୫୪ ମସିହା ସେପ୍ଟେମ୍ବର ୨୭ ତାରିଖରେ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ଲେଖିଥିଲେ, "Efforts should be made to solve the problems of the country by popular Political approaches rather than the use of governmental authority as far as possible" (ଯେତେ ଦୂର ସମ୍ଭବ ସରକାରୀ କର୍ତ୍ତୃପକ୍ଷର ବ୍ୟବହାର ନ କରି ଲୋକପ୍ରିୟ ଓ ରାଜନୈତିକ ଉପାୟରେ ସମସ୍ୟାଗୁଡ଼ିକର ସମାଧାନ କରିବା ପାଇଁ ଚେଷ୍ଟା କରାଯିବା ଉଚିତ ।) ନେହେରୁ ତାଙ୍କ ସହିତ ଏକମତ ହୋଇଥିଲେ ଏବଂ ପ୍ରତ୍ୟୁତ୍ତରରେ ଲେଖିଥିଲେ,"In any event there should be much closer coordination between the official element and the non-official and there should never be a question of suppression or by-passing of Views"(ସବୁବେଳେ ସରକାରୀ ଓ ବେସରକାରୀ ଲୋକଙ୍କ ମଧ୍ୟରେ ଘନିଷ୍ଠ ସହଯୋଗ ରହିବା ଉଚିତ ଏବଂ ମତାମତକୁ କେବେ ହେଁ ଚାପି ଦେବା କିମ୍ବା ହେଳା କରିବା ଉଚିତ ନୁହେଁ ।)

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଡଃ. ମହତାବ ଲୋକଙ୍କ ସହିତ ତଥା ଜାତୀୟ ଓ ଆଞ୍ଚଳିକ ସମସ୍ୟା ସହିତ ସମ୍ପୃକ୍ତ ଥିଲେ ।

# ଅବିସ୍ମରଣୀୟ ମହତାବ

• ଡକ୍ଟର କୈଳାସ ଚନ୍ଦ୍ର ଦାଶ

ଧରିଛି ଜନନୀ କୋଟିଏ ପୁତ୍ର କୋଳେ
ତୁମ ଭଳି ଆଜି ଗୋଟିଏ ମଣିଷ ବିନା
ମାଆ ଗରଭରୁ ଉର୍ଦ୍ଧ୍ୱେ ଉଠିଲା ଟେକି
ଉତ୍କଳ ଜାତିର ଦାୟ କାଗଡ଼ି ଦାନା
ତୁମରି ସବଳ ଲେଖନୀ ପରଶେ ଆଜି
ମଧ୍ୟ ଯୁଗର ସିଂହ ଆସନ ନିମିଷେ ପଡ଼ିଲା ଭାଜି ।
ବୃହତ୍ତର ଏ ଉତ୍କଳ ଆଜି ତୁମେ ଯେ ତାହାରି ପିତା
ଉନ୍ନତ କଲ ଅବନତ ମହୀ ଗାଇଲ ମୁକ୍ତି ଗୀତା
ଅନ୍ଧାର ସେହି ମୂଳକେ ତୁମେ ଯେ ବିଭୂତି ଧରିଲ ହାତେ
ବରଣ କରିଲ ସୂର୍ଯ୍ୟ ଦେବତା ଅନ୍ଧାର ଅମା ପଥେ ।

ସାପ୍ତାହିକ ନବୀନ ସମ୍ବାଦପତ୍ରର ୧୯୪୮ ମସିହା ମେ ୧୧ ତାରିଖ ସଂଖ୍ୟାରେ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ନବୀନ ସାହିତ୍ୟ ପରିଷଦର ମାନପତ୍ରର ଏହା ଏକ ଅଂଶବିଶେଷ । ଘଟଣାପୂର୍ଣ୍ଣ ବିଂଶ ଶତାବ୍ଦୀର ଓଡ଼ିଶାର ଅବିସ୍ମରଣୀୟ ନେତା ଓ ଚିନ୍ତାନାୟକ ଥିଲେ ମହତାବ । ଓଡ଼ିଶାର ରାଜନୀତିକ-ସାଂସ୍କୃତିକ ଇତିହାସର ଏକ ପ୍ରଜ୍ଞାପୁରୁଷ । ସେ ଯଥାର୍ଥରେ ଥିଲେ ଉତ୍କଳକେଶରୀ । ତେଣୁ ପୂର୍ବ ସୂଚିତ ନବୀନ ସଂଖ୍ୟାରେ ପ୍ରକାଶ କରାଯାଇଛି

ବନ୍ଧୁ ଆଜି ଆସ ଏ ମୂଳକେ
ଆସ ଆଜି ଉତ୍କଳ କେଶରୀ
ତବ ଆଗମନେ ଆଜି ଜାଗେ ଏ ଜନତା
କୋଟି କଳ୍ପନା ଉଠେ ମାନସେ ସଞ୍ଚରି

ଓଡ଼ିଶାରେ ମୁକ୍ତି ସଂଗ୍ରାମର ନାନା ପର୍ଯ୍ୟାୟରେ ଜନତାଙ୍କୁ ଗାନ୍ଧୀ ଚିନ୍ତାଧାରାରେ ଅନୁପ୍ରାଣିତ କରିବା ସଙ୍ଗେ ସଙ୍ଗେ ସେ ଗ୍ରାମେ ଗ୍ରାମେ ଗଠନାତ୍ମକ କାର୍ଯ୍ୟକ୍ରମର ପ୍ରସାରରେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ଦେଶୀୟ ରାଜ୍ୟ ମିଶ୍ରଣ ସହିତ ଓଡ଼ିଶାର କୃଷି ଓ ଶିଳ୍ପର ଅଗ୍ରଗତି ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ତେଣୁ ଏହି ପ୍ରବନ୍ଧରେ ସେହି ବହୁମୁଖୀ କାର୍ଯ୍ୟର ଏକ ବିବରଣୀ ଉପସ୍ଥାପନ କରାଯାଉଛି ।

||୨||

ଛାତ୍ର ଜୀବନରୁ ମହତାବ ଦେଶର ସମସ୍ୟା ସମ୍ପର୍କରେ ସଚେତନ ଥିଲେ । ପ୍ରତିବାଦ ଓ ପୁନର୍ଗଠନ ତାଙ୍କର ଲକ୍ଷ୍ୟ ହୋଇଥିଲା । ୧୯୧୭ ମାର୍ଚ୍ଚ ମାସ ୧୦ ତାରିଖରେ ଉତ୍କଳ ଦୀପିକାରେ ଉଦୟ ନାରାୟଣ ମହାନ୍ତିଙ୍କ ସହିତ ଏକ ପ୍ରତିବାଦମୂଳକ ପତ୍ର ପ୍ରକାଶ କରିଥିଲେ । ସେ କହିଥିଲେ-ଗତ ୨୬ ତାରିଖ "ଆଶା"ରେ ଜଣେ ଅନାମିକା ସାହିତ୍ୟ ପାଠକ କବିବର ଚିନ୍ତାମଣି ମହାନ୍ତି ମହୋଦୟଙ୍କ "ସାଳନ୍ଦୀ" କାବ୍ୟର ଗୋଟିଏ ଈର୍ଷା ପ୍ରଣୋଦିତ ବିତଣ୍ଡାମୂଳକ ସମାଲୋଚନା ପ୍ରକାଶ କରିଅଛନ୍ତି । ମାନ୍ଦ୍ରାଜ୍ ଡ଼ାଇରେକ୍ଟରଙ୍କ କର୍ତ୍ତୃକ "ସାଳନ୍ଦୀ" ଏବଂ "ଆର୍ଯ୍ୟବାଳା" କାବ୍ୟ ଆଇ.ଏ. କ୍ଲାସର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଅଛି । ଧୂର୍ତ୍ତ ସାହିତ୍ୟିକ ମହାଶୟ ଏଥିରେ ବୃଦ୍ଧାବାଦକ ବୋବାଉ ଅଛନ୍ତି । ଯାହା ଭୁଲ୍ ନୁହେଁ ତାହାକୁ ଭୁଲ୍ ବୋଲି କହିଛନ୍ତି । ଲାଳିତ୍ୟ ଏବଂ ଅନୁପ୍ରାସାଦି ଅନୁରୋଧରେ କି ରୂପ ନୂତନ ଶବ୍ଦ ଗଢ଼ିବାକୁ ହୁଏ ତାହା କେବଳ ବଙ୍ଗର ସାହିତ୍ୟିକମାନେ ଜାଣନ୍ତି । ଉତ୍କଳକୁ ସେ ଯୁଗ ଆସିବାକୁ ବହୁ ବିଳମ୍ବ ଅଛି । ସାହିତ୍ୟ ପାଠକ ତାହା କାହୁଁ ବୁଝିବେ ? ରାଧାନାଥ କହିଥିଲେ "ଦେବମନ ପରି କେବଳ ଉଦାର" । ମାତ୍ର ଚିନ୍ତାମଣି କହିଛନ୍ତି, "ସାଧୁମନ ପ୍ରାୟ ନିର୍ମଳ ଉଦାର" । କାହିଁରେ ବିଶେଷତ୍ୱ ଅଧିକ ? ସେଦିନ ବାଲେଶ୍ୱରରେ ବୃଦ୍ଧକବି ଫକୀର ମୋହନ ସେନାପତିଙ୍କ ସହିତ ସାକ୍ଷାତ ହୋଇଥିଲା । ସେ ମହୋଦୟ "ସାଳନ୍ଦୀ" କାବ୍ୟର ଏ ବିସଦୃଶ ସମାଲୋଚନା ଦେଖି ଆକ୍ଷେପର ସହିତ କହିଥିଲେ-" ଉତ୍କଳରେ କେଉଁ କଥା ଅବା ଅସମ୍ଭବ ? ଆମ୍ଭେମାନେ କୁମୁଦ ଓ ପଦ୍ମ ପ୍ରସ୍ଫୁଟିତ ସରୋବର ଦେଖିବାକୁ ଯାଇ କୁମୁଦ ଓ ପଦ୍ମର ସୌନ୍ଦର୍ଯ୍ୟ ତଥା ପୁଷ୍କରିଣୀର ଜଳକ୍ରୀଡ଼ା ପ୍ରତି ଭ୍ରୂକ୍ଷେପ ନକରି ଗେଣ୍ଡା ଶାମୁକା ପ୍ରତି ଦୃଷ୍ଟି ନିକ୍ଷେପ କରିଥାଉ । ବର୍ତ୍ତମାନ ଉତ୍କଳରେ ସେହି ଦଶା । ଆମ୍ଭେମାନେ ଗୁଣ ଦେଖୁନାହିଁ କେବଳ ଖୁଣ ଖୋଜ ମାତ୍ର । କିନ୍ତୁ ଖୁଣ ଖୋଜିବାଟା ନିତାନ୍ତ ଅନ୍ୟାୟ ମଧ୍ୟରେ ଗଣ୍ୟ । ଯେ ମହତ୍ ଲୋକର ନିନ୍ଦାରଚନା କରେ ସେ ଯେ କେବଳ ଦୋଷୀ ଏମନ୍ତ ନୁହେଁ । ତାହା ଯେ ଗ୍ରହଣ କରେ ସେ ମଧ୍ୟ ସମ୍ପୂର୍ଣ୍ଣ ଦୋଷୀ । ସେ ଯାହା ହେଉ, ମେଘାସନ, ସାଳନ୍ଦୀ, ସିଂହରାଜ, ସପରଥି, ଶିଶୁପାଳବଧ, ବିକ୍ରମାଦିତ୍ୟ ପ୍ରଭୃତି କାବ୍ୟ ଉତ୍କଳ ସାହିତ୍ୟ ଭଣ୍ଡାରରେ ଚିରକାଳ ଉଜ୍ଜ୍ୱଳ ରତ୍ନରୂପେ ବିରାଜିତ ଥିବ । ଏପରି ସମାଲୋଚକଙ୍କ କଥାରେ ତାହା କଦାଚ ହୀନପ୍ରଭ ହେବ ନାହିଁ " ଏଥିରୁ ମହତାବଙ୍କ ଓଡ଼ିଆ ସାହିତ୍ୟ ପ୍ରତି ଗଭୀର ଅନୁରାଗର ସ୍ପଷ୍ଟ ପରିଚୟ ମିଳିଥାଏ ।

ଏହାର ଦୁଇବର୍ଷ ପରେ ୧୯୧୯ ଏପ୍ରିଲ ୧୨ ତାରିଖ "ଉତ୍କଳ ଦୀପିକା"ରେ ମହତାବ ଇଂରାଜୀରେ ଏକ ପ୍ରତିବାଦମୂଳକ ପତ୍ର ପ୍ରକାଶ କରି ତାହାଙ୍କର ସଚେତନତା ସୂଚାଇଥିଲେ । ସେଥିରେ ସେ ଲେଖିଥିଲେ-
"On the Second instant, I was travelling from Cuttack to Bhadrak in the 3rd class passenger train. At Cuttack station I found with great astonishment that the third class passengers were to bribe, in order to have tickets for themselves, the constables appointed at the booking office to prevent breach of peace. Those who were relucant to pay them anything were treated with pushes and fists. I was a victim in their hands. I didnot

give them anything, but they gave me pushes. I rushed towards the room of the station master but there was none in that room. The train came up at that time and I could not do anything. Again in course of travelling i found at several stations hundreds were returning, finding no room in the campartments, for they were really packed up to suffocation. It is sure those who intend to go to distant places must travel by the railway. Then why are the Railway company so eager to sell innumerable tickets while they only supply 8 to 10 campartments ? Perhaps the company are quite canfident of to-day, but desperate of tomorrow. This men call foolishness, selfishness or carelessness of public safety and happiness. I have informed the traffic Superintendent of these things. I shall let the public know of his decision in due time. All editors are silent about the inconvenience of the 3rd class passengers but to put the poor villagers into danger and inconvenience is not a matter of joke to be triffled with"

ଅଗରପତ୍ରାରୁ ପଠାଯାଇଥିବା ଏହି ପତ୍ର ଛାତ୍ର ମହତାବଙ୍କର ଜନ ସେବାର ପରିଚୟ ଦେଇଥାଏ । ନେତା ହେବାପାଇଁ ଆବଶ୍ୟକ ଗୁଣର ସୂଚନା ଏଥିରୁ ମିଳିପାରେ ।

//୩//

ତରୁଣ ମହତାବ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ପର୍ଯ୍ୟାୟ ଠାରୁ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସଂଗ୍ରାମୀ ନେତା ହିସାବରେ ପରିଚିତ ହୋଇଥିଲେ । ଦେଶର ଅଗ୍ରଗତି ପାଇଁ ସେତେବେଳେ ସେ ଯୁବକ ଆନ୍ଦୋଳନ ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । ସେ ଏହି ସମ୍ପର୍କରେ 'ଆଶା' ସମ୍ବାଦପତ୍ରରେ ଡ଼ିସେମ୍ବର ୩୦, ୧୯୨୯ ସଂଖ୍ୟାରେ ଏକ ଦୀର୍ଘ ପ୍ରବନ୍ଧ ପ୍ରକାଶ କରିଥିଲେ । ସେଥିରେ ସେ କହିଥିଲେ -(୧) ଆଜି କାଲି ଚାରିଆଡ଼େ ଯୁବକ ଆନ୍ଦୋଳନ ବିଷୟ ଶୁଣାଯାଉଅଛି । ପୃଥିବୀର ସର୍ବତ୍ର ଯୁବକମାନଙ୍କ ମଧ୍ୟରେ ନୂତନ ଭାବ ନାନା ପ୍ରକାରେ ଦେଖାଯାଉଅଛି । ଇତିପୂର୍ବରୁ ଯୁବକମାନଙ୍କ ମଧ୍ୟରେ ଏପରି ସଂଘବଦ୍ଧ ଆନ୍ଦୋଳନ ପ୍ରାୟ ହୋଇନଥିଲା । ପ୍ରତ୍ୟେକ ଦେଶରେ ପ୍ରତ୍ୟେକ ଯୁଗରେ ଯୁବକମାନଙ୍କ ହୃଦୟରେ ନୂତନଭାବ ନୂତନ ଆଲୋକ ହଠାତ୍ ଖେଳିଯାଏ-ଏହା ଆଜିକାର ନୂଆ କଥା ନୁହେଁ । ନୂଆ କଥା ଏତିକି ଯେ ସେ ନୂତନଭାବ ବର୍ତ୍ତମାନ ଶୃଙ୍ଖଳାବଦ୍ଧ ହେଉଅଛି । ଯୁବକମାନଙ୍କର ଯେ ପ୍ରତ୍ୟେକ ବିଷୟରେ କର୍ତ୍ତବ୍ୟ ଅଛି ଓ ସେ କର୍ତ୍ତବ୍ୟ ସାଧନ ଉପରେ ଦେଶର ଭବିଷ୍ୟତ ମାନବୀୟତାର ଭବିଷ୍ୟତ ନିର୍ଭର କରେ । ଏହା ଆଜି କାଲିଯୁଗରେ କେତେ ଉପଲବ୍ଧି ହେଉଅଛି । ପୂର୍ବରୁ ପ୍ରାୟ ଏପରି ହୋଇନଥିଲା ।

(୨) ପରାଧୀନ ଦେଶମାନଙ୍କରେ ଯୁବକମାନଙ୍କ ମନରେ ଅଦମ୍ୟ ଭାବ ଆସିଅଛି । ମିଶର୍ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଛାତ୍ରମାନଙ୍କ ଧର୍ମଘଟ ଓ ଶୋଭାଯାତ୍ରା ଏକ ବିଶେଷ ଅଙ୍ଗ ବର୍ତ୍ତମାନ ସୁଦ୍ଧା ଅଛି । ଚୀନ୍ ଦେଶର ଖବର ଅଦ୍ୟାବଧି ନୂତନ । ସେ ଦେଶର ସ୍ୱାଧୀନତା କେବଳ ଯୁବକମାନଙ୍କର ଉଦ୍ୟମ ଉପରେ ପ୍ରତିଷ୍ଠିତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚୀନ୍ ଦେଶର ଛାତ୍ରମାନଙ୍କର ସ୍ୱାଧୀନତା ପାଇଁ ଉନ୍ମାଦନାର ବିଶେଷ ବିବରଣୀ ପାଠ କଲେ ରୋମାଞ୍ଚ ହେବ ହିଁ । ଧନ୍ୟ ସେ ଯୁବକବୃନ୍ଦ ଯାହାଙ୍କ ଭାବ ପ୍ରବଣତା ଚୀନ୍ ଦେଶକୁ ସ୍ୱାଧୀନତା ଆଣିଦେଲା ।

୩) ପରାଧୀନ ଭାରତରେ ମଧ୍ୟ ଯୁବକମାନେ ନିଶ୍ଚେଷ୍ଟ ନାହାନ୍ତି । ପରାଧୀନତାରୁ ମୁକ୍ତି ପାଇବା ବର୍ତ୍ତମାନ ଭାରତୀୟ ଯୁବକ ମନକୁ ଛୁଇଁ ଲାଣି । କିନ୍ତୁ ଭାରତୀୟ ଯୁବକର ସେ ଉନ୍ମାଦନା ନାହିଁ । ଏହାର କାରଣ ଭାରତରେ ଶିକ୍ଷାର ଦୋଷ । ଅନ୍ୟାନ୍ୟ ଦେଶମାନଙ୍କରେ ଯୁବକର ହୃଦୟକୁ ପୁଷ୍ଟ କରିବା ପାଇଁ ଯୁବକର ହୃଦୟକୁ ଆଶାରେ ଭରିଦେବା ପାଇଁ ଭୀଷଣ ଉଦ୍ୟମ । କିନ୍ତୁ ଭାରତରେ ଯୁବକର ହୃଦୟକୁ ଲୁପ୍ତ କରିବା ପାଇଁ, ତାହାର କୋମଳ ହୃଦୟକୁ ନିରାଶାପୂର୍ଣ୍ଣ କରିବା ପାଇଁ ଅକ୍ଲାନ୍ତ ପରିଶ୍ରମ ଆବଶ୍ୟକ ।

ଯୁବକର ଭାବ ଉପରେ ଦେଶର ଭାଗ୍ୟ ନିର୍ଭର କରେ । ଦେଶର ଭବିଷ୍ୟତ ଅବସ୍ଥା ଗଠନ ଉଦ୍ଦେଶ୍ୟରେ ଅନ୍ୟାନ୍ୟ ଦେଶମାନଙ୍କରେ ଶିକ୍ଷାବିତ୍‌ମାନେ ବିଶ୍ୱବିଦ୍ୟାଳୟରେ ଶିକ୍ଷାର ବିଧାନ କ୍ରମଶଃ ପରିବର୍ତ୍ତନ କରିଯାଉଅଛନ୍ତି । ଶିକ୍ଷା ଉପରେ ସିନା ଦେଶ ନିର୍ଭର କରେ । ଭାରତରେ ମଧ୍ୟ ତାହା ହିଁ ହୋଇଅଛି । ପ୍ରଭେଦ ଏତିକି ଯେ ଅନ୍ୟାନ୍ୟ ଦେଶମାନଙ୍କର ଶିକ୍ଷାବିତ୍‌ମାନେ ସ୍ୱଦେଶର ଉନ୍ନତି କହି ନିରଙ୍କୁଶଭାବରେ ଉଚ୍ଚଶିକ୍ଷାର ପ୍ରବର୍ତ୍ତନା କରାଉଛନ୍ତି-ଦେଶ ଯାହା ଚାହେଁ ଦେଶର ଭବିଷ୍ୟତ ଉଜ୍ଜ୍ୱଳ କରିବା ଉଦ୍ଦେଶ୍ୟରେ ଶିକ୍ଷାବିତ୍‌ମାନେ ଲାଗିଛନ୍ତି । କିନ୍ତୁ ଭାରତରେ ଶିକ୍ଷାର ଭାର ବିଦେଶୀ ସରକାର ହାତରେ । ଭାରତ ଚିରକାଳ ସୁପ୍ତ ନିଦ୍ରିତ ରହୁ ଏକଥା କାହାକୁ ଚାହେଁ । ତେଣୁ ଭାରତର ଶିକ୍ଷା ପଦ୍ଧତି ଭିନ୍ନ ପ୍ରକାରର । ଭାରତର ପରାଧୀନତା ପାଇଁ କ୍ଲାଇବ୍ ଯେତେ ଦାୟୀ ନୁହଁନ୍ତି ମେକ୍‌ଲେ ତେତିକି ଦାୟୀ । ଭାରତୀୟମାନଙ୍କୁ ନକଲି ସାହେବ କରିବା ଉଦ୍ଦେଶ୍ୟରେ ମେକ୍‌ଲେ ପ୍ରକାଶ୍ୟ ଭାବରେ ଶିକ୍ଷା ପ୍ରଣାଳୀ ସୃଷ୍ଟି କଲେ । ସେହି ଶିକ୍ଷା ଫଳରେ ଭାରତରେ ଯୁବକମାନଙ୍କ ମନରେ ସେତେ ଉନ୍ମାଦନା ଆସୁନାହିଁ । ଭାରତର ତଥାପି ଭାରତୀୟ ଯୁବକର ହୃଦୟ ସମ୍ପୂର୍ଣ୍ଣ ଶୁଷ୍କ ହୋଇନାହିଁ । ଭାରତର ଚାରିଆଡ଼େ ଯୁବକ ଆନ୍ଦୋଳନ ଗଣା ଅଧିକେ ଦେଖାଯାଉଛି । ବାସ୍ତବିକ ବର୍ତ୍ତମାନ ଭାରତର ସର୍ବୋଚ୍ଚ ଜାତୀୟ ଅନୁଷ୍ଠାନ କଂଗ୍ରେସ ଯୁବକମାନଙ୍କ ଭାବରେ ଅନୁପ୍ରାଣିତ ।

(୪) ଉତ୍କଳରେ ଯୁବକମାନଙ୍କ କଥା ଭାବିଲେ ଅନେକ ଉତ୍କଳୀୟ ବିଷାଦ ଆସିଥାଏ, ମାତ୍ର ବିଷାଦର କୌଣସି କାରଣ ନାହିଁ । କେବଳ ଉତ୍କଳୀୟ ଯୁବକ ହୃଦୟରେ ଯେ ସ୍ପନ୍ଦନ ନ ହେଉଛି ଏହା ନୁହେଁ, କେବଳ ଆଶାର ଅଭାବରୁ ଉତ୍କଳୀୟ ଯୁବକ ନତମସ୍ତକ । ଉତ୍କଳ ଯୁବକ ଯେତେବେଳେ ଇତିହାସ ପୃଷ୍ଠା ଓଲଟାଏ ସେତେବେଳେ ଦେଖେ ତାହାର ଅତୀତ ଗୌରବ ଉଜ୍ଜ୍ୱଳ । ତାହାର ପୂର୍ବ ପୁରୁଷମାନେ ଏକ ସମୟରେ ଗୌରବ କୀର୍ତ୍ତି ବିତରଣ କରିଥିଲେ । ଏକ ସମୟରେ ଉତ୍କଳର ବାଣିଜ୍ୟ-ଯାହାକୁ ଆଜିକାଲି ଚଷା ବୋଲି କହି ଘୃଣା କରୁଅଛୁଁ-ପବନ ପରାକ୍ରମୀ ମହାସାଗର ବାହିନୀମାନଙ୍କୁ ବାରମ୍ବାର ପରାସ୍ତ କରି ବିଜୟ ବୈଜୟନ୍ତୀ ଉଡ଼ାଇଥିଲେ । ଏକ ସମୟରେ ଉତ୍କଳ ଗୋଦାବରୀ ପର୍ଯ୍ୟନ୍ତ ଉଡ଼ାଇ ଦେଇଥିଲେ । ଏକ ସମୟରେ ଉତ୍କଳ କାରୁକଳା ନାନା ଦିଗରେ ବିକଶିତ ହୋଇ କେବଳ ଭାରତ ନୁହେଁ

ସମଗ୍ର ପୃଥିବୀର ଚକ୍ଷୁ ଝଲସାଇ ଦେଉଥିଲା । ଏହି ଐତିହାସିକ ତଥ୍ୟ ଉତ୍କଳୀୟ ଯୁବକ ଦେଖିଲା ମାତ୍ରକେ ତାହାର ରୋମ ଟାଙ୍କୁରି ଉଠେ । ହୃଦୟ ପୁଲକିତ ହୋଇ ଉଠେ । କିନ୍ତୁ ଉତ୍କଳର ବର୍ତ୍ତମାନ ଅବସ୍ଥା ଦେଖିଲେ ତତ୍‌କ୍ଷଣାତ୍ ମୁଣ୍ଡ ନଇଁଯାଏ । ଉତ୍କଳରେ ଆଦର୍ଶ ନାହିଁ । ସେଥିପାଇଁ ହତାଶ ହେବାର ନୁହେଁ । ଏକଲବ୍ୟ ପରି ଉତ୍କଳୀୟ ଯୁବକ କାଳ୍ପନିକ ଆଦର୍ଶ ଅନୁସରଣ କରି ଅତୀତ ଇତିହାସକୁ ସାକ୍ଷୀ ରଖି ଅଗ୍ରସର ହେବ । ବର୍ତ୍ତମାନ କେବଳ ଦରକାର ଉତ୍କଳୀୟ ଯୁବକର ଅନୁଭୂତି । ଗ୍ରାମେ ଗ୍ରାମେ ଶିକ୍ଷିତ ଯୁବକମାନେ ନିଜର କାର୍ଯ୍ୟକ୍ଷେତ୍ର କରି ନିଅନ୍ତୁ । ଚତୁର୍ଦ୍ଦିଗରେ ଯୁବକ ଆନ୍ଦୋଳନ ଆରମ୍ଭ ହେଉ । ଦୁଇଟି ବିଷୟ ବର୍ତ୍ତମାନ ଉତ୍କଳୀୟ ଯୁବକଙ୍କୁ ଆଲୋଡ଼ନ କରୁଅଛି ।

(୧) ପରାଧୀନତାରୁ ମୁକ୍ତି (୨) ଅନ୍ୟଦେଶ ସହିତ ସବୁ ବିଷୟରେ ପ୍ରତିଯୋଗିତା । କାର୍ଯ୍ୟ କିଛି ସହଜ ନୁହେଁ, ଦ୍ୱିଗୁଣ ଦୌଡ଼ ଦେବାକୁ ହେବ । ଏଥିପାଇଁ ଉତ୍କଳୀୟ ଯୁବକ ପଶ୍ଚାତ୍‌ପଦ ହେବା ଉଚିତ ନୁହେଁ । ଚାରିଆଡ଼େ ଯୁବକର ରାଜତ୍ୱ । ଉତ୍କଳରେ କାହିଁକି ଯୁବକ ନୀରବ ରହିବେ । ଉତ୍କଳରେ କାହିଁକି ଯୁବକମାନେ ପ୍ରବୀଣଙ୍କ ନିରୁତ୍ସାହ ନିରାଶା ନେତୃତ୍ୱ ଅଧୀନରେ ସନ୍ତୁଷ୍ଟ ଥିବେ ।

ଏହି ଦୀର୍ଘ ବକ୍ତବ୍ୟ ମହତାବଙ୍କର ରାଷ୍ଟ୍ରନୀତିଜ୍ଞ ଗୁଣମାନଙ୍କର ପରିଚୟ ଦିଏ । ମଧୁସୂଦନ ଓ ଗୋପବନ୍ଧୁଙ୍କ ପରି ସେ ମଧ୍ୟ ଯୁବଶକ୍ତିର ବିକାଶ ପାଇଁ ମତ ପ୍ରଦାନ କରିଥିଲେ । ଓଡ଼ିଶାରେ କଂଗ୍ରେସ ସଙ୍ଗଠନ, ଗାନ୍ଧୀବାଦୀ କାର୍ଯ୍ୟର ସଂପ୍ରସାରଣ ପାଇଁ ମହତାବଙ୍କର ଉଦ୍ୟମ ଥିଲେ ମଧ୍ୟ ତାହାଙ୍କର କାର୍ଯ୍ୟମାଳାର ସମାଲୋଚନା ହୋଇଥିଲା । ଓଡ଼ିଶା ରାଜନୀତିର ଏହି ସନ୍ଧିବେଳାରେ ମହତାବ ପତ୍ରପତ୍ରିକାମାନଙ୍କ ଦ୍ୱାରା ବହୁ ପ୍ରକାରେ ସମାଲୋଚିତ ହୋଇଥିଲେ । ତେବେ ମଧ୍ୟ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସମାଲୋଚନାକୁ ଦୃଷ୍ଟିକୁ ନଆଣି ସେ କାର୍ଯ୍ୟ କରିଚାଲିଥିଲେ ।

//୪//

ଓଡ଼ିଶା ଗଡ଼ଜାତ ସମୂହ ଓଡ଼ିଶା ପ୍ରଦେଶ ସହିତ ମିଶି ଏକ ଶାସନାଧୀନରେ ରଖିବା ବାସ୍ତବିକ୍ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଘଟଣା ଯାହାକି ଓଡ଼ିଶା ଇତିହାସରେ ଯୁଗ ଯୁଗାନ୍ତର ଯାଏ ଗୋଟିଏ ଯୁଗ ପ୍ରବର୍ତ୍ତକ ଅଧ୍ୟାୟ ରୂପେ ଲିପିବଦ୍ଧ ହୋଇ ରହିଥିବ । ଗଡ଼ଜାତ ମିଶ୍ରଣ ଇତିହାସରେ ମହତାବଙ୍କର ଅଂଶ କମ ନୁହେଁ । ମହତାବଙ୍କର ଚେଷ୍ଟାରୁ ହିଁ ଏ ଅସମ୍ଭବ ଘଟଣା ସମ୍ଭବ ହୋଇପାରିଛି । ପ୍ରଧାନମନ୍ତ୍ରୀ ଆସନରେ ବସିବା ପୂର୍ବେ ସୁଦ୍ଧା ମହତାବ ଏ ସମସ୍ୟା ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । ନିଜେ ଗଡ଼ଜାତ ତଦନ୍ତ କମିଟିର ଚେୟାରମ୍ୟାନ ଭାବେ ସେ ଏ ଦିଗରେ କ୍ରମାଗତ ଚେଷ୍ଟା କରିଥିଲେ । ୧୯୩୯ରେ ମହତାବ କମିଟି ଗଡ଼ଜାତ ରାଜାମାନଙ୍କର ସନନ୍ଦ ଉଠାଇ ଦେଇ ସେମାନଙ୍କୁ ଆଳି, କନିକା ପରି ଜମିଦାରୀରେ ପରିଣତ କରିବାକୁ ମତ ଦେଇଥିଲେ । ସେହିଦିନଠାରୁ ମହତାବ ରାଜାମହାରାଜାମାନଙ୍କର ପ୍ରଧାନଶତ୍ରୁ ବୋଲି ବିବେଚିତ ହେଲେ । କଳାହାଣ୍ଡି ମହାରାଜାଙ୍କ ଠାରୁ ତାଙ୍କୁ ପର୍ଶୁରାମ ଆଖ୍ୟା ମଧ୍ୟ ମିଳିଥିଲା । ପ୍ରଧାନମନ୍ତ୍ରୀ ଭାବେ ସେ ସର୍ବପ୍ରଥମେ ବ୍ରିଟିଶ ମନ୍ତ୍ରୀ ପ୍ରତିନିଧି (Cabinet Mission)ଙ୍କ ଆଗରେ ଏହି ସମସ୍ୟା ଉପସ୍ଥାପିତ କରି ଗଡ଼ଜାତଗୁଡ଼ିକର ଆଶୁ ମିଶ୍ରଣ ଦାବୀ କରିଥିଲେ । ସେତେବେଳେ ମହତାବଙ୍କର ଏହି ଉଦ୍ୟମକୁ ଅନେକ ଉପହାସ କରିଥିଲେ । ଏପରିକି ୧୯୪୭ ଜୁନ୍ ୩୦ ତାରିଖରେ ପାଟଣା ମହାରାଜ ଭାଇସ୍‌ରାୟଙ୍କ ପାଖକୁ ଲେଖିଲେ, "ଗତ କେତେ ବର୍ଷ ହେଲା ଓଡ଼ିଶା ଦେଶୀୟ ରାଜ୍ୟମାନଙ୍କ ପ୍ରତି ଓଡ଼ିଶା ପ୍ରାଦେଶିକ ସରକାରଙ୍କ ମତିଗତି ଯେ ବନ୍ଧୁଭାବାପନ୍ନ ନୁହେଁ ଏହା ମହାମାନ୍ୟ ବଡ଼ଲାଟଙ୍କୁ ଅଜଣା ନଥିବ । ଓଡ଼ିଶା ପ୍ରଦେଶ ସହ ଏହିସବୁ ଦେଶୀୟ ରାଜ୍ୟକୁ ମିଶାଇ ଦେବା ପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଯେଉଁ ପ୍ରସ୍ତାବ ଦେଇଛନ୍ତି, ଉତ୍କଳ ପ୍ରଦେଶ କମିଟି ଏହି ମିଶ୍ରଣକୁ ସମର୍ଥନ କରି ସ୍ମାରକପତ୍ରରେ ଇତିହାସକୁ ଯେଉଁଭଳି ବିକୃତ କରିଛନ୍ତି, ଓଡ଼ିଶା ପ୍ରଦେଶର ନେତାମାନେ ଯେଉଁସବୁ ବିବୃତି ପ୍ରକାଶ କରିଛନ୍ତି ଏବଂ ଓଡ଼ିଶା ପ୍ରଦେଶର ସମ୍ବାଦପତ୍ରମାନେ ଯେଉଁଭଳି ମତ ପ୍ରକାଶ କରୁଛନ୍ତି, ସେ ସବୁ ଫଳରେ ଓଡ଼ିଶା ଦେଶୀୟ ରାଜ୍ୟର ଶାସକମାନଙ୍କ ମନରେ ସନ୍ଦେହ ଓ କ୍ରୋଧ ଜାତ ହୋଇଥିଲା" ୧୯୪୭ ମସିହା ୩୦ ତାରିଖ ଜୁଲାଇରେ ଷଢ଼େଇକଳା ରାଜା ମଧ୍ୟ ମହତାବଙ୍କ ଉଦ୍ୟମ ବିରୁଦ୍ଧରେ ଏକ ସ୍ମାରକପତ୍ର ତତ୍‌କାଳୀନ ରେସିଡେଣ୍ଟ କର୍ଣ୍ଣେଲ ଟଫ୍‌ଙ୍କୁ ଦେଇଥିଲେ । ମହତାବ ଏଥିରେ ବିଚଳିତ ନ ହୋଇ ଭାବିଲେ ଯେ ରାଜାମାନେ ହୁଏତ ତାଙ୍କ ପ୍ରସ୍ତାବ ଭଲରୂପେ ବୁଝିପାରି ନାହାନ୍ତି । ଖୋଲାଖୋଲି ଭାବରେ ସବୁଜଣଙ୍କୁ ଆଲୋଚନା କରିବା ପାଇଁ ଆଗ୍ରହ ପ୍ରକାଶ କରି ରାଜାମାନଙ୍କୁ ସେ ଯେଉଁ ପତ୍ର ଦେଇଥିଲେ ସେଥିରେ ସେ ଲେଖିଥିଲେ -"ମୋର ଉଦ୍ଦେଶ୍ୟ ହେଉଛି ପ୍ରଦେଶ ଓ ଗଡ଼ଜାତମାନଙ୍କ ମଧ୍ୟରେ ଉଭୟଙ୍କ ସ୍ୱାର୍ଥ ଦୃଷ୍ଟିରୁ ଗୋଟିଏ ପ୍ରକାର ସମନ୍ୱୟ ରହୁ । ଏହା ନହେଲେ ବର୍ତ୍ତମାନ ଅବସ୍ଥାରେ ପ୍ରଦେଶ ବା ଗଡ଼ଜାତ କାହାରି ଉନ୍ନତି ହୋଇ ପାରିବ ନାହିଁ । ପ୍ରଦେଶ ସହ ମିଶିଲେ ସାଧାରଣ ସ୍ୱାର୍ଥପାଇଁ ଗଡ଼ଜାତମାନଙ୍କୁ ତାଙ୍କର କେତେକ ସାର୍ବଭୌମ କ୍ଷମତା ଛାଡ଼ିବାକୁ ହେବ । ସେହିପରି ପ୍ରଦେଶକୁ ମଧ୍ୟ ସାଧାରଣ ସ୍ୱାର୍ଥଲାଗି କେତେକ ଅଧିକାର ଛାଡ଼ିବାକୁ ହେବ । ଏହା କେବେ ହେଁ ଏକତରଫା କରିବାର ନୁହେଁ । ସବୁ ରାଜାମାନଙ୍କୁ ଏକତ୍ର ସାକ୍ଷାତ କରି ମୋର କଥାଟା ବୁଝାଇବାକୁ ଯଦି ମୋତେ ସୁଯୋଗ ମିଳନ୍ତା ମୋର, ଦୃଢ଼ ବିଶ୍ୱାସ ଯେ ମୋ କଥାରେ ମୁଁ ସେମାନଙ୍କୁ ହୃଦ୍‌ବୋଧ କରାଇ ଦେଇପାରନ୍ତି ।"

ଏଥିରେ ପାଟଣା ଓ କଳାହାଣ୍ଡିର ମହାରାଜ ସମ୍ମତ ହୋଇନଥିଲେ । କଳାହାଣ୍ଡି ମହାରାଜ କହିଥିଲେ-ଶାସନ କାର୍ଯ୍ୟରେ ପ୍ରଦେଶ ଓ ଗଡ଼ଜାତ ମଧ୍ୟରେ ସମନ୍ୱୟ ରଖିବା ସମ୍ପର୍କରେ ଯେଉଁ ପ୍ରସ୍ତାବ ହୋଇଛି, ବ୍ୟକ୍ତିଗତ ଭାବରେ ମୁଁ ତାହା ପସନ୍ଦ କରୁନାହିଁ । କାରଣ ଏହି ସବୁ ଅଞ୍ଚଳର ପରମ୍ପରା ଭିନ୍ନ ଭିନ୍ନ ଐତିହାସିକ ପରିସ୍ଥିତିରେ ଗଢ଼ା ହୋଇଛି ।

ମହତାବଙ୍କର ଉଦ୍ୟମକୁ ପଣ୍ଡ କରିବା ଲାଗି ଏହିପରି ଆଲୋଚନା ଚାଲିଲା । ଏପରିକି ବିଶ୍ୱବିଦ୍ୟାଳୟ ସୂତ୍ରରେ ରାଜାମାନଙ୍କ ଓଡ଼ିଶା ସହିତ ଯାହା କିଛି କ୍ଷୀଣ ସମ୍ପର୍କ ରହିଛି, ତାକୁ ସୁଦ୍ଧା ତୁଟାଇ ଦେବା ଲାଗି ଧମକ ଦେଇଥିଲେ । ଖୋଦ୍ ଓଡ଼ିଶାରେ ମହତାବଙ୍କର ଏହି ଉଦ୍ୟମକୁ କେହି କେହି ସେତେବେଳେ ପସନ୍ଦ କରିନଥିଲେ । ଓଡ଼ିଶାର ଶାନ୍ତ ବାୟୁମଣ୍ଡଳକୁ ବିଭ୍ରାଟ ଘଟାଉଛନ୍ତି ବୋଲି ସେ ବାରମ୍ବାର ଅଭିଯୁକ୍ତ

ହୋଇଥିଲେ । ତଥାପି ମହତାବ କୌଣସି ଭାବେ ବିଚଳିତ ହୋଇନଥିଲେ ଏବଂ ତାଙ୍କ ଉଦ୍ୟମକୁ କୋହଳ କରିବା ପାଇଁ କୌଣସି ଭାବେ ଚେଷ୍ଟା କରି ନଥିଲେ । ପରିଶେଷରେ ମହତାବଙ୍କର ଏ ଉଦ୍ୟମ ଜୟଯୁକ୍ତ ହୋଇଥିଲା । ଓଡ଼ିଆ ଜାତିର ବହୁ ଦିନର ପରିକଳ୍ପନା ସାର୍ଥକ ହୋଇଥିଲା । ମହତାବ ବିଶାଳ ଉତ୍କଳ ରାଷ୍ଟ୍ର ଗଠନର ଜନକ ରୂପେ ପରିଚିତ ହେଲେ ଏବଂ ଓଡ଼ିଶା ଇତିହାସରେ ତାଙ୍କର ଏ ବିଜୟ ଗୋଟିଏ ବିରାଟ ବିଜୟ ରୂପେ ଲିପିବଦ୍ଧ ହେଲା । ୧୯୪୬ ମସିହାଠାରୁ ୧୯୫୦ ପର୍ଯ୍ୟନ୍ତ ଏବଂ ୧୯୫୬ ଶେଷ ଭାଗରୁ ୧୯୬୦ ପର୍ଯ୍ୟନ୍ତ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବେ ଅବିସ୍ମରଣୀୟ ଅବଦାନ ଛାଡ଼ିଯାଇଛନ୍ତି । ୧୯୪୬ରୁ ୧୯୫୦ ମଧ୍ୟରେ ମହତାବ ଗଡ଼ଜାତ ମିଶ୍ରଣ କାର୍ଯ୍ୟ ପାଇଁ ସମାଲୋଚିତ ହୋଇଥିଲେ ମଧ୍ୟ ବୃହତର ଓଡ଼ିଶା ଗଠନରେ ସଫଳ ହୋଇଥିଲେ । ସରେଇକଳା ଓ ଖରସୁଆଁ ପରି ଗଡ଼ଜାତ ରାଜ୍ୟ ଦ୍ୱୟ ଏହି କାଳରୁ ଓଡ଼ିଶାରୁ ଯାଇ ବିହାରରେ ମିଶିଥିଲେ । ମହତାବଙ୍କର ସମସ୍ତ ଉଦ୍ୟମ ସତ୍ତ୍ୱେ ଏ ଦୁଇଟି ଗଡ଼ଜାତ ରାଜ୍ୟ ଓଡ଼ିଶାରୁ ବାଦ୍ ଯାଇଥିଲା । ତଥାପି ସେ ବିଶାଳ ଓଡ଼ିଶାର ନିର୍ମାତା । ସ୍ୱାଧୀନତା ପ୍ରାପ୍ତି ପରେ ଏବଂ ଏହା ପୂର୍ବରୁ ମହତାବଙ୍କର କାର୍ଯ୍ୟମାଳା ସମ୍ପର୍କରେ ତାଙ୍କ ବିବରଣୀ ତାଙ୍କ ରଚିତ "While Serving my Nation, Recollections of a Congressman"(ବିଦ୍ୟାପୁରୀ, କଟକ, ୧୯୮୬) ପୁସ୍ତକରେ ସ୍ଥାନ ପାଇଛି । ଏଥିରେ ଅଛି; "In these four Years, a powerful daily paper Prajatantra was established. An institution, named Prajatantra Prachara Samity was set up to publish the paper and also to undertake likely activities. A high class literary magazine, a children magazine and an annual writers conference known as Bisuv milan gave new life to intellectual side of the state. For sports, Barabati stadium was built. For propagation of Hindi. Rashtrabhasa Prachara Samity was established.On the side of administration the following are distinct achievements-canstruction of a new capital at Bhubaneswar, multipurpose project of Hirakud on the Mahanadi. These were new works." ୧୯୫୭ ରୁ ୧୯୬୦ ପର୍ଯ୍ୟନ୍ତ ମହତାବ ମୁଖ୍ୟମନ୍ତ୍ରୀ ଭାବେ କେତୋଟି ବିଷୟରେ ସଫଳତା ଆଣିଥିଲେ ।

୧- ବମ୍ବେ ମିଉଜିୟମ୍ ଢାଞ୍ଚାରେ ଓଡ଼ିଶା ମ୍ୟୁଜିୟମ୍ ପ୍ରତିଷ୍ଠା ।

୨- ନନ୍ଦନକାନନରେ ଚିଡ଼ିଆଖାନା ଓ ଉଦ୍ଭିଦ ଉଦ୍ୟାନ ପ୍ରତିଷ୍ଠା

୩-ସରକାରୀ କାର୍ଯ୍ୟାଳୟମାନ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ।

୪-ଭୁବନେଶ୍ୱରରେ ନୂତନ ରାଜଭବନ ନିର୍ମାଣ ।

୫-ଆବଶ୍ୟକତା ଉପଯୋଗୀ ରାଜ୍ୟ ବିଧାନସଭା ସୌଧ ନିର୍ମାଣ ।

୬-ସେକ୍ରେଟାରିଏଟ୍ ସୌଧ ନିର୍ମାଣ ।

୭-ସାହିତ୍ୟ ଏକାଡେମୀ, ସଙ୍ଗୀତ ନାଟକ ଏକାଡେମୀ ଓ ଲଳିତ କଳା ଏକାଡେମୀ ପ୍ରତିଷ୍ଠା ।

୮-ସାଂସ୍କୃତିକ ଉତ୍ସବ ଓ ସଭାସମିତି କରାଯିବା ଉଦ୍ଦେଶ୍ୟରେ କଳାମଣ୍ଡପ ଓ ରବୀନ୍ଦ୍ର ମଣ୍ଡପ ନିର୍ମାଣ ।

୯- ଭୁବନେଶ୍ୱରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ ସୌଧ ନିର୍ମାଣ ଲାଗି ସ୍ଥାନ ନିରୂପଣ ଓ ଭିତ୍ତି ପ୍ରତିଷ୍ଠା ।

ସ୍ୱାଧୀନତା ପ୍ରାପ୍ତି ପୂର୍ବେ ଏବଂ ସ୍ୱାଧୀନୋତ୍ତର କାଳରେ ମହତାବ ଥିଲେ ଅବିସ୍ମରଣୀୟ ନେତା ତଥା ଚିନ୍ତାନାୟକ । ଗଠନମୂଳକ କାର୍ଯ୍ୟମାଳା ସହିତ ଦେଶର ସାଂସ୍କୃତିକ ଧାରାର ସମ୍ପ୍ରସାରଣ ପାଇଁ ତାଙ୍କର ଉଦ୍ୟମ ବାସ୍ତବିକ୍ ଅନନ୍ୟ ସାଧାରଣ । ଓଡ଼ିଶାର ବୌଦ୍ଧିକ ମାନସକୁ ଶାଣିତ କରି ଚିନ୍ତା ଓ ଚେତନାରେ ସେ ନୂତନ ଦିଗନ୍ତ ଦେଖାଇଥିଲେ । ଯେଉଁମାନେ ତାଙ୍କ ସମ୍ପାଦିତ ଝଙ୍କାରରେ ତାଙ୍କ ସମ୍ପାଦକୀୟମାନ ଏବଂ ଗାଁ ମଜଲିସ୍ ପୁସ୍ତକ ଅଧ୍ୟୟନ କରିଥିବେ, ସେମାନେ ମହତାବଙ୍କର ଅନେକ ପ୍ରକାର ସୂଚନା ପାଇଥିବେ । ଓଡ଼ିଶା ଇତିହାସ, ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଅବଦାନ, ଦଶବର୍ଷର ଓଡ଼ିଶା ପ୍ରଭୃତି ଗ୍ରନ୍ଥରୁ ତାଙ୍କର ଇତିହାସ ଚେତନା ସହଜରେ ଆବିଷ୍କାର କରାଯାଇପାରେ । ଏହିସବୁ ଦୃଷ୍ଟିରୁ ମହତାବ ଆଧୁନିକ ଓଡ଼ିଶା ଇତିହାସର ଅଙ୍ଗ ହୋଇ ରହିବେ ।

ତଥ୍ୟ ସୂଚୀ

୧- ଉତ୍କଳ ଦୀପିକା, ମାର୍ଚ୍ଚ ୧୦, ୧୯୧୬, ଏପ୍ରିଲ ୧୨, ୧୯୧୯ ।

୨-ଆଶା, ଡିସେମ୍ବର ୩୦, ୧୯୨୯ ।

୩-ନବୀନ, ମେ ୧୧, ୧୯୪୮, ୧୯୪୭, ଡିସେମ୍ବର ୧୬ ।

୪-ବୃହତ୍ତର ଉତ୍କଳ ଗଠନରେ ବାଧାବିଘ୍ନ, ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗ, ୧୯୫୬ ।

୫-ଆରବ ସାଗରରୁ ଚିଲିକା, ୧୯୮୭ ।

୬-While serving my nation, Vidyapuri, Cuttack, 1986

ଇତିହାସ ବିଭାଗ, ଢେଙ୍କାନାଳ କଲେଜ, ଢେଙ୍କାନାଳ

# ଓଡ଼ିଶା : ଡକ୍ଟର ମହତାବ

• ଡକ୍ଟର ଯଶୋବନ୍ତ ନାରାୟଣ ଧର

ଓଡ଼ିଶାରେ ତଥା ଓଡ଼ିଆ ଅକ୍ଷର ଜଗତରେ ଡଃ ହରେକୃଷ୍ଣ ମହତାବଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ଥିଲା । ପୈତୃକ ପୂର୍ବପୁରୁଷଙ୍କ ଗାଁ ଅଗ୍ରେଶ୍ୱର(କଟକ ଅଞ୍ଚଳ), ମାମୁଁ ଘରେ ସେ ପୋଷ୍ୟପୁତ୍ର ହୋଇ ବଢ଼ିଥିଲେ ବାଲେଶ୍ୱରର ଆଗରପଡ଼ାରେ । ଭଦ୍ରକ ବା ବାଲେଶ୍ୱର ସହର ଉଭୟ ଥିଲା ତାଙ୍କର ଆଦ୍ୟ ସମାଜସେବା ଓ ରାଜନୀତିର କେନ୍ଦ୍ରସ୍ଥଳୀ । ପୁଣି କଟକର ବିହାରୀବାଗ ଓ ଭୁବନେଶ୍ୱରର ଏକାମ୍ର ନିବାସକୁ ସେ ନିଜର ସ୍ଥାୟୀ କର୍ମସ୍ଥଳୀ ରୂପେ ବାଛି ନେଇଥିଲେ । ଏତିକିରେ ତାଙ୍କର ସର୍ବ-ଉତ୍କଳୀୟ ଚରିତ୍ରର ସଂପୂର୍ଣ୍ଣ ପରିଚୟ ମିଳେନାହିଁ । ଅଧିକନ୍ତୁ ସାରା ଓଡ଼ିଶାରେ ତାଙ୍କର ଅଗାଧ ଲୋକପ୍ରିୟତା, ସାରା ଓଡ଼ିଶାର ଜନଜୀବନ ସମ୍ପର୍କରେ ତାଙ୍କର ଅତୁଳନୀୟ ଜ୍ଞାନ, ସାରା ଓଡ଼ିଶାର କୋଣେ ଅନୁକୋଣେ ରହିଥିବା ତାଙ୍କର ଅନୁଗାମୀ ଓ ପ୍ରଶଂସକ ଆଗଙ୍ଗା-ଗୋଦାବରୀ ବିସ୍ତୃତ ତାଙ୍କ ବିଶାଳ ବ୍ୟକ୍ତିତ୍ୱ ସମ୍ପର୍କରେ ସମ୍ୟକ୍ ସୂଚନା ଦେଇଥାଏ ।

## ହରେକୃଷ୍ଣ ବଦରିକାବନ

ଲେଖକ, ନାଟ୍ୟକାର, ବକ୍ତା, ଐତିହାସିକ, ସାମ୍ବାଦିକ, ବିଧାୟକ, ମନ୍ତ୍ରୀ, ରାଜ୍ୟପାଳ, ଏମିତି ନାନା ବିଶେଷଣରେ ଡଃ. ହରେକୃଷ୍ଣ ମହତାବଙ୍କୁ ଆଭୂଷିତ କଲେ ବି ତାଙ୍କର ଅସୀମ ଗୁଣରାଶିମାନ ସଂପୂର୍ଣ୍ଣ ପ୍ରକାଶିତ କିମ୍ବା ଆଚ୍ଛାଦିତ କରି ହୁଏ ନାହିଁ । ସେ ସ୍ୱାଧୀନୋତ୍ତର ଓଡ଼ିଶାରେ ପ୍ରାୟ ଚାଳିଶ ବର୍ଷ ଧରି ନିଜର ବ୍ୟାପକ କାୟା ଓ ଛାୟା ବିସ୍ତାର କରି ବ୍ୟାପୀ ରହିଥିଲେ । ମାତ୍ର ସେ ବରଗଛ ନଥିଲେ । କାରଣ ବରଗଛର ଛାଇରେ ଅନ୍ୟ ବୃକ୍ଷତ ଦୂରର କଥା, ଦୁବଘାସ ବି ଅଙ୍କୁରିତ ହୋଇପାରେ ନାହିଁ । ନିଜକୁ ସେ ଏକ ବିରାଟ ଅରଣ୍ୟ କରିପାରିଥିଲେ- ଏକ ବିରାଟ ଅନୁଷ୍ଠାନରେ ପରିଣତ କରିପାରିଥିଲେ । ନିଜକୁ ବାଉଁଶିପାହାଡରୂପେ ପ୍ରତିପାଦିତ କରି ଓଡ଼ିଶାର ବହୁ ଜ୍ଞାନୀଗୁଣୀ ପ୍ରଭାବଶାଳୀ ଓ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କୁ ସେ କ୍ଷମତା, ସାହିତ୍ୟ ଓ ସଂସ୍କୃତିର ରତ୍ନସିଂହାସନ ନିକଟରେ ପହଞ୍ଚିବାର ସୁଯୋଗ ଓ ସୁବିଧା ପ୍ରଦାନ କରିଥିଲେ । ସେ ହୁଏତ ବୋଧିଦ୍ରୁମ ନଥିଲେ, ଥିଲେ ବଦରିକା ବନ !

## ଭାରତୀୟ ରାଜନୀତି ଓ ଡ଼ଃ. ମହତାବ

ବେଳେ ବେଳେ ମନେହୁଏ ରାଜନୀତି କରିବାକୁ ଆସିବା ବେଳେ ସେ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କୁ ନିଜର ଆଦର୍ଶ ଭାବରେ ଗ୍ରହଣ କରି ନେଇଥିଲେ । ଅବଶ୍ୟ ସେ କାଳରେ ପ୍ରତିଟି ସଂଭ୍ରାନ୍ତ ଶିକ୍ଷିତ ଭାରତୀୟ ସୁଯୋଗ ପାଇଲେ ଜବାହର ହେବାକୁ ଚେଷ୍ଟା କରିବାରେ ଭୁଲ କିଛି ନଥିଲା । ସେଥିପାଇଁ ସେ ରାଜନୀତି ସହିତ ସାମ୍ବାଦିକତାର ସମ୍ପର୍କକୁ ମୂଳରୁ ଗୁରୁତ୍ୱ ଦେଇଆସିଥିଲେ । (ଯେମିତି National Herald ଥିଲା ଜବାହର ଲାଲଙ୍କର) । ଡଃ. ମହତାବ ନିଜେ ରାଜନୀତିରେ ଯେତେ ବ୍ୟସ୍ତ ରହିଲେ ହେଁ ଓଡ଼ିଶାର ଇତିହାସ ସମ୍ପର୍କରେ ଗବେଷଣା ଓ ଅଧ୍ୟୟନ କରିବା ସହିତ ଓଡ଼ିଶା ଇତିହାସ ଲେଖିବାରେ ମନ ବଳାଇଥିଲେ (ଯେମିତି ପଣ୍ଡିତ ନେହେରୁ ଲେଖିଥିଲେ ଭାରତ ଇତିହାସ । Discovery of India ଓ Glimpse of Indian History ନାଆଁରେ) ଡଃ. ହରେକୃଷ୍ଣ ମହତାବ ନିଜକୁ ଜଣେ ଶିଶୁପ୍ରିୟ ବ୍ୟକ୍ତିରୂପେ ପ୍ରତିପାଦିତ କରିବା ପାଇଁ କକା ମହତାବ ହୋଇ ମୀନାବଜାର ପତ୍ରିକା ଓ ମୀନାମଣ୍ଡଳୀର ଉଦ୍ୟୋକ୍ତା ହୋଇଥିଲେ(ଯେମିତି ପଣ୍ଡିତ ନେହେରୁ ଥିଲେ ଏ ଦେଶର ଲକ୍ଷ ଲକ୍ଷ ଶିଶୁଙ୍କର ପ୍ରିୟ ଚାଚା ନେହେରୁ) ମାତ୍ର, ଏସବୁ ସତ୍ତ୍ୱେ ଭାଗ୍ୟର ବିଡ଼ମ୍ବନା ଯେ ସ୍ୱାଧୀନତାପୂର୍ବ ଭାରତୀୟ ରାଜନୀତିରେ ସୁଭାଷ ବୋଷଙ୍କ ଅଭ୍ୟୁଦୟ କାଳରେ ସେ ସର୍ଦ୍ଦାର ପଟେଲଙ୍କ ପକ୍ଷଭୁକ୍ତ ହୋଇଗଲେ । ଏଣୁ ପଣ୍ଡିତ ନେହେରୁଙ୍କର ନିରଙ୍କୁଶ ସମର୍ଥନ ପାଇପାରିଲେ ନାହିଁ । ଅଧିକନ୍ତୁ ଗୋଟିଏ ସମୟରେ ସାମୟିକ ଭାବରେ ହେଲେ ସୁଦ୍ଧା ପଣ୍ଡିତଜୀଙ୍କ କୋପ ଦୃଷ୍ଟିରେ ସେ ପଡ଼ିଥିଲେ ବୋଲି ଶୁଣାଯାଏ । ଏହା ସତ୍ତ୍ୱେ ଓଡ଼ିଶାର ରାଜନୀତିରେ ସେ ଯେପରି ଭାବରେ ନିଜର ପ୍ରଭାବ ଶେଷ ପର୍ଯ୍ୟନ୍ତ ବିସ୍ତାର କରି ରଖିପାରିଥିଲେ, ତାହା ଅନ୍ୟ କୌଣସି ନେତାଙ୍କ ପକ୍ଷରେ ଏ ପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ । ପୁନଶ୍ଚ ସେ କିମ୍ବା ତାଙ୍କରି ସହକର୍ମୀ, ଶିଷ୍ୟ, ସମର୍ଥକ ହୋଇଥିବା ବ୍ୟକ୍ତି ହିଁ କେବଳ ଓଡ଼ିଶାରେ ଗତ ପଚାଶବର୍ଷରେ କୋଡ଼ିଏ କେମିତି ତିରିଶିବର୍ଷ ଛାଡ଼ିଦେଲେ ସବୁବେଳେ ମୁଖ୍ୟମନ୍ତ୍ରୀ ରହିଆସିଛନ୍ତି ।

## ସାମ୍ବାଦିକତା ଓ ସାହିତ୍ୟିକ ସାମର୍ଥ୍ୟ

ତେବେ ସେ ଯାହା ହେଉ ଲେଖକ ମହତାବ, ସାମ୍ବାଦିକ ମହତାବ ଓ ରାଜନୀତିଜ୍ଞ ମହତାବଙ୍କ ଏକ ସାମଗ୍ରିକ ପରିଚୟ ଆମେ ପାଉ ତାଙ୍କଦ୍ୱାରା ପ୍ରତିଷ୍ଠିତ ପ୍ରଜାତନ୍ତ୍ରର ନିୟମିତ ସ୍ତମ୍ଭ 'ଗାଁ ମଜଲିସ୍'ରୁ । ଏଇ ଗାଁ ମଜଲିସ୍ ପୃଷ୍ଠା ବାସ୍ତବରେ ଥିଲା ପ୍ରଜାତନ୍ତ୍ରର ସ୍ୱାକ୍ଷରିତ ସମ୍ପାଦକୀୟ ଓ ନିର୍ଣ୍ଣାୟକ ମନ୍ତବ୍ୟ । ପରବର୍ତ୍ତୀ କାଳରେ ଏହି ତାତ୍କାଳିକ ସମସ୍ୟା ପ୍ରସୂତ ସାମ୍ବାଦିକଧର୍ମୀ ରଚନାଗୁଡ଼ିକର ସାର୍ବଜନୀନ ଆବେଦନ ଓ ସର୍ବକାଳିକ ମୂଲ୍ୟକୁ ବିଚାରକୁ ନେଇ କେନ୍ଦ୍ର ସାହିତ୍ୟ ଏକାଡେମୀ ଏହାର ସଙ୍କଳନକୁ ପୁରସ୍କାର ପ୍ରଦାନ କରିଥିଲେ । ମାତ୍ର ସେହି ପୁରସ୍କାର ଠାରୁ ଅଧିକ ମହନୀୟ ଥିଲା ଗାଁ ମଜଲିସ୍‌ର ଓଡ଼ିଶା ବ୍ୟାପୀ ଅନ୍ତର୍ଭେଦୀ ଶକ୍ତି ଓ ଲୋକପ୍ରିୟତା । ଗାଁ ମଜଲିସ୍‌ର ନିୟମିତ ପାଠକମାନେ ନିଶ୍ଚୟ ଲକ୍ଷ୍ୟ କରିଥିବେ ଯେ ସାରା ଓଡ଼ିଶାର କୋଣ ଅନୁକୋଣରେ କୌଣସି ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସମ୍ପର୍କରେ ଏହାର ଲେଖକ ଡ଼ : ହରେକୃଷ୍ଣ ମହତାବ

ଯେଉଁ ତଥ୍ୟଭିତ୍ତିକ ଓ ତୁଳନାତ୍ମକ ବିଶ୍ଳେଷଣ ପ୍ରଦାନ କରୁଥିଲେ, ତାହା ତାଙ୍କର ଏନ୍‌ସାଇକ୍ଲୋପେଡ଼ିଆ ସୁଲଭ ଜ୍ଞାନଗର୍ଭକତାର ସୂଚନା ଦେଉଥିଲା ।

ସାମ୍ବାଦିକତା ଓ ସମ୍ବାଦ ସମ୍ପୃକ୍ତ ଏ ଲେଖକଙ୍କର ସବୁଠାରୁ ବଡ଼ ଶକ୍ତି ହେଲା ଯେ ସାହିତ୍ୟିକମାନେ ଯେଉଁ ପରିଶ୍ରମ କରି ସୃଜନୀଶକ୍ତିର ପ୍ରୟୋଗରେ ମହାକାଳ ବକ୍ଷରେ ସ୍ଥାନ ସୃଷ୍ଟି କରିବାର ପ୍ରୟାସ କରିଥାନ୍ତି, ତତୋଧିକ ଶକ୍ତିର ଅଧିକାରୀ ସାମ୍ବାଦିକମାନେ ପ୍ରାୟ ସମାନୁପାତିକ ସୃଜନୀଶକ୍ତିର ପ୍ରୟୋଗ କରି ସମାଜର ଦୁଃଖ ଉପନୋଦନ ପାଇଁ ସାହସ କରିଥାନ୍ତି । ମହାକାଳିକ ଆସ୍ପର୍ଦ୍ଧାକୁ ତ୍ୟାଗ କରି ସମାଜ କଲ୍ୟାଣ ଉଦ୍ଦେଶ୍ୟରେ ନିଜର ସୃଜନୀଶକ୍ତିକୁ ବିନିଯୋଗ କରିଥିବାରୁ ସାମ୍ବାଦିକମାନେ ଧନ୍ୟବାଦାର୍ହ । ଓଡ଼ିଶାରେ ଯେଉଁ ଦୁଇଜଣ ସାହିତ୍ୟ ମହାରଥୀ ସାମାଜିକ ବାଲୁଚରକୁ ଶସ୍ୟଶ୍ୟାମଳା କରିବା ପାଇଁ ନିଜର ସାହିତ୍ୟ ସାମର୍ଥ୍ୟର ଚିରସ୍ରୋତା ନଦୀକୁ ମରୁଭୂମିରେ ବିସର୍ଜିତ କଲେ, ସେ ଦୁଇଜଣ ହେଉଛନ୍ତି ଗୋଦାବରୀଶ ମହାପାତ୍ର ଓ ହରେକୃଷ୍ଣ ମହତାବ ।

## ଆନ୍ଦୋଳନ ଓ ଅନୁଷ୍ଠାନ

ରାଜନୀତି ଓ ସାହିତ୍ୟର ମଧ୍ୟବିନ୍ଦୁ ଭାବରେ ସାମ୍ବାଦିକତାକୁ ଗ୍ରହଣ କରିନେଇ ଡ଼ଃ. ହରେକୃଷ୍ଣ ମହତାବ ନିଜ ଉଦ୍ୟମରେ ସମ୍ବାଦପତ୍ର ପ୍ରକାଶନକୁ ଏକ ବିଧିବଦ୍ଧ ରୂପ ଦେଇଥିଲେ । ଏହି ଦୃଷ୍ଟିରୁ ସେ ଥିଲେ ଉତ୍କଳମଣି ଗୋପବନ୍ଧୁ, ଉତ୍କଳ ଗୌରବ ମଧୁସୂଦନଙ୍କ ଆଦର୍ଶର ଅନୁଗାମୀ । ଗୋପବନ୍ଧୁ ସତ୍ୟବାଦୀକୁ କେନ୍ଦ୍ରକରି ବନ ବିଦ୍ୟାଳୟ ପ୍ରତିଷ୍ଠା ତଥା ସମାଜ ଓ ସତ୍ୟବାଦୀ ପତ୍ରିକାର ପ୍ରକାଶନ ଆରମ୍ଭ କରିଥିଲେ । ସେହିପରି କଟକକୁ କେନ୍ଦ୍ରକରି ଉତ୍କଳ ଗୌରବ ଶିଳ୍ପ ପ୍ରତିଷ୍ଠାନ, ଲୋକ ପ୍ରତିନିଧି କାର୍ଯ୍ୟ ତଥା New Orissa ଇଂରାଜୀ ସମ୍ବାଦପତ୍ର ପ୍ରକାଶନ କାର୍ଯ୍ୟ କରିଯାଇଛନ୍ତି । ମୁଖ୍ୟତଃ ଏସବୁ ଥିଲା ଏକ ଏକ ଆନ୍ଦୋଳନ, ଅନୁଷ୍ଠାନ ନୁହେଁ । ଅନୁଷ୍ଠାନ ରୂପେ ଗୋପବନ୍ଧୁଙ୍କ ବିଦ୍ୟାଳୟ ଓ ମଧୁସୂଦନଙ୍କ ଶିଳ୍ପ କେନ୍ଦ୍ର ଚରମ ବିଫଳତାର ସମ୍ମୁଖୀନ ହୋଇଥିଲା । ମାତ୍ର ଏହି ଏକ ସମୟାନୁସାରୀ ଆନ୍ଦୋଳନ ରୂପେ ତାହା ସାଧାରଣ ଜନମାନସ ତଥା ବୁଦ୍ଧିଜୀବୀ ବର୍ଗକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ଏହି ଆନ୍ଦୋଳନ ଏତେ ତୀବ୍ର ଓ ସଫଳ ଥିଲା ଯେ ତା'ରି ସହିତ ପାଦ ମିଳାଉଥିବା ସମସ୍ତ ବ୍ୟକ୍ତି ବିଶେଷ ନିଜ ନିଜ କ୍ଷେତ୍ରରେ ଏକ ଏକ ତୁଙ୍ଗ ବ୍ୟକ୍ତିତ୍ୱରେ ପରିଣତ ହୋଇଥିଲେ । ସଫଳ ନେତୃତ୍ୱ ହିଁ ସମସ୍ତ ବିଫଳତା ଭିତରେ ଏହି ଦୁଇ ବ୍ୟକ୍ତିଙ୍କୁ ମହାନ୍ ରୂପେ ପ୍ରତିଷ୍ଠା ଦେଇଛି । ଏହି ଦୃଷ୍ଟିରୁ ଡଃ. ହରେକୃଷ୍ଣ ମହତାବଙ୍କୁ ଏକ ସଙ୍ଗଠକ ଓ ଅନୁଷ୍ଠାନର ନେତୃତ୍ୱ ନେଉଥିବା ବ୍ୟକ୍ତି ଭାବରେ ପ୍ରଥମେ ଦେଖିବାକୁ ପାଉଥାଉ । ଭାରତୀ ମନ୍ଦିର ଠାରୁ ଆରମ୍ଭ କରି ଜନ କଂଗ୍ରେସ ସଙ୍ଗଠନ ପର୍ଯ୍ୟନ୍ତ ଆମେ କିନ୍ତୁ ଏହି ମଠାଧୀଶଙ୍କୁ ଦେଖିବାକୁ ପାଉ ଏକ ଭିନ୍ନ ଅନନ୍ୟ ଭୂମିକାରେ । ସାଧାରଣତଃ, ଆନ୍ଦୋଳନଟିଏ ଆରମ୍ଭ ହୁଏ ଏବଂ ତା'ରି ଭିତରୁ ନେତୃତ୍ୱ ଓ ସଙ୍ଗଠନର ସୃଷ୍ଟି ହୁଏ କିମ୍ବା ନେତୃତ୍ୱ ସଙ୍ଗଠନକୁ ସୁଦୃଢ଼ କରି ଆନ୍ଦୋଳନକୁ ପରିଚାଳନା କରିବାକୁ ଚେଷ୍ଟିତ ହୁଏ । ବିଶ୍ୱରାଜନୀତିର ଇତିହାସରେ ଫରାସୀ ବିପ୍ଳବ, ଆମେରିକାର ସ୍ୱାଧୀନତା ସଂଗ୍ରାମରେ ଆନ୍ଦୋଳନ ଭିତରୁ ସଙ୍ଗଠନର ଜନ୍ମ ହୋଇଥିବା ବେଳେ ଋଷର କମ୍ୟୁନିଷ୍ଟ ଆନ୍ଦୋଳନ ଓ ଭାରତର ସ୍ୱାଧୀନତା ସଂଗ୍ରାମରେ ସଙ୍ଗଠନ ହିଁ ମୁଖ୍ୟତଃ ଆନ୍ଦୋଳନକୁ ପରିଚାଳିତ କରିଥିଲା । ଭାରତରେ ସର୍ବୋଦୟ ଆନ୍ଦୋଳନ ଓ ଜୟପ୍ରକାଶଙ୍କ ନେତୃତ୍ୱର ପୁନଃପ୍ରତିଷ୍ଠା ଗୁଜୁରାଟ ନବନିର୍ମାଣ ସମିତି ଆନ୍ଦୋଳନ ଭିତରୁ ହୋଇଥିଲା । ବୋଧହୁଏ ଡଃ. ହରେକୃଷ୍ଣ ମହତାବ ଖୁବ୍ ଭଲ ଭାବରେ ଏସବୁକୁ ଅଧ୍ୟୟନ କରିଥିଲେ ଏବଂ ଉଭୟ ପଦ୍ଧତିର ସଫଳ ପ୍ରୟୋଗ ସେ ନିଜ ଜୀବନ କାଳରେ କରିଯାଇଛନ୍ତି ।

ଯେତେବେଳେ ସେ କୌଣସି ଆନ୍ଦୋଳନ ଉପରେ ନିଜର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ପ୍ରତିଷ୍ଠା କରିଛନ୍ତି, ସେତେବେଳେ ସେ ତାକୁ ଆନୁଷ୍ଠାନିକ ରୂପ ଦେବାକୁ ଯାଇ ସାଙ୍ଗଠନିକ ସ୍ଥିରତାର ସୃଷ୍ଟି କରାଇଛନ୍ତି କିମ୍ବା ଯେତେବେଳେ କୌଣସି ସଙ୍ଗଠନ ଉପରେ ସେ କର୍ତ୍ତୃତ୍ୱ ବିସ୍ତାର କରିଛନ୍ତି, ସେତେବେଳେ ତାକୁ ଗତିଶୀଳ କରିବାର ସମସ୍ତ ପ୍ରୟାସ କରିଛନ୍ତି । ବାଲେଶ୍ୱର ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ପଦବୀରେ ଥିଲାବେଳେ ସେ ଅଗରପଡ଼ାରେ କର୍ମ ମନ୍ଦିର ଓ ବିଦ୍ୟାମନ୍ଦିର ପ୍ରତିଷ୍ଠା କରିଥିଲେ । ଅନୁରୂପ ଭାବରେ ସେ ପ୍ରଜାତନ୍ତ୍ର ପ୍ରକାଶନର ଶୁଭାରମ୍ଭ କରିଥିଲେ ଏବଂ ପରେ ତାକୁ ଆନୁଷ୍ଠାନିକ ରୂପରେ ପ୍ରଜାତନ୍ତ୍ର ପ୍ରଚାର ସମିତି ରୂପେ ପରିବର୍ତ୍ତିତ କରିଥିଲେ । ଏହି ପ୍ରଜାତନ୍ତ୍ର ପ୍ରଚାର ସମିତି ହିଁ ଥିଲା ତାଙ୍କର କର୍ମବଳୟର କେନ୍ଦ୍ରବିନ୍ଦୁ ।

ଏହା ତାଙ୍କର ମଠ ବା ଦରବାର ନଥିଲା ବରଂ ଥିଲା ଏକ ସେନାପତିର ଶକ୍ତିଶାଳୀ ବ୍ୟୁହ । ସେ ପ୍ରଜାତନ୍ତ୍ର ପ୍ରଚାର ସମିତିର କାର୍ଯ୍ୟକଳାପକୁ ଗତିଶୀଳ କରାଇବାକୁ ଯାଇ କେବଳ ଏହାକୁ ଏକ ସମ୍ବାଦପତ୍ର ପ୍ରକାଶନ କାର୍ଯ୍ୟାଳୟରେ ସୀମିତ ରଖି ନଥିଲେ, ଅଧିକନ୍ତୁ ଏକ ବହୁମୁଖୀ ସାଂସ୍କୃତିକ ଅନୁଷ୍ଠାନ ରୂପେ ଏହାକୁ କାର୍ଯ୍ୟକ୍ଷମ କରାଇ ଝଙ୍କାର, ମୀନାବଜାର, ଇଷ୍ଟର୍ଣ୍ଣଟାଇମ୍ସ ଆଦି ପତ୍ରପତ୍ରିକାର ପ୍ରକାଶନ ଆରମ୍ଭ କରିଥିଲେ । ଅପରପକ୍ଷରେ ବିଷୁବ ମିଳନର ଆୟୋଜନ କରି ସାଂସ୍କୃତିକ, ସାହିତ୍ୟିକ ସମାରୋହରେ ସାରା ଓଡ଼ିଶାର ବୁଦ୍ଧିଜୀବୀ ଓ କଲମଜୀବୀ ବର୍ଗକୁ ସେ ଏଥିରେ ସାମିଲ କରାଇ ପାରିଥିଲେ । ଫଳରେ ବିଷୁବ ମିଳନ ଅନୁଷ୍ଠାନ ସାରା ଓଡ଼ିଶାରେ ଏକ ବ୍ୟାପକ ସାଂସ୍କୃତିକ ଆନ୍ଦୋଳନ ରୂପେ ବ୍ୟାପି ଯାଇଛି । ଫଳରେ ଓଡ଼ିଶାର ଏହି ପର୍ବପର୍ବାଣୀ ଏବେ ସାହିତ୍ୟିକ ସାଂସ୍କୃତିକ ରୂପ ପରିଗ୍ରହ କରିଛି । ବିଭିନ୍ନ ପତ୍ର ପତ୍ରିକା ମଧ୍ୟ ମକର ମିଳନ ଓ ରଜୋତ୍ସବ ଆଦିର ଆୟୋଜନ କରି ଏକ ସାମଗ୍ରିକ ସଂହତିର ପରିଚୟ ଦେଉଛନ୍ତି ।

## ରାଜନୀତି ଓ ସାହିତ୍ୟ

ସକ୍ରେଟିସ୍, ପ୍ଲେଟୋ, ଭଲଟେୟାରଙ୍କ ସମୟରୁ ତଥା ଫରାସୀ ବିପ୍ଳବ ଆନ୍ଦୋଳନ କାଳରୁ ସାମ୍ବାଦିକ, ଦାର୍ଶନିକମାନଙ୍କ ଭୂମିକା ରାଜନୀତିରେ ସ୍ୱୀକୃତ ହୋଇଥିଲେ ହେଁ ସାଧାରଣତଃ ସେମାନେ ଉପଦେଷ୍ଟା ଭୂମିକା କିମ୍ବା ପ୍ରଚାରକ କର୍ମୀ ଭୂମିକାରେ ଅବତୀର୍ଣ୍ଣ ହେଉଥିବା ଦେଖାଯାଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଆଇନଜୀବୀମାନେ ରାଜନୀତି ସହିତ ଘନିଷ୍ଠ ପରିମାଣରେ ହେଉଥିଲେ ହେଁ ସେମାନେ ସାମ୍ବାଦିକତା ସହିତ ଘନିଷ୍ଠ ପରି ବହୁତ ପୂର୍ବ ସମ୍ପର୍କ ରକ୍ଷା କରୁଥିଲେ । ମହାତ୍ମା ଗାନ୍ଧୀଙ୍କ ପରି ବହୁ ପୂର୍ବ

ପରମ୍ପରାକ୍ରମେ ସାମ୍ବାଦିକତାକୁ ତାଙ୍କ ରାଜନୀତିର ବାର୍ତ୍ତା ପ୍ରଚାର ପାଇଁ ମୁଖ୍ୟ ଆୟୁଧ ରୂପେ ଗ୍ରହଣ କଲେ ।

ଓଡ଼ିଶାରେ ଗୋପବନ୍ଧୁ ଏହି ଧାରାର ପ୍ରବର୍ତ୍ତକ ଥିଲେ । ସେ ଆଉ ପାଦେ ଆଗେଇ ଯାଇ ଗୁରୁଦେବ ରବୀନ୍ଦ୍ର ନାଥଙ୍କ ଢ଼ାଞ୍ଚାରେ ସାହିତ୍ୟ ଓ ଶିକ୍ଷାନୁଷ୍ଠାନକୁ ନିଜର ରାଜନୈତିକ କ୍ଷେତ୍ରରେ ସାମିଲ୍ କରିଦେଲେ । ମାତ୍ର ଆଧୁନିକ ପେଶାଦାର ରାଜନୈତିକ ବ୍ୟକ୍ତିଙ୍କ ମଧ୍ୟରେ ଡଃ. ହରେକୃଷ୍ଣ ମହତାବ ହିଁ ପ୍ରଥମ ବ୍ୟକ୍ତି ଯେ ସାହିତ୍ୟ ଓ ସଂସ୍କୃତିର ଉନ୍ନତି ନିମନ୍ତେ ତାଙ୍କର ରାଜନୈତିକ ଶକ୍ତିକୁ ବିନିଯୋଗ କରିଥିଲେ । ଫଳରେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ କିଛିଟା ଚଳଚଞ୍ଚଳତା ସୃଷ୍ଟି ହୋଇଛି । ଅନ୍ୟାନ୍ୟ ରାଜ୍ୟମାନଙ୍କରେ ବହୁ ରାଜନୈତିକ ନେତା ଶ୍ରମିକ ଆନ୍ଦୋଳନ ଓ ଛାତ୍ର ଆନ୍ଦୋଳନ ପୃଷ୍ଠପଟରୁ ରାଜନୈତିକ ନେତୃତ୍ୱ ହାସଲ କରିଥିଲେ ହେଁ ଓଡ଼ିଶାରେ ଶିକ୍ଷିତ ସାହିତ୍ୟିକ ବ୍ୟକ୍ତିଗଣ ରାଜନୀତିରେ ଉଚ୍ଚ ଆସନ ହାସଲ କରିବାରେ ସମର୍ଥ ହୋଇଛନ୍ତି ।

### ସାରା ଓଡ଼ିଶାର ନେତା

ମହତାବ ଥିଲେ ସାରା ଓଡ଼ିଶାର ରାଜନୈତିକ ନେତା । କେବଳ ରାଜନୀତି ନୁହେଁ, ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ସେହିଁ ଥିଲେ ମୁରବୀ । କଳାହାଣ୍ଡିର କୋଉ ଗାଁରେ କୋଉ ଫସଲ ହୁଏ, ସେ କଥା ତାଙ୍କୁ ଜଣାଥିଲା । ସେତେବେଳର ଓଡ଼ିଶାର ସମସ୍ତ ପଦସ୍ଥ ଅଫିସରଙ୍କ ଦକ୍ଷତା ଓ କୁଶଳତା ତାଙ୍କ ନଖଦର୍ପଣରେ ଥିଲା । ପରିଣତ ବୟସରେ ମଧ୍ୟ ଅଚିହ୍ନା ଅଜଣା ଯୁବକ କିଏ ତାଙ୍କ ଆଗରେ ପଦେ କଥା କହିଲାବେଳେ ସେ ତାକୁ ମନ ଦେଇ ଶୁଣୁଥିଲେ ଓ ତାକୁ ଉତ୍ସାହିତ କରୁଥିଲେ । ସାହିତ୍ୟ ଜଗତକୁ ନବୀନମାନଙ୍କୁ ବରଣ କରିନେବା ପାଇଁ ସେ ଝଙ୍କାର ସାହିତ୍ୟ ପତ୍ରିକାର ତୋରଣକୁ ସଦା ଉନ୍ମୁକ୍ତ ଓ ପ୍ରଶସ୍ତ ରଖିଥିଲେ ।

ବିଚ୍ଛିନ୍ନାଞ୍ଚଳଠାରୁ ଆରମ୍ଭ କରି ଉପକୂଳ ଓଡ଼ିଶା ପର୍ଯ୍ୟନ୍ତ ସର୍ବତ୍ର ତାଙ୍କର ପ୍ରଭାବ ଥିଲା ଅଖଣ୍ଡ । ଏହିସବୁ ଦୃଷ୍ଟିରୁ ବିଚାର କଲେ ସାରା ଓଡ଼ିଶାର ସେ ଥିଲେ ଏକ ସମ୍ପୂର୍ଣ୍ଣ ନେତୃତ୍ୱ ସମ୍ପନ୍ନ ବ୍ୟକ୍ତିତ୍ୱ ।

*ସହକାରୀ କେନ୍ଦ୍ରନିର୍ଦ୍ଦେଶକ, ଆକାଶବାଣୀ, ସମ୍ବଲପୁର*

# କୋଟିକରେ ଗୋଟିଏ ସନ୍ତାନ

ମଧୁସୂଦନ ଲେଖିଥିଲେ "କୋଟିଏ ସନ୍ତାନ ମା'ଗୋ ଧରିଅଛୁ କୋଳେ, ଗୋଟିଏ ସନ୍ତାନ ମା'ଗୋ ନଦେଖିଲି ଡୋଳେ" । ସେ ନିଜେ ଗୋଟିଏ ସନ୍ତାନ ହେବା ପାଇଁ ଚେଷ୍ଟା କରିଥିଲେ । ସେହିପରି ଗୋପବନ୍ଧୁ ଓ ତାଙ୍କର ସାଥୀମାନେ । ଏତେବଡ଼ ଓଡ଼ିଶା କି ବିଶାଳ ଅତୀତ । କଳା ଏବଂ ଐଶ୍ୱର୍ଯ୍ୟରେ ଯେଉଁ ରାଜ୍ୟ ଭାରତର ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ରଚନା କରିଥିଲା, ଶେଷକୁ ତାକୁ ତା'ର ନିଜସ୍ୱ ଶକ୍ତି, ନିଜର ସ୍ୱାତନ୍ତ୍ର୍ୟ ହରାଇବାକୁ ହେଲା । ଊନବିଂଶ ଶତାବ୍ଦୀର ଓଡ଼ିଶା ହେଲା ଏକ ଶ୍ରୀହୀନ ବିଦ୍ଧ୍ୱସ୍ତ ରାଜ୍ୟ । ଅନ୍ୟର ଅଂଶ ବିଶେଷ ଖଣ୍ଡ ବିଖଣ୍ଡିତ, ପରମୁଖାପେକ୍ଷୀ, ଏକ ସୁପ୍ତ ଆତ୍ମବିସ୍ମୃତ ଜାତି । ତାକୁ ଜଗାଇବା ପାଇଁ ବହୁ ବୀର ପୁରୁଷ ଜନ୍ମ ହେଲେ । ଭାଷା, ସାହିତ୍ୟ, ସମାଜ ସେବା ଓ ରାଜନୀତି କ୍ଷେତ୍ରରେ -ଡ଼ଃ ହରେକୃଷ୍ଣ ମହତାବ ଥିଲେ ସେମାନଙ୍କ ମଧ୍ୟରୁ ଜଣେ । ଗତ ଶତାବ୍ଦୀର ଶେଷରେ ତାଙ୍କର ଜନ୍ମ । ସ୍ୱାଧୀନତା ସଂଗ୍ରାମ ଅବସରରେ ଭାରତର ବହୁ ଶ୍ରେଷ୍ଠ ବ୍ୟକ୍ତିଙ୍କ ପରି ତାଙ୍କର କର୍ମଜୀବନର ଆରମ୍ଭ, ଜେଲରେ ହେଉ ବା ବାହାରେ ହେଉ । ତାଙ୍କର ବ୍ୟକ୍ତିତ୍ୱର ସେ ଅଦମ୍ୟ ତେଜ, ଅସାଧାରଣ କର୍ମପଟୁତା କ୍ଷଣେ ହେଲେ ନିଷ୍ପ୍ରଭ ହୋଇନାହିଁ । ବିବେକାନନ୍ଦ, ମହାତ୍ମାଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନ ସମସ୍ତେ ତାଙ୍କର ଜୀବନକୁ ପ୍ରଭାବିତ କରିଥିଲେ-ତ୍ୟାଗ, ତିତିକ୍ଷା, ପ୍ରଚଣ୍ଡ କର୍ମର ପ୍ରେରଣା ଓ ତା ମଧ୍ୟରେ ଏକ ପଛୁଆ ଜାତିକୁ ଉଠାଇବାର ସଙ୍କଳ୍ପ । ସେଥିରେ ସେ ମୁହୂର୍ତ୍ତେ ମଧ୍ୟ ପଛାଇ ନାହାନ୍ତି । ଏପରି କର୍ମମୟ ଜୀବନ, ଏପରି ଇଚ୍ଛାଶକ୍ତି, ନିଜର ସଙ୍କଳ୍ପିତ କାର୍ଯ୍ୟରେ କେହି ବାଧା ଦେଲେ ବା ବିଘ୍ନ ଦେଖାଗଲେ ସେଥିପ୍ରତି ଏକ ବେଖାତିର, ବେପରବା ମନୋଭାବ ଖୁବ କ୍ୱଚିତ୍ ଦେଖାଯାଏ । ନିଜେ କେବଳ ଉତ୍ସାହିତ ନୁହନ୍ତି, ଏକ ଉତ୍ସାହର ସ୍ରୋତ । ଯେ କିଛି ଭଲ କାମ କରୁଛି, ତାକୁ ସାହସ ଦେବା, ଉତ୍ସାହ ଦେବା । ସେ ସବୁବେଳେ କହୁଥିଲେ ଓଡ଼ିଶାରେ ଆବଶ୍ୟକ ଏକ କର୍ମର ପ୍ଲାବନ ସ୍ରୋତ । ସ୍ୱାମୀ ବିବେକାନନ୍ଦଙ୍କର ସେ ଉଦାହରଣ ଦେଉଥିଲେ : ଯେଉଁଠି ତମୋଗୁଣର ପ୍ରବଳତା, ଲୋକେ ନିଶ୍ଚେଷ୍ଟ, ନିରୁପାୟ, ଭାଗ୍ୟବାଦୀ ସୁପ୍ତ-ସେଠାରେ ରଜୋଗୁଣର ତାଣ୍ଡବନୃତ୍ୟ ଦରକାର ।

ସ୍ୱାଧୀନତା ସଂଗ୍ରାମ ବେଳେ ସେ ସାମାନ୍ୟ ସୈନିକରୁ ଉଠି ହେଲେ ଓଡ଼ିଶାର ଅନନ୍ୟସାଧାରଣ ନେତା । ପ୍ରଦେଶ କଂଗ୍ରେସର ସଭାପତି ଓ ତତ୍କାଳୀନ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ-ଭାରତର ଯେଉଁ ଯେଉଁ ବଛା ବଛା ନେତା ଓ ଯୋଦ୍ଧାମାନେ ତା'ର ସଭ୍ୟ ଥିଲେ । ୪୨ ଆନ୍ଦୋଳନରେ ଅହମ୍ମଦନଗର ଦୁର୍ଗରେ ଆହ୍ମାଗୀ ହିମାଚଳରୁ ଯେଉଁ ୨୧ ଜଣ ନେତା କାରାରୁଦ୍ଧ ହୋଇଥିଲେ, ସେମାନଙ୍କ ମଧ୍ୟରେ ସେ ଥିଲେ ଜଣେ । ସେମାନଙ୍କ ମଧ୍ୟରୁ ୧୯ ଜଣ ଚାଲି ଯାଇଥିଲେ । ସେ ଏବଂ ଖାଁ ଅବଦୁଲ୍ ଗଫୁର ଖାଁ ଥିଲେ । ମାତ୍ର ତାଙ୍କ ପରେ ସେହି ଗୌରବମୟ ଦିନର ଓ ସଂଗ୍ରାମର ସାକ୍ଷୀ ରୂପେ ଆଉ ଦେଶରେ କେହି ଜୀବିତ ନାହାନ୍ତି । ଜେଲରେ ସେ ସମୟ ଖାଲି କଟାଇ ନାହାନ୍ତି । ପଣ୍ଡିତ ନେହେରୁ ଲେଖିଲେ "ଡ଼ିସ୍କଭରି ଅଫ୍ ଇଣ୍ଡିଆ" । ସେ ଲେଖିଲେ ଓଡ଼ିଶାର ଏକ ନୂତନ ପ୍ରାମାଣିକ ଇତିହାସ ।

ସେ ଥିଲେ ସେହି ଶ୍ରେଣୀର ବ୍ୟକ୍ତି, ଯେ କି ସମସ୍ତଙ୍କର ଊର୍ଦ୍ଧ୍ୱରେ ରହନ୍ତି, ସମସ୍ତଙ୍କ ନେତୃତ୍ୱ ନେବା ପାଇଁ ଜନ୍ମ । ମଧୁସୂଦନ, ଗୋପବନ୍ଧୁଙ୍କ ପରେ ହେଲେ ସେ ଓଡ଼ିଶାର ନେତା । ସ୍ୱାଧୀନତା ପୂର୍ବରୁ ଓ ସ୍ୱାଧୀନତା ପରେ ପ୍ରଥମ ମୁଖ୍ୟମନ୍ତ୍ରୀ ଭାବରେ ସ୍ୱପ୍ନ ଏକ ସାମାଜ୍ୟର ଦିଗ୍‌ବିଜୟର । ଗଡ଼ଜାତ ସବୁ ମିଶି ବିଶାଳ ଓଡ଼ିଶା ଗଢ଼ା ହେବ, ନୂଆ ରାଜଧାନୀ ଐତିହାସିକ ଭୁବନେଶ୍ୱର ନଗରୀରେ ହେବ, ମହାନଦୀର ବିପୁଳ ଜଳରାଶିକୁ ବନ୍ଧାଯାଇ ଓଡ଼ିଶାକୁ କୃଷି ଓ ଶିଳ୍ପରେ ସମୃଦ୍ଧ କରାଯିବ । ଚୌଦ୍ୱାରରେ ହେବ ନୂଆ କୁଟୀରଳ । କୁଟୀରଳ ଖାଲି ବମ୍ବେ, ଅହମଦାବାଦ, କଲିକତାରେ ହେଉଥିବ, ଓଡ଼ିଶାରେ ହେବ ନାହିଁ ? ନୂଆ ସମ୍ବାଦପତ୍ର ବାହାରିବ ଓଡ଼ିଶାର ନବଯୁଗର ବାର୍ତ୍ତା ନେଇ, ନୂଆ ସାହିତ୍ୟ ପତ୍ରିକା ବାହାରିବ ସାହିତ୍ୟିକମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେବା ପାଇଁ । ସାହିତ୍ୟ, ସଂସ୍କୃତି, କଳା, କୃଷି, ସ୍ୱାଭିମାନ ସବୁ କ୍ଷେତ୍ରରେ ଓଡ଼ିଶାକୁ ଆଗେଇ ନେବାକୁ ହେବ । ଯେତେଦିନ ସେ କ୍ଷମତାରେ ରହିଥିଲେ ଓଡ଼ିଶାରେ ଏବଂ ଦିଲ୍ଲୀରେ ବା ବମ୍ବେରେ ଗଭର୍ଣ୍ଣର ଭାବରେ ବା କ୍ଷମତାର ବାହାରେ ରହିଲେ-ସେଥିପାଇଁ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଥିଲେ । କେବଳ ଓଡ଼ିଶାକୁ ନୁହେଁ, ଭାରତର ନୀତି ନିର୍ଦ୍ଧାରଣରେ ଦେଶର ଜଣେ ବିଶିଷ୍ଟ ନେତା ଭାବରେ ତାଙ୍କର ଦାନ କମ୍ ନଥିଲା । ତାହା ଥିଲା ଦେଶ ପାଇଁ, ଜାତି ପାଇଁ ଏକ ମହାନ୍ ସମର୍ପିତ ଜୀବନ !

**ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ**

# ନବ ଓଡ଼ିଶାର ନିର୍ମାତା ଡ଼କ୍ଟର ମହତାବ

• ଡକ୍ଟର ଚିଦାନନ୍ଦ ମହାନ୍ତି

"ପ୍ରତ୍ୟେକ ଜୀବନ ଏକ ବିରାଟ ଉପନ୍ୟାସ । କେତେ ଛୋଟବଡ଼ ଘଟଣାର ଘାତ-ପ୍ରତିଘାତରେ ପ୍ରତ୍ୟେକ ଜୀବନ ଏ ସଂସାରର ଭିଡ଼ ଭିତରେ ଯେ ଠେଲି ପେଲି ଚାଲିଛି, ଭାବିଲେ ବିସ୍ମିତ ହେବାକୁ ହୁଏ । ମୋ ପରି ସମସ୍ତେ ଗତି କରି ଆସୁଛନ୍ତି, ଅଜ୍ଞାତରୁ ବାହାରି ପୁଣି ସେ ଅଜ୍ଞାତରେ ଲୋପ ପାଇ ଯାଉଛନ୍ତି । ଏ ମଝି ଅବସ୍ଥାଟିକୁ ଜାହାର କିପରି ଜାଣିଲେ ଅଗ୍ରଗତିରେ ପରସ୍ପରକୁ ସାହାଯ୍ୟ କରା ହୁଏ, ତେଣୁ ଏ ଆଲୋଚନା, ନିଜ ମନର ପ୍ରକାଶ୍ୟ ଚିନ୍ତା ମାତ୍ର । (ସାଧନାର ପଥେ- ଡକ୍ଟର ହରେକୃଷ୍ଣ ମହତାବ)

ଆତ୍ମଜୀବନୀ ରଚନାର ଏ ଉପୋଦ୍‌ଘାତରେ ଡ଼କ୍ଟର ମହତାବ ଯେଉଁ ଯଥାର୍ଥ ପ୍ରକାଶ କରିଛନ୍ତି, ତାହା ସର୍ବଜନ ଗ୍ରାହ୍ୟ ଓ ସର୍ବକାଳ ଉପଯୋଗୀ-ଏକ ଚିରନ୍ତନୀ ଚେତାବନୀ । ପ୍ରତିଟି ଜୀବନ ସାଧନାମୟ । ଗୋଟିଏ ଜୀବନର ଆରମ୍ଭ ଧରଣୀରେ ଭୂମିଷ୍ଠ ହେବା ଦିନଠାରୁ, ପୁଣି ଧରଣୀ ଗର୍ଭରେ ବିଲୀନ ହେବା ପର୍ଯ୍ୟନ୍ତ-ଏହି ଜୀବନ କାଳରେ ସଂଘଟିତ ସାର୍ଥକତା ଓ ବ୍ୟର୍ଥତାର ପରସ୍ପର ସଂଘାତ ଓ ପଥ ମଧ୍ୟରେ ସମ୍ମୁଖୀନ ହୋଇଥିବା ସଂଘର୍ଷ ଭବିଷ୍ୟତର ଦାୟାଦମାନଙ୍କୁ ପଥ ପ୍ରଦର୍ଶନ କରିବା ସହିତ ସାର୍ଥକ ଜୀବନଟିର ଆଦର୍ଶ ଅନ୍ୟମାନଙ୍କୁ ଆକୃଷ୍ଟ କରେ, ଅନୁପ୍ରାଣିତ କରେ । ଏଣୁ ଡକ୍ଟର ମହତାବଙ୍କ ପରି ପ୍ରଥିତଯଶା ବ୍ୟକ୍ତିମାନଙ୍କ ଜୀବନୀ ପର୍ଯ୍ୟାଲୋଚନା ଦ୍ୱାରା ଉତ୍ତର ପିଢ଼ି ଯେ ଭବିଷ୍ୟତର ସମ୍ଭାବନା ନିମନ୍ତେ ମନୋବଳକୁ କିଛି ପୁଞ୍ଜିରୂପେ ଲାଭ କରିପାରିବେ ଏହା ନିଃସନ୍ଦେହ । କେଉଁ ପ୍ରକାର ପରିବେଶ ଓ ପରିସ୍ଥିତିର ପ୍ରତିକୂଳତାକୁ ସେ କିପରି ସାମନା କରି ଅନୁକୂଳ ବାତାବରଣ ସୃଷ୍ଟି କରିବା କାର୍ଯ୍ୟରେ ସମର୍ଥ ହୋଇଥିଲେ, କର୍ମର ପୂର୍ଣତା ପାଇଁ ଯେଉଁ ଯଶସ୍ୱୀ ହୋଇଥିଲେ, ସେକଥା ପ୍ରତିଟି ପାଠକ ପ୍ରାଣକୁ ଆପ୍ଲୁତ କରିପାରିଲେ, ତାହାଙ୍କ ଜୀବନ ପୁସ୍ତକ ଅଧ୍ୟୟନ ଅନୁଧ୍ୟାନର ସୁଫଳ ମିଳିପାରିବ ।

ଡକ୍ଟର ମହତାବଙ୍କ ଜୀବନର ଆରମ୍ଭ ଆଜକୁ ଏକଶତ ବର୍ଷ ପୂର୍ବେ ୧୮୯୯ ମସିହା ନଭେମ୍ବର ତା ୨୧ ରିଖରେ । ଇତିମଧ୍ୟରେ ଅତିବାହିତ ହୋଇଥିବା ଗୋଟିଏ ଶତାବ୍ଦୀରେ ପୃଥିବୀ ପୃଷ୍ଠରେ କ୍ଷିପ୍ରଗତିରେ ଯେତେ ପରିବର୍ତ୍ତନ ଘଟିଛି, ସେ ସବୁ ସଂପର୍କରେ ସଚେତନ ନ ଥିଲେ ଆଜି ଦୁନିଆର ତରୁଣ ଗୋଷ୍ଠୀ ସେହି ଚିରସଂଗ୍ରାମମୟ ବରେଣ୍ୟ ବୀରମାନଙ୍କ କ୍ରିୟାକଳାପକୁ ଆକଳନ କରି ପାରିବେ ନାହିଁ ।

ଏକ ସାମନ୍ତବାଦୀ ପରମ୍ପରାର ଦାୟାଦ ଥାଇ ବି ଡ: ମହତାବ ସାମନ୍ତବାଦ ମୂଳୋତ୍ପାଟନର ଥିଲେ ସୂତ୍ରଧର । ରାଜ ଉଆସରେ ଜନ୍ମି, ଲାଳିତ ପାଳିତ ହୋଇ ରାଜତନ୍ତ୍ରର ଭୋଗ ବିଳାସ ଓ ସୁଖସ୍ୱାଚ୍ଛନ୍ଦ୍ୟକୁ ତ୍ୟାଗ କରି ଗଣତନ୍ତ୍ରର ଆବାହନ କରିବା ଓ ମହାଭାରତର ସେନାପତି ଭୀଷ୍ମଙ୍କ ପରି ଗୋଟିଏ ଗୋଟିଏ ଶରରେ ବହୁ ନୃପତିଙ୍କ ଶିରସ୍ତ୍ର ରାଜମୁକୁଟମାନ ଭୂଲୁଣ୍ଠିତ କରିବା ଯୋଗେ ସେ ଏ ଯୁଗର ପ୍ରାଣ ପ୍ରତିଷ୍ଠ ଭୀଷ୍ମଦେବ ପଦ ବାଚ୍ୟ ।

ଇଟାଲିର ଗାରିବାଲ୍‌ଡ଼ି, ଜର୍ମାନୀର ବିସ୍‌ମାର୍କଙ୍କ ପରି ଏ ରାଜ୍ୟରେ ଥିବା ଦେଶୀୟ ରାଜ୍ୟ ଓ ଜମିଦାରୀଗୁଡ଼ିକୁ ଏକୀକରଣ କରିବା ଦ୍ୱାରା କେବଳ ରାଜନୈତିକ ଶାସନର ସୁବିଧା କରି ନାହାନ୍ତି ବରଂ ଏ ରାଜ୍ୟର ସାମାଜିକ, ନୈତିକ, ଅର୍ଥନୈତିକ, ଶୈକ୍ଷିକ ଓ ଗମନାଗମନର ସଂଯୋଗ ଘଟାଇ ରାଜକୀୟ ଅନ୍ଧାରୀ ଶାସନର ଅପସାରଣ ସଙ୍ଗେ ସଙ୍ଗେ ଗଣତନ୍ତ୍ରର ଆଲୋକରେ ଉଭାସିତ କରାଇଛନ୍ତି । ବନହରିଣୀ ପ୍ରାୟ ବେଗବତୀ ମହାନଦୀର କୂଳ ପ୍ଲାବନୀ ବନ୍ୟାର କରାଳ ଗ୍ରାସରୁ ଏ ରାଜ୍ୟକୁ ରକ୍ଷା କରିବା ନିମନ୍ତେ ହୀରାକୁଦ ବନ୍ଧ ପରି ଶତିରୋଧକାରୀ ବହୁମୁଖୀ ପ୍ରକଳ୍ପ କାର୍ଯ୍ୟକାରୀ କରିବା ଫଳରେ ବିଦ୍ୟୁତ୍ ଉତ୍ପାଦନ ଓ ଜଳସେଚନ ଆଦି ଦ୍ୱାରା ତାକୁ ଏକ କାମଧେନୁରେ ପରିଣତ କରି ଦେଇଛନ୍ତି । ତାଙ୍କର ଏ କାର୍ଯ୍ୟ ପରବର୍ତ୍ତୀ ଯୋଜନାକାରୀମାନଙ୍କୁ ପଥ ପ୍ରଦର୍ଶନ କରାଇ ଆମ ରାଜ୍ୟର ବ୍ରାହ୍ମଣୀ ନଦୀରେ ରେଙ୍ଗାଲି ଓ ଇନ୍ଦ୍ରାବତୀ ନଦୀରେ ବନ୍ଧବାନ୍ଧ ଯୋଜନା ପାଇଁ ଦିଗ୍ ନିର୍ଦ୍ଦେଶ କରିପାରିଛି ।

ଏ ରାଜ୍ୟକୁ ଶିଳ୍ପ ସମୃଦ୍ଧ କରିବା ପାଇଁ ରାଉରକେଲାର ଇସ୍ପାତ୍ କାରଖାନା ନିମନ୍ତେ ସର୍ବେକ୍ଷଣ ପାଇଁ ଭିତ୍ତିପତନ କରିବା, କୌଦ୍ୱାରର ବସ୍ତ୍ରଶିଳ୍ପ ପ୍ରତିଷ୍ଠା ପାଇଁ ଯୋଜନା କରିବା, ପାରାଦ୍ୱୀପ ବନ୍ଦର ବାଟେ ଲୌହ ରପ୍ତାନୀ ପାଇଁ ମାର୍ଗ ପ୍ରସ୍ତୁତ କରିବା ଦିଗରେ ମହତାବଙ୍କ ଦୂରଦୃଷ୍ଟି ତାହାଙ୍କ ଉତ୍ତରାଧିକାରୀ ଶାସନବର୍ଗଙ୍କୁ ଫଳ ପ୍ରାପ୍ତି ଓ ପ୍ରଶଂସିତ ହେବା ପାଇଁ ସୁଯୋଗ ସୃଷ୍ଟି କରିଥିଲା । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଥିଲା ତାଙ୍କର କାମ୍ୟ ।

ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରକୁ ମଧ୍ୟ ମହତାବଙ୍କ ଦାନ ଅସାମାନ୍ୟ । ଉପନ୍ୟାସ, ଗଳ୍ପ, କବିତା ଓ ନାଟକ ଆଦି ସୃଜନାତ୍ମକ ସାହିତ୍ୟ ସୃଷ୍ଟି ସାଙ୍ଗକୁ 'ଝଙ୍କାର' ପରି ସର୍ବଜନାଦୃତ ସପ୍ତାହ ସାହିତ୍ୟ ପତ୍ରର ପ୍ରତିଷ୍ଠା ଓ ସଂପାଦନା କରି ଡକ୍ଟର ମହତାବ ନୂତନ ଯୁଗର ବହୁ କବି, ଗାଳ୍ପିକ, ପ୍ରାବନ୍ଧିକ, ତତ୍ତ୍ୱାନୁସନ୍ଧାନୀ ଗବେଷକ ଓ ସମାଲୋଚକଙ୍କୁ ସୃଷ୍ଟି କରିବାରେ ସହାୟକ ହୋଇଛନ୍ତି । ଉତ୍କଳ ସାହିତ୍ୟ ସମାଜ ପରି ମାନ୍ୟତାପ୍ରାପ୍ତ ଐତିହ୍ୟ ଅନୁଷ୍ଠାନ ବିବାଦ ମଧ୍ୟରେ ସନ୍ତୁଳିତ ହେବା ଦେଖି ତାହାର ସମାଧାନ ପାଇଁ ଚେଷ୍ଟା କରି ବିଫଳ ହେବାରୁ ପ୍ରଜାତନ୍ତ୍ର ମାଧ୍ୟମରେ ସାହିତ୍ୟିକମାନଙ୍କୁ ମିଳିତ କରିବା ପ୍ରଚେଷ୍ଟା କରିଥିଲେ । ତାଙ୍କ ସୃଷ୍ଟିର ମିଳିଲା ପ୍ରଜାତନ୍ତ୍ର ପରିସରରେ ଅନୁଷ୍ଠିତ ବାର୍ଷିକ ବିଷୁବ ମିଳନ ମଞ୍ଚରେ ଓଡ଼ିଶା ଓ ଓଡ଼ିଶା ବାହାରୁ ଆଗତ ସାହିତ୍ୟିକ, ବିଦ୍ୱାନ୍ ଓ ବିଶିଷ୍ଟ

କ୍ଷେତ୍ରରେ ପ୍ରତିଷ୍ଠିତ ଶିଳ୍ପକଳା ନିପୁଣ ଶିଳ୍ପୀମାନଙ୍କ ସମାବେଶରେ । ମହତାବଙ୍କ ମସ୍ତିଷ୍କ ପ୍ରସୂତ ଓ ପ୍ରବର୍ତ୍ତିତ ଏହି ସମାବେଶ ପରିଗଣିତ ହେଲା ଏକ ଜାତୀୟ ଉତ୍ସବ ରୂପେ । ଏହାର ଅନୁସରଣରେ ରାଜ୍ୟସାରା ବିଭିନ୍ନ ସମୟରେ ସାହିତ୍ୟିକ ସମାବେଶମାନ ଅନୁଷ୍ଠିତ ହେଲା ଓ ସାଂସ୍କୃତିକ ସଚେତନତା ପୁଷ୍ଟିଲାଭ କଲା । ସାହିତ୍ୟ କେବଳ ମନସ୍ତୁଷ୍ଟି ପାଇଁ ନୁହେଁ, ସାମାଜିକ କୃଷ୍ଟି ମଧ ତା'ରି ମୂଳରେ ନିହିତ ଥିବା ପ୍ରମାଣିତ ହେଲା । ତାଙ୍କରି ଅନୁଭୂତିରୁ ଚଳନ୍ତି କଥା, ସାମାଜିକ ସମସ୍ୟା ଓ ତା'ର ସମାଧାନ ନିମନ୍ତେ ଦିଗ୍‌ଦର୍ଶନ ପ୍ରଜାତନ୍ତ୍ରର ପୃଷ୍ଠାରେ ପ୍ରକାଶିତ 'ଗାଁ ମଜଲିସ୍' ସଂକଳିତ ହୋଇ ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତିର ଗୌରବ ପ୍ରଦାନ କଲା ।

ପ୍ରଜାତନ୍ତ୍ର ପ୍ରଚାର ସମିତି କେବଳ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶକାରୀ ସଂସ୍ଥା ନଥିଲା । ବରଂ ଗୋଟିଏ ସାହିତ୍ୟିକ ଓ ସାଂସ୍କୃତିକ ଆଲୋଚନାକାରୀ ସଂସ୍ଥା ହେଲା । ତହିଁରେ ମଧ ନୂତନ ଜାଗରଣର ଅଭ୍ୟୁଦୟ ଘଟିଲା । ଓଡ଼ିଶାର ସାହିତ୍ୟିକମାନଙ୍କ ସହିତ ଅନ୍ୟ ପ୍ରାନ୍ତରୁ ସାହିତ୍ୟିକମାନେ ଆସି ଓଡ଼ିଶାର ସାହିତ୍ୟକୁ ଜାଣିବାର ଅବକାଶ ପାଇଲେ । ତାମିଲ୍, କାନାଡ଼ିଜ୍, ମାଲାୟାଲମ୍ ଭାଷା ସାହିତ୍ୟକାରମାନେ ଓଡ଼ିଆ ସାହିତ୍ୟର ଇତିହାସକୁ ଅଧ୍ୟୟନ କରି ଓଡ଼ିଶାର ଜୟଜୟକାର କରିବାକୁ ଲାଗିଲେ । ଭାରତର ସାଂସ୍କୃତିକ କ୍ଷେତ୍ରରେ ଓଡ଼ିଶାର ନାମ ଅପରିଚିତ ଥିଲା । ବନାରସ, ଏହ୍ଲାବାଦ, ଦିଲ୍ଲୀ ଆଦି ସ୍ଥାନରେ ପୁରୀ ଜଗନ୍ନାଥ କ୍ଷେତ୍ର ଯୋଗୁଁ ଯେତିକି ଜଣାଥିଲା ସିନା ମାତ୍ର ଏହି ବିଷୁବ ମିଳନ ଉତ୍ସବ ମଣ୍ଡପରେ ଜହିବାକୁ ପଡୁଥିବାରୁ ପ୍ରବାସରୁ ଆଗନ୍ତୁକ ଅତିଥିମାନେ ବାଧହୋଇ ଇଂରାଜୀରେ ପ୍ରକାଶିତ ଓଡ଼ିଶାର ଇତିହାସ ଓ ସାହିତ୍ୟ ପଢ଼ିଲେ ।

ସନ୍ଧ୍ୟାରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ଓଡ଼ିଶୀ ନୃତ୍ୟ, ସଙ୍ଗୀତ, ବିଭିନ୍ନ ସ୍ଥାନରୁ ଆଗତ ଚ୍ଛୁମା ଓ ରାବଣଛାୟା ଆଦି ଲୋକ ନୃତ୍ୟ ପ୍ରଦର୍ଶନ, ଓଡ଼ିଆ ଓ ସଂସ୍କୃତ ନାଟକ ପରିବେଷଣ କରାଗଲା । ସ୍ୱୟଂ ମହତାବ୍ ନିଜେ ନାଟକ ଲେଖି ଅଭିନୟ ମଧ କରିଥିଲେ । ପିଲାମାନଙ୍କ ପାଇଁ ମୀନାବଜାର, ମୀନାମେଳା ପୁସ୍ତକ ଓ ଚିତ୍ର ପ୍ରଦର୍ଶନୀ ଆଦି ଯୋଗ କରି ନୂତନ ପିଢ଼ି ନୂତନ ଓଡ଼ିଶାର ନାଗରିକମାନଙ୍କ ମଧରେ ଉତ୍ସାହ ସୃଷ୍ଟି କରାଗଲା । ବିଷୁବ ମିଳନ ମଣ୍ଡପରେ ଲେଖକ, ଶିଳ୍ପୀ, କ୍ରୀଡ଼ାବିତ୍ ଆଦି ପୁରସ୍କୃତ ହୋଇ ଅଭିନବ ସୃଷ୍ଟି ନିମନ୍ତେ ପ୍ରେରଣା ଲାଭ କଲେ ।

ନବ ଓଡ଼ିଶାର ନୂତନ ରାଜଧାନୀ ଭୁବନେଶ୍ୱରଠାରେ ନିର୍ମାଣ କରିବାରେ ମଧ ମହତାବଙ୍କ ଦୂରଦୃଷ୍ଟିର ପରିଚୟ ମିଳିଥିଲା । ୧୯୩୬ ଏପ୍ରିଲ୍ ପହିଲାଠାରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇ ରାଜଧାନୀ କଟକଠାରେ ଅସ୍ଥାୟୀ ଭାବରେ ପ୍ରତିଷ୍ଠିତ ହେଲା । ଗୌରୀଶଙ୍କର ପାର୍କ ସମୀପସ୍ଥ ବର୍ତ୍ତମାନ ଯେଉଁଠାରେ ସିଟି ହସ୍‌ପିଟାଲ୍ ଅଛି, ସେଠାରେ କେତେ ଦିନ କାର୍ଯ୍ୟ କରି କାଣ୍ଟନ୍‌ମେଣ୍ଟ ରୋଡ୍‌ରେ ଥିବା ପରିତ୍ୟକ୍ତ ସେନାଛାଉଣିରେ କାର୍ଯ୍ୟକଲା । ସ୍ଥାୟୀ ରାଜଧାନୀ ନିର୍ମାଣ କଟକ, ଚୌଦ୍ୱାର, ଖୋର୍ଦ୍ଧା, ଗୋପାଳପୁର ନିକଟବର୍ତ୍ତୀ ରଙ୍ଗେଇଲୁଣ୍ଡା ଆଦି ସ୍ଥାନମାନଙ୍କରେ ହେବା ପାଇଁ ପ୍ରସ୍ତାବ ହୋଇ ବାଦାନୁବାଦ ଘଟିବା ପରେ ମହତାବ ଭୁବନେଶ୍ୱରକୁ ନିର୍ବାଚନ କରି ଆସେମ୍ବ୍ଲିରେ ସର୍ବବାଦୀସମ୍ମତ ପ୍ରସ୍ତାବ ପାଶ୍ କରାଇଲେ । ପ୍ରାଚୀନ ଐତିହାସିକ ସ୍ମୃତି ବିଜଡ଼ିତ ଏହି ସ୍ଥାନ ଗମନାଗମନ ଓ ସଂପ୍ରସାରଣ ସୁବିଧା ଥିବାରୁ ଏବେ ପାଞ୍ଚଲକ୍ଷ ଅଧିବାସୀଙ୍କ ବାସୋପଯୋଗୀ ଗୃହ ଓ ବହୁ ଦପ୍ତର, କାର୍ଯ୍ୟାଳୟ, ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟମାନଙ୍କ କେନ୍ଦ୍ରଭୂମି ହୋଇ ପାରିଛି । ପରବର୍ତ୍ତୀ କାଳରେ ବିଜୁ ପଟ୍ଟନାୟକ ବିମାନ ବନ୍ଦର ହେବା ଯୋଗୁଁ ଏହା ଆନ୍ତର୍ଜାତିକ ମାନଚିତ୍ରରେ ସ୍ଥାନ ଲାଭ କରିଛି ।

ଗାନ୍ଧିଜୀଙ୍କର ଜଣେ ସଚ୍ଚା ଶିଷ୍ୟଭାବରେ ସେ ସର୍ବଦା ଗାନ୍ଧିଜୀଙ୍କ ତିନୋଟି ସ୍ୱଦେଶୀ, ସ୍ୱାଭିମାନ ଓ ସ୍ୱାବଲମ୍ବନ ବିଷୟ ବିଭିନ୍ନ ସଭାସମିତିରେ କହୁଥିଲେ, ପତ୍ର ପତ୍ରିକାରେ ଉଲ୍ଲେଖ କରୁଥିଲେ ଓ ଜୀବନରେ ଅନୁସରଣ କରୁଥିଲେ ।

ଜାତୀୟ ସଂହତି ରକ୍ଷା ପାଇଁ ଜାତୀୟପତାକା, ରାଷ୍ଟ୍ରଭାଷା, ଦେଶପ୍ରେମ,.ଆଦର୍ଶଗତ ଭାବନା ବିଷୟରେ ଗୁରୁତ୍ୱ ଦେଇ ଲେଖା, ଆଲୋଚନା ଓ ଭାଷଣ ମାଧମରେ ପ୍ରକାଶ କରିଛନ୍ତି । ଶାସନର ଚାରୋଟି ନୀତି -ସାମ, ଦାନ, ଦଣ୍ଡ ଓ ଭେଦ । ଜଣେ ଶାସକ ଏହି ସବୁ ବିଷୟ ପ୍ରତି ଦୃଷ୍ଟି ଦେଇ ପାରିଲେ ଯେ ସେ ଯଥାର୍ଥରେ ଲୋକଙ୍କ ପ୍ରତିନିଧି ଭାବରେ ଦାୟିତ୍ୱ ତୁଲାଇ ପାରିବେ, ଏକଥା ଡକ୍ଟର ମହତାବ ଆପଣାର ଅନୁଭୂତିରୁ ବହୁତ ଦୃଷ୍ଟାନ୍ତ ଦେଇଛନ୍ତି ।

ଓଡ଼ିଶାରେ କ୍ରୀଡ଼ାର ବିକାଶ ଘଟାଇବା ପାଇଁ ଡ: ମହତାବଙ୍କ ପ୍ରୋତ୍ସାହନ କ୍ରମେ ନିର୍ମିତ ହେଲା ବାରବାଟୀ ଷ୍ଟାଡ଼ିଅମ୍ । ଏହି ବାରବାଟୀ ଷ୍ଟାଡ଼ିଅମ୍ କ୍ରୀଡ଼ାପ୍ରେମୀ ଓ କ୍ରୀଡ଼ାବିତ୍‌ମାନଙ୍କ ଦ୍ୱାରା ଆଦୃତ ହୋଇ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଲାଭ କରିଅଛି ଏବଂ ଦେଶ ବିଦେଶରୁ ଆଗତ କ୍ରୀଡ଼ାବିତ୍‌ମାନେ ଏହାର ଅଜସ୍ର ପ୍ରଶଂସା କରୁଥିବାରୁ ଓଡ଼ିଶାରେ କ୍ରୀଡ଼ାର ବିକାଶ ନିମନ୍ତେ ସବୁରି ଚର୍ଚ୍ଚାର ବିଷୟ ହୋଇଛି । ଓଡ଼ିଶାରେ ସାହିତ୍ୟ, ସଙ୍ଗୀତ ନାଟକ ଓ ଲଳିତକଳା ପାଇଁ ଏକାଡେମୀମାନ ପ୍ରତିଷ୍ଠିତ ହେଲା ଓ ଡକ୍ଟର ମହତାବ ବହୁକାଳ ସଭାପତି ଥିଲେ । ପ୍ରାଚୀନ ସାହିତ୍ୟର ସଂରକ୍ଷଣ ପାଇଁ ସାରଳାଦାସଙ୍କ ମହାଭାରତର ଶୁଦ୍ଧ ସଂସ୍କରଣ କରିବା ନିମନ୍ତେ ଗୁରୁଦେବ ପ୍ରଫେସର ଡ଼କ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟରେ ସ୍ୱୟଂ ଉପସ୍ଥିତ ହେଲେ ସଂସ୍କୃତି ବିଭାଗର ସଚିବ ଓ ନିର୍ଦ୍ଦେଶକ ବି.ଭେଙ୍କଟରମଣଙ୍କୁ ସଙ୍ଗରେ ନେଇ । ଆଇ.ଏସ୍.ସି. ପାଠ ପରେ ବି.ଏ.ରେ ସଂସ୍କୃତ ନେଇ ପଢୁଥିବାରୁ କଲେଜ ଜୀବନରେ ମହତାବ ପ୍ରଫେସର ମହାନ୍ତିଙ୍କର ପ୍ରିୟ ଛାତ୍ର ଥିଲେ । ପ୍ରଫେସର ମହାନ୍ତିଙ୍କର 'ପ୍ରାଚୀ' ପ୍ରକାଶିତ ପ୍ରାଚୀନ କାବ୍ୟମାନଙ୍କର ବହୁ ପୋଥି ମିଳାଇ ଶୁଦ୍ଧ ପାଠ ନିର୍ଣ୍ଣୟ ଓ ଟୀକା ଲେଖିବାରେ ଯେ ଦକ୍ଷତା ଥିଲା, ତାହାକୁ କାର୍ଯ୍ୟରେ ଲଗାଇବା ପାଇଁ ଚାହିଁଲେ ଡ଼କ୍ଟର ମହତାବ । ୭୦ ବର୍ଷରୁ ଉର୍ଦ୍ଧ୍ୱ ବୟସ୍କ ଗୁରୁଦେବ ପ୍ରଫେସର ଆର୍ତ୍ତବଲ୍ଲଭ ପ୍ରିୟ ଶିଷ୍ୟଙ୍କ ଅନୁରୋଧକୁ ଉପେକ୍ଷା କରି ନ ପାରି ବୃଦ୍ଧ ବୟସରେ ଏହି ଗୁରୁଭାର ବହନ କଲେ ଓ କଷ୍ଟ ସ୍ୱୀକାର ପୂର୍ବକ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ ନିମନ୍ତେ ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ । ଏହି ବିରାଟ ଗ୍ରନ୍ଥର ମୁଦ୍ରିତ ରୂପ ଦେଖିବା ପୂର୍ବରୁ ୧୯୬୩ରେ ଆର୍ତ୍ତବଲ୍ଲଭଙ୍କର ଦେହାନ୍ତ ହେଲା ।

ଓଡ଼ିଶାର ଉନ୍ନତି ଓ ପ୍ରଗତି ପାଇଁ ଡ଼କ୍ଟର ମହତାବ କାର୍ଯ୍ୟ କରିଥିବା ହେତୁ କେଉଁଠାରେ କିଛି ଅଘଟଣ ଘଟିଲେ ମଧ ରାଜ୍ୟବାସୀ ତାଙ୍କୁ ଦାୟୀ

କରୁଥିଲେ । ଓଡ଼ିଶାର ଗଡ଼ଜାତ ଓ ଜମିଦାରୀମାନ ଓଡ଼ିଶାରେ ମିଶାଉଥିଲେ ହେଁ ସୀମା କମିଶନଙ୍କ ଅବିଚାର ଫଳରେ ସରେଇକଳା ଓ ଖରସୁଆଁ ରାଜ୍ୟ ଦୁଇଟି ଓଡ଼ିଶାରୁ ଯାଇ ବିହାରରେ ମିଶିଲା । ବିହାରର ପ୍ରଭାବଶାଳୀ ନେତୃବୃନ୍ଦ, ପାଟନାର ସମ୍ବାଦପତ୍ର ବିଶେଷ କରି ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଓ ରାଜ୍ୟ ପୁନର୍ଗଠନ କମିଶନର ଚେୟାରମାନ ବିହାରବାସୀ ଫଜଲ୍ ଅଲିଙ୍କ ନୀତିହୀନ ବିଚାର ଯୋଗୁଁ ଏହି ଦୁଇ ଓଡ଼ିଆଭାଷୀ ରାଜ୍ୟ ବିହାର ସରକାରଙ୍କ କରଗତ ହେଲା । ଡକ୍ଟର ମହତାବ ଏ ସମ୍ପର୍କରେ ବିହାରର ନେତୃବୃନ୍ଦ ଓ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ସହ ପତ୍ରାଳାପ କରିଥିଲେ । ପଣ୍ଡିତଜୀ ୧୯୪୮ ଫେବୃୟାରୀ ତା ୨୫ ରିଖରେ ମହତାବଙ୍କୁ ଲିଖିତ ପତ୍ରରେ ଉଲ୍ଲେଖ କରିଥିଲେ । "I have not liked the way the Bihar government has behaved in this matter and some of the Patna newspapers have been peculiarly bad."(ସାଧନାର ପଥେ-Appendix page4.)

ଖରସୁଆଁ ଓ ସରେଇକଳା ବିହାରକୁ ଚାଲିଯିବା ଯୋଗୁଁ ମହତାବଙ୍କୁ ଦୋଷଦେଇ ଛାତ୍ର ଓ ଜନତାଙ୍କର ପୁରୀ କଲେଜର ସଭାରେ ସେ ଉତ୍ତର ଦେଇ କହିଥିଲେ, ଓଡ଼ିଶା ପାଇଁ ମୁଁ ଯେତିକି ପାରିଲି, କଲି । ଛବିଶ ଗଡ଼ଜାତ ଭିତରୁ ଦୁଇଟା ଯଦି ଚାଲିଗଲା, ତାକୁ ଆଣିବାକୁ ଅନ୍ୟମାନେ ଚେଷ୍ଟା କରୁନାହାନ୍ତି । ଓଡ଼ିଶା ମାଆର ଆଉ କଣ ପୁଅ ନାହାନ୍ତି ? ଏତେ ଆନ୍ଦୋଳନ ହେଲା, କେତେ ଶାସକ ଆସିଲେ-ଗଲେ, ଆଉ ଏ ଦୁଇରାଜ୍ୟର ପୁନରାବର୍ତ୍ତନ ପାଇଁ କେହି କିଛି କରିଛନ୍ତି କି ? ପ୍ରତିବେଶୀ ନେତୃବୃନ୍ଦଙ୍କ ପ୍ରଭାବ ପାଖରେ ଓଡ଼ିଶାର ନେତୃବୃନ୍ଦ ନିଷ୍ପ୍ରଭ ଜଣାପଡୁଛନ୍ତି ।

ଧାନ ଚାଉଳ ବିକ୍ରୀ ନିୟନ୍ତ୍ରଣରେ ଓଡ଼ିଶାକୁ ସ୍ୱାବଲମ୍ବୀ କରିବା ଦିଗରେ ମହତାବଜୀ ବଳିଷ୍ଠ ପଦକ୍ଷେପ ନେଇଥିଲେ । ରାଜେନ୍ଦ୍ରବାବୁ (ରାଜେନ୍ଦ୍ର ପ୍ରସାଦ-ବିହାର) କେନ୍ଦ୍ରରେ ଖାଦ୍ୟ ବିଭାଗର ଏକ୍ଜିକ୍ୟୁଟିଭ୍ କାଉନ୍‌ସିଲର୍ ଥାଇ ଖାଦ୍ୟ ନିୟନ୍ତ୍ରଣ ନୀତି ଅନୁସାରେ ଓଡ଼ିଶା ବଳକା ପ୍ରଦେଶ ଥିବାରୁ ଓଡ଼ିଶାରେ ରେସନିଂ ଅର୍ଥାତ୍ ପଡ଼ି ପ୍ରଥା ଚାଲି କରି ବଳକା ଧାନ ଚାଉଳ ବଙ୍ଗଳାକୁ ପଠାଇବାକୁ ପ୍ରସ୍ତାବ କଲେ । ମାତ୍ର ମହତାବ ପଡ଼ିପ୍ରଥାର ବିରୋଧ କରି ତାହା କରାଇ ଦେଇ ନଥିଲେ । ସେ ହିସାବ କରି ଦେଖିଲେ ଓଡ଼ିଶା ଲୋକଙ୍କର ସ୍ୱାସ୍ଥ୍ୟ ପ୍ରକୃତି ହିସାବ ଅନୁସାରେ ଭାତ ଖାଇବାକୁ ନ ଥିଲେ ମଧ୍ୟ ଧାନ ଚାଉଳ ବିକ୍ରି କରିବାକୁ ବାଧ ହେଉଛନ୍ତି । କାରଣ ଧାନ ଏକମାତ୍ର ଚାଷ ହୋଇଥିବାରୁ କୃଷି ଭାତ ଖାଇବା ସହ ତେଲ ଲୁଣ ଲୁଗା ଆଦି ନିମନ୍ତେ ଧାନ ବିକନ୍ତି । ସେ ସମୟରେ ଚାଉଳ ଦରବୃଦ୍ଧି କରିବାକୁ କେନ୍ଦ୍ର କରି ରାଜ୍ୟରେ ଆନ୍ଦୋଳନ ହେଲା । ମହତାବଜୀ ଗାନ୍ଧିଜୀଙ୍କୁ ଓଡ଼ିଶାର ଦୁର୍ଭିକ୍ଷର ଇତିହାସ ୧୮୬୬ ଠାରୁ ୧୯୪୬ ମସିହା ପର୍ଯ୍ୟନ୍ତ ବୁଝାଇ ତାଙ୍କୁ ରାଜେନ୍ଦ୍ରବାବୁଙ୍କୁ ବୁଝାଇଦେବାକୁ କହିଥିଲେ । ଓଡ଼ିଶାରେ ପଡ଼ିପ୍ରଥା ଚାଲୁ ହେଲା ନାହିଁ । ନିୟନ୍ତ୍ରଣଯୋଗେ ଯେଉଁ ଦୁର୍ନୀତି ଶାସନ କ୍ଷେତ୍ରରେ ପ୍ରବେଶ କରିବାର ଥିଲା, ତାହା ହେଲା ନାହିଁ । ଓଡ଼ିଶାର ଚିର ସହଚର ଦୁର୍ଭିକ୍ଷ ଏହାଦ୍ୱାରା ଏଡ଼ାଇ ହେବ ବୋଲି ବୁଝି ଗାନ୍ଧିଜୀ ତାଙ୍କୁ ଆଶୀର୍ବାଦ କଲେ । ଆଦିବାସୀ ଓ ହରିଜନମାନଙ୍କୁ ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ଦର୍ଶନ କରାଇବା ଗାନ୍ଧିଜୀଙ୍କ ଇଚ୍ଛାକୁ ଡକ୍ଟର ମହତାବ କାର୍ଯ୍ୟରେ ପରିଣତ କରିଥିଲେ । ଜାତିପ୍ରଥାର ପରିଣତି ଅସ୍ପୃଶ୍ୟତା ଓ ସାମ୍ପ୍ରଦାୟିକ ବିବାଦ ଭାରତୀୟ ସମାଜରେ ଅନ୍ତର୍ନିହିତ ଦୁର୍ବଳତା ବୋଲି ଏହାକୁ ଦୂର କରିବା ଚେଷ୍ଟା କରିଥିଲେ ।

(ନିର୍ମଳ କୁଟୀର, ବଙ୍ଗାଳିସାହି, କଟକ-୧)

• • •

## ବିଚକ୍ଷଣ କର୍ମଯୋଗୀ

ମହତାବଙ୍କର ସକଳ କୃତିରେ ଥିଲା ବୌଦ୍ଧିକତାର ସମାବେଶ । ସେ ଯାହା ଲେଖିଛନ୍ତି, କହିଛନ୍ତି, କରିଛନ୍ତି, ସବୁଥିରେ ତାହା ପ୍ରତିଫଳିତ ହୋଇଛି । ସେଥିରେ ସେ କୃତିତ୍ୱ ଅର୍ଜନ କରିଛନ୍ତି, ବିଚକ୍ଷଣତାର ପରିଚୟ ଦେଇଛନ୍ତି । କର୍ମକ୍ଷେତ୍ରରେ କେଉଁଠାରେ ସେ କୃତକାର୍ଯ୍ୟ ହୋଇଛନ୍ତି ଅବା ହୋଇପାରିନାହାନ୍ତି । ମାତ୍ର କେବେହେଲେ ଅପସରି ଯାଇନାହାନ୍ତି । ତାଙ୍କର ଥିଲା ପ୍ରଗାଢ଼ ଆତ୍ମବିଶ୍ୱାସ । ତାଙ୍କ ସହିତ କଥାବାର୍ତ୍ତାରେ, ଆଲୋଚନାରେ ଆନନ୍ଦ ମିଳେ । ଏକ ବୌଦ୍ଧିକ ପରିବେଶ ସଂଚାରିତ ହୁଏ । ତାଙ୍କ ଅଭିଜ୍ଞତାର ପରିସର ବିସ୍ତୃତ । ଭାରତୀୟ ଇତିହାସ, ରାଜନୀତି ଓ ପ୍ରଶାସନିକ କ୍ଷେତ୍ରରେ ତାଙ୍କର ଗଭୀର ଅଭିନିବେଶ । ରବୀନ୍ଦ୍ରନାଥ, ବାର୍ଟାଣ୍ଡ ରସେଲ, ବର୍ଣ୍ଣାଡ଼ ଶ', ଆଇନଷ୍ଟାଇନ ପ୍ରମୁଖ ଚିନ୍ତାନାୟକଙ୍କ ସହିତ ସାକ୍ଷାତ କରିବାରେ ତାଙ୍କର ପରମ ଆନନ୍ଦ । ଏହାରି ମାଧ୍ୟମରେ ତାଙ୍କର କର୍ମମୟ ଜୀବନ ।

୪ ଡକ୍ଟର ସଦାଶିବ ମିଶ୍ର

# ଗଡ଼ଜାତ ମିଶ୍ରଣରେ ହରେକୃଷ୍ଣ ମହତାବଙ୍କ ଭୂମିକା

● ଶ୍ରୀ ଶରତ ଚନ୍ଦ୍ର ଜେନା

ଓଡ଼ିଶାର ବରପୁତ୍ରମାନଙ୍କ ମଧ୍ୟରେ ହରେକୃଷ୍ଣ ମହତାବଙ୍କ ସ୍ଥାନ ସ୍ବତନ୍ତ୍ର । ସେ ଆଧୁନିକ ଓଡ଼ିଶାର ନିର୍ମାତା ରୂପେ ପରିଚିତ । ତାଙ୍କ ବିନା ଓଡ଼ିଶା ତଥା ଭାରତର ଇତିହାସ ସମ୍ପୂର୍ଣ୍ଣ ହୋଇ ପାରିବ ନାହିଁ । ସେ ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ରାଜନୀତିରେ ନେତୃତ୍ୱ ନେଇ ଓଡ଼ିଶାକୁ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ଓଡ଼ିଶାର ଉନ୍ନତି ପାଇଁ ତାଙ୍କର ବହୁମୁଖୀ କାର୍ଯ୍ୟାବଳୀ ମଧ୍ୟରୁ ଦେଶୀୟ ରାଜ୍ୟ ମିଶ୍ରଣ ଏକ ଐତିହାସିକ ଘଟଣା । ଭାରତରେ ସର୍ବ ପ୍ରଥମେ ଓଡ଼ିଶାରେ ଏହାକୁ ଆରମ୍ଭ କରି ସମ୍ପୂର୍ଣ୍ଣ କରିବା ଦ୍ୱାରା ଭାରତୀୟ ଦେଶ ମିଶ୍ରଣର ପ୍ରାକ୍ ଅଧ୍ୟାୟ ଉନ୍ମୋଚିତ ହୋଇଥିଲା । ସ୍ୱାଧୀନ ଭାରତର ଏକତା ଓ ସଂହତି ପ୍ରତିଷ୍ଠା ଦିଗରେ ହରେକୃଷ୍ଣ ମହତାବଙ୍କ ପ୍ରଚେଷ୍ଟା ଫଳରେ ଓଡ଼ିଶା ଯେଉଁ ସୁଖ୍ୟାତି ଅର୍ଜନ କଲା, ତାହାକୁ ସ୍ୱୀକାର କରି ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଲେଖିଥିଲେ -

"ବହୁ ଶତାବ୍ଦୀ ପୂର୍ବେ ଜଣେ ପ୍ରବଳ ପ୍ରତାପୀ ସମ୍ରାଟଙ୍କର ଏହି କଳିଙ୍ଗରେ ଚୈତନ୍ୟୋଦୟ ହୋଇଥିଲା । କାଳକ୍ରମେ ସେ ଯେ ଜଣେ ବିଖ୍ୟାତ ଓ ବିଜ୍ଞ ସାର୍ବଭୌମ ଶାସକରେ ପରିଣତ ହେଲେ ସେତିକି ନୁହେଁ, ତାଙ୍କ ପ୍ରଜାକୁଳରେ ସେ ହେଲେ ପ୍ରଧାନ ବନ୍ଧୁ, ପଥ ପ୍ରଦର୍ଶକ ଓ ଉପଦେଷ୍ଟା । ତାଙ୍କର ଏହି ହୃଦୟ ପରିବର୍ତ୍ତନ ଘଟାଇବାର ଗୌରବ କଳିଙ୍ଗ ଭାଗ୍ୟରେ ପଡ଼ିଥିଲା । ସେତେବେଳେ କେହି ହୁଏତ କଳ୍ପନା କରି ନଥିଲେ ଯେ ସେହି ଭୂମିରେ ପୁଣି ଗୋଟିଏ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହେବ, ଯାହାଫଳରେ ସମ୍ରାଟ ଅଶୋକଙ୍କ ଶାସନାଧୀନରେ ଭାରତରେ ଯେଉଁ ଏକତା, ଶକ୍ତି ଓ ନିରାପତ୍ତା ଥିଲା ତାହା ପୁଣି ଭାରତକୁ ଫେରି ଆସିବ ।"

ଓଡ଼ିଶାର ଏହି ଗୌରବମୟ କୃତିତ୍ୱର ଅନ୍ତରାଳରେ ରହିଛନ୍ତି ଉତ୍କଳକେଶରୀ ଡଃ. ହରେକୃଷ୍ଣ ମହତାବ ।

ଅତୀତ ଓଡ଼ିଶାର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ସ୍ୱାଧୀନ ଓଡ଼ିଶାର ସୀମାରେଖା ଉତ୍ତରରେ ଗଙ୍ଗା ନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କାଳକ୍ରମେ ବିଭିନ୍ନ ରାଜନୈତିକ କନ୍ଦଳ ଯୋଗୁଁ ଏହାର ସ୍ୱାଧୀନତା ଷୋଡ଼ଶ ଶତାବ୍ଦୀର ଶେଷବେଳକୁ ଲୋପ୍ ପାଇବାକୁ ଆରମ୍ଭ କଲା । ସର୍ବଶେଷରେ ଓଡ଼ିଶା ଖଣ୍ଡ ବିଖଣ୍ଡିତ ହୋଇ ଓଡ଼ିଆ ଜାତି ନିଜର ଭାଷା, ସଂସ୍କୃତି ଓ ପରିଚିତି ହରାଇ ବସିଲା । ଖ୍ରୀ. ୧୯୦୩ ମସିହାରୁ ଉତ୍କଳ ଗୌରବ ମଧୁସୂଦନଙ୍କ ଅକ୍ଲାନ୍ତ ଉଦ୍ୟମ ଫଳରେ ୧୯୩୬ ମସିହା ଅପ୍ରେଲ ପହିଲାରେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା । ଏହା କେବଳ ଛ' ଗୋଟି ଜିଲା ମଧ୍ୟରେ ସୀମିତ ଥିଲା । ଇଂରେଜ ସରକାର ଗଡ଼ଜାତ ରାଜ୍ୟଗୁଡ଼ିକ ନିମନ୍ତେ ସ୍ୱତନ୍ତ୍ର ଶାସନ ବ୍ୟବସ୍ଥା କରିବା ଫଳରେ ବିଶାଳ ଓଡ଼ିଶା ପ୍ରଦେଶ ଗଠନ ୧୯୪୮-୧୯୪୯ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା । ଏ କ୍ଷେତ୍ରରେ ହରେକୃଷ୍ଣ ମହତାବଙ୍କର ଅବଦାନ ଚିରସ୍ମରଣୀୟ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରାଣପ୍ରତିଷ୍ଠାତା ମଧୁବାବୁଙ୍କ ପରି ସେ ଥିଲେ ବୃହତ୍ତର ଓଡ଼ିଶା ପ୍ରଦେଶର ନିର୍ମାତା ।

ବ୍ରିଟିଶ୍ ଶାସନ ବିରୁଦ୍ଧରେ ସମଗ୍ର ଭାରତବାସୀ ଭାରତମାତାର ମୁକ୍ତି ପାଇଁ ସଂଗ୍ରାମ କରୁଥିଲେ । ଏହି ମୁକ୍ତି ସଂଗ୍ରାମରେ ଗଡ଼ଜାତ ପ୍ରଜାମାନଙ୍କର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ସେମାନେ ଉଭୟ ବ୍ରିଟିଶ ଓ ଗଡ଼ଜାତ ରାଜାମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରୁଥିଲେ । ଇଂରେଜମାନେ ଭାରତକୁ ଦୀର୍ଘ ଦୁଇଶହ ବର୍ଷ ଶାସନ କଲାପରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । କିନ୍ତୁ ଗଡ଼ଜାତ ପ୍ରଜାମାନଙ୍କର ଅବସ୍ଥା ପୂର୍ବପରି ରହିଥିଲା । ସେମାନେ ରାଜାମାନଙ୍କ ଛତ୍ରଛାୟା ତଳେ ସ୍ୱାଧୀନତାପରେ ମଧ୍ୟ ଅତି ଦୈନ୍ୟ ଅବସ୍ଥାରେ କାଳାତିପାତ କରିବାକୁ ଲାଗିଲେ । ମୋଗଲବନ୍ଦୀ ଅଞ୍ଚଳର ସେମାନଙ୍କର ଭାଇ ବିରାଦରମାନେ ଯେଉଁ ସୁଖ ସୁବିଧା ଭୋଗ କରୁଥିଲେ, ସେଥିରୁ ସେମାନେ ବଞ୍ଚିତ ଥିଲେ । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଇଂରେଜ ସରକାର ରାଜାମାନଙ୍କୁ ଯେଉଁ ସାର୍ବଭୌମତ୍ୱ ଅଧିକାର ଦେଲେ, ତାହାଫଳରେ ସେମାନେ ନିଜ ରାଜ୍ୟରେ ସ୍ୱାଧୀନ ଭାବେ ପୂର୍ବପରି ହୁକ୍କାପିଟା ଅନ୍ଧାର ଶାସନ ଚଳାଇଲେ ।

ଏଠାରେ ଗଡ଼ଜାତ ଶାସନ ସମ୍ପର୍କରେ ଉଲ୍ଲେଖ କରାଯାଇପାରେ ଯେ ଗଡ଼ଜାତ ରାଜ୍ୟଗୁଡ଼ିକ ପ୍ରାରମ୍ଭରୁ ସିଧାସଳଖ ବ୍ରିଟିଶ୍ ରାଜା ବା ରାଣୀଙ୍କ ଦ୍ୱାରା ଜଣେ ରାଜପ୍ରତିନିଧିଙ୍କ ଦ୍ୱାରା ଶାସିତ ହେଉଥିଲେ ଓ ଚୁକ୍ତି ଅନୁସାରେ ଇଂରେଜ ସରକାରଙ୍କୁ ଧାର୍ଯ୍ୟ ଅର୍ଥ ପ୍ରଦାନ କରୁଥିଲେ । ଏହା ଫଳରେ ରାଜାମାନଙ୍କର ସ୍ୱେଚ୍ଛାଚାରିତା ଯଥେଷ୍ଟ ବଢ଼ିଯାଇଥିଲା । ସେମାନେ ଏକଛତ୍ରବର୍ତ୍ତୀ ହୋଇ ରାଜ୍ୟରେ ଯେଉଁ ଶାସନ ଚଳାଇଥିଲେ ସେଥିରେ କୌଣସି ନୀତି ବା ଆଇନ୍ ନଥିଲା । "ରାଜାଙ୍କର ଇଚ୍ଛା", ଏହାଥିଲା ଆଇନ୍ । ରାଜା ଯାହା ଚାହୁଁଥିଲେ ତାହା କେବଳ ତାଙ୍କର ଇଚ୍ଛା ଅନୁସାରେ ହେଉଥିଲା । ପ୍ରଜାମାନଙ୍କର ବା ରାଜ୍ୟର ମଙ୍ଗଳ କିମ୍ବା ଅମଙ୍ଗଳ କଥା ଚିନ୍ତା କରାଯାଉ ନଥିଲା । ପୁଣି ସମସ୍ତ ରାଜାଙ୍କର ଇଚ୍ଛା ସମାନ ନଥିଲା । କୌଣସି ରାଜା ଚାହିଁଲେ ଦିନକୁ ରାତି ଓ ରାତିକୁ ଦିନରେ ପରିଣତ କରୁଥିଲେ । ଏପରିକି ରାଜାମାନେ ପ୍ରକୃତିଠାରୁ ଅଧିକ ଶକ୍ତିଶାଳୀ ଥିଲେ । ତାଙ୍କ ଇଚ୍ଛା ବିରୁଦ୍ଧରେ ପାଟି ଫିଟାଇବାର କାହାରି ଅଧିକାର ନଥିଲା । ରାଜାଙ୍କର ହୁକୁମ ଅମାନ୍ୟ କଲେ କଠୋର ଦଣ୍ଡାଦେଶ ପ୍ରଜାମାନଙ୍କୁ ଭୋଗିବାକୁ ପଡୁଥିଲା । ମାରିବା ଓ ତାରିବା ରାଜାଙ୍କର ଇଚ୍ଛା । ରାଜାମାନେ ପ୍ରଜାମାନଙ୍କୁ ବେଠି ବେଗାରିରେ ଖଟାଇ ଖଟାଇ ହନ୍ତସନ୍ତ କରି ପକାଉଥିଲେ । ମାଗଣ, ରସଦ, କର, ଖଜଣା ଏବଂ ଅନ୍ୟାୟ ଓ ଦରଦେଣ୍ଡ ପାଉଣା ଦେଇ ଦେଇ ପ୍ରଜାକୁଳ ତିକ୍ତବିକ୍ତ ହୋଇ ସରୁଥିଲେ । ପ୍ରତ୍ୟେକ ପ୍ରଜା ବେଠି କରି କରି ତାହାର ହାଡ଼ ଭାଙ୍ଗି ଯାଉଥିଲା । ରାଜାଙ୍କର କିମ୍ବା ତାଙ୍କ ଭାଇବନ୍ଧୁଙ୍କର ସମସ୍ତ କାର୍ଯ୍ୟ

ବିନା ମୂଲମକୁରୀରେ ପ୍ରଜାମାନଙ୍କୁ କରିବାକୁ ହେଉଥିଲା । ପ୍ରତିବାଦ କରିବାର ସାହସ ନଥିଲା । ଘର ଘର ବୁଲି ଲୋକମାନଙ୍କୁ ବାନ୍ଧି ନିଆଯାଉଥିଲା । ନଗଲେ କୋରଡ଼ା ମାଡ଼ରେ ପିଠି ଫାଟି ଯାଉଥିଲା । ଏହି ଅତ୍ୟାଚାରର ସତ୍ତକ ରୂପେ ଏବେ ମଧ୍ୟ ଢେଙ୍କାନାଳର କୁଖ୍ୟାତ "ଜତନ ନଗର" ର ଭଗ୍ନାବଶେଷ ବିଦ୍ୟମାନ । ବେଢ଼ି ଉପରେ କୋରଡ଼ା ମାଡ଼ ପରି ଗଡ଼ଜାତ ପ୍ରଜାମାନେ ବେଠି ବେଗାରି ସାଙ୍ଗକୁ କର ଉପରେ କର ଦେଉଥିଲେ । ଏପରି ଜଣେ ଜଣେ ପ୍ରଜାପୀଡ଼କ ରାଜାଥିଲେ ଯେଉଁମାନେକି ବାଅଠି ପ୍ରକାର କରରୁ ଶହେ ଚାରିପ୍ରକାର କର ଆଦାୟ କରୁଥିଲେ । ଗଛ ଲଗାଇଲେ କର, ଗଛ କାଟିଲେ କର, ଫସଲ ଅମଳ କଲେ କର, ନକଲେ ବି କର । ପ୍ରଜାମାନେ ରାଜାମାନଙ୍କର ଏପରି ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଲେ । ସେମାନଙ୍କର ଗଣତନ୍ତ୍ର ଅଧିକାର ନଥିଲା । ବଢ଼ିଲା ଝିଅ ଓ ବୋହୂମାନଙ୍କର ଇଜ୍ଜତ ନଥିଲା । ରାଜା ମହାରାଜା ଓ ଗୋରା ସାହେବମାନଙ୍କର ଏ ପ୍ରକାର ଅତ୍ୟାଚାର ଏବଂ ମଉଜ ମଜଲିସ୍ ବେଶୀ ଦିନ ତିଷ୍ଠି ପାରିଲା ନାହିଁ । ଶେଷରେ ପ୍ରଜାମାନଙ୍କ ମଧ୍ୟରେ ଏପରି ଏକ ଅଦ୍ଭୁତ ଜାଗରଣ ସୃଷ୍ଟି ହେଲା ଯେ, ତାହାକୁ ପ୍ରତିରୋଧ କରିବାର କ୍ଷମତା ଓଡ଼ିଶା ଗଡ଼ଜାତ ରାଜାମାନଙ୍କର ଆଉ ନଥିଲା ।

ଓଡ଼ିଶା ଗଡ଼ଜାତ ଶାସନ ବାହାରେ ଥିବା ମୋଗଲ ବନ୍ଦୀର କଂଗ୍ରେସ ନେତାମାନେ ଗଡ଼ଜାତ ବିଷୟରେ ସଚେତନ ଥିଲେ । ଏଣେ ଶାସନଗତ ବିଚାର ଦୃଷ୍ଟିରୁ ଓଡ଼ିଶା ପ୍ରଦେଶ ଓ ତାହାର ପ୍ରତିବେଶୀ ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ଶାସନଗତ ସହଯୋଗ ଓ ସମନ୍ୱୟ ରକ୍ଷା ନିତାନ୍ତ ଆବଶ୍ୟକ ବୋଲି ୧୯୨୮ ମସିହାରୁ ସାଇମନ କମିଶନ ମତ ଦେଇ ସାରିଥିଲେ । ୧୯୩୮ ମସିହାରେ ଓଡ଼ିଶାରେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଲୋକପ୍ରତିନିଧି ସରକାର କ୍ଷମତା ହାତକୁ ନେଇ ଶାସନ ଚଳାଇବା ଦ୍ୱାରା ଗଡ଼ଜାତବାସୀମାନଙ୍କ ମଧ୍ୟରେ ପ୍ରବଳ ପ୍ରତିକ୍ରିୟା ଦେଖାଗଲା । ତତ୍କାଳୀନ ଓଡ଼ିଶା ସରକାର ଏହାକୁ ସୁବିଚାର କରି ଗଡ଼ଜାତବାସୀମାନଙ୍କର ଦାବୀ କ'ଣ ଓ ତାହା କିପରି ଉପାୟରେ ପୂରଣ କରାଯାଇପାରିବ, ସେଗୁଡ଼ିକର ଅନୁସନ୍ଧାନ ପାଇଁ ଏକ ବେ-ସରକାରୀ କମିଟି ୧୯୩୮ ମସିହା ଜୁନ ମାସ ୨୦ ତାରିଖରେ ନିଯୁକ୍ତ କଲେ । ଉକ୍ତ କମିଟିରେ ହରେକୃଷ୍ଣ ମହତାବ ଅଧ୍ୟକ୍ଷ ଥିଲେ । ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀର ସମ୍ପାଦକ ବଳବନ୍ତ ରାଏ ମେହେଟ୍ଟା ଓ ଲାଲ ମୋହନ ପଟ୍ଟନାଏକ ଏହାର ସଭ୍ୟ ଥିଲେ । ଉକ୍ତ ତଦନ୍ତ କମିଟିର ବିଶିଷ୍ଟ ନେତା ତଥା ଓଡ଼ିଶା ପ୍ରଜା ଆନ୍ଦୋଳନର ପ୍ରତିଷ୍ଠାତା ସାରଙ୍ଗଧର ଦାସଙ୍କ ସମ୍ପାଦନାରେ ଉକ୍ତ କମିଟି ସୁଚାରୁରୂପେ କାର୍ଯ୍ୟ କରିବାକୁ ସକ୍ଷମ ହୋଇଥିଲା । ତଦନ୍ତ କମିଟି ବିଭିନ୍ନ ଗଡ଼ଜାତ ରାଜ୍ୟ ଗସ୍ତ କରି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ହରେକୃଷ୍ଣ ମହତାବ ସମସ୍ତ ଗଡ଼ଜାତ ରାଜାମାନଙ୍କୁ ଚିଠି ଲେଖି ଉକ୍ତ ତଦନ୍ତ କାର୍ଯ୍ୟରେ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ । ତା ୨୩।୬।୧୯୩୮ ମସିହାର ଏକ ବିବରଣୀରୁ ଜଣାଯାଏ ଯେ ଉକ୍ତ କମିଟି ସେହି ବର୍ଷ ଜୁନମାସ ୨୨ ତାରିଖରେ ତତ୍କାଳୀନ ଓଡ଼ିଶା ବ୍ୟବସ୍ଥାପକ ସଭାର ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସଙ୍କ ବାସ ଭବନରେ ବାଲେଶ୍ୱରଠାରେ ବସି ନୀଳଗିରିରୁ ଯୋଗ ଦେଇଥିବା ପ୍ରାୟ ଦୁଇଶହ ପ୍ରଜାଙ୍କର ଆପତ୍ତି ଅଭିଯୋଗ ଶୁଣିଥିଲେ । ଏହିପରି ଭାବେ ବିଭିନ୍ନ ଗଡ଼ଜାତ ରାଜାମହାରାଜାମାନଙ୍କ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ହଜାର ହଜାର ଲୋକଙ୍କର ଠାରୁ ଅଭିଯୋଗ ଏବଂ ସାକ୍ଷୀ ପ୍ରମାଣ ଗ୍ରହଣ କରି ସେଗୁଡ଼ିକୁ ତଦନ୍ତ କରିବା ଫଳରେ ସେମାନଙ୍କର ସବୁ କଥା ପଦାରେ ପଡ଼ି ଯାଇଥିଲା । ସେହେତୁ ୧୯୩୮ ମସିହାରେ "ପ୍ରଜା ଆନ୍ଦୋଳନ" ର ସୂତ୍ରପାତ ଘଟିଲା । ଗ୍ରାମେ ଗ୍ରାମେ ପ୍ରଜା ଆନ୍ଦୋଳନ ଚାଲିଲା । ପ୍ରତି ଗଡ଼ଜାତରେ ନୂତନ ଚାଞ୍ଚଲ୍ୟ ଦେଖା ଦେଲା । ତାଳଚେର, ଢେଙ୍କାନାଳ, ନୀଳଗିରି, ନୟାଗଡ଼ ଓ ରଣପୁରରେ ଅବସ୍ଥା ଅସମ୍ଭାଳ ହୋଇପଡ଼ିଲା । ରାଜାମାନେ ଏହାକୁ ଆୟତ୍ତ କରିବା ପାଇଁ ବ୍ରିଟିଶ ସରକାରଙ୍କ ସାହାଯ୍ୟ ଲୋଡ଼ିଲେ । ଅତ୍ୟାଚାର ଚରମ ସୀମାରେ ପହଞ୍ଚିଲା । ଉତ୍କଳ ରାଜ୍ୟ କଂଗ୍ରେସ କମିଟିର ସଭାପତି ହରେକୃଷ୍ଣ ମହତାବ ପ୍ରଜାଆନ୍ଦୋଳନର ବିଶିଷ୍ଟ ନେତାମାନଙ୍କ ସହ ଘଟଣାସ୍ଥଳକୁ ଯାଇ ବିପନ୍ନ ଲୋକମାନଙ୍କ ଅବସ୍ଥା ବୁଝିଥିଲେ । ରଣପୁରରେ ପୋଲିସ ଫୌଜ ଘେନି ପଲିଟିକାଲ ଏଜେଣ୍ଟ ବେଜେଲଗେଟ ପହଞ୍ଚିବା ପୂର୍ବରୁ ସେଠାରେ ଆତଙ୍କ ଖେଳି ଯାଇଥିଲା । ହଜାର ହଜାର ଲୋକ ମେଳିବାନ୍ଧି ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରସ୍ତୁତ ହେଉଥିଲେ । ଫଳରେ ସେଠାରେ ବେଜେଲଗେଟ ପହଞ୍ଚିବା ପରେ ଭୟତ୍ରସ୍ତ ଜନତା ସେମାନଙ୍କ ଆତ୍ମରକ୍ଷା ଦୃଷ୍ଟିରୁ ତାଙ୍କ ଉପରେ ଆକ୍ରମଣ କରି ତାଙ୍କୁ ହତ୍ୟା କଲେ । ଉକ୍ତ ହତ୍ୟାକାଣ୍ଡ ଅଭିଯୋଗରେ ରଘୁ ଓ ଦିବାକର ଫାଶୀଦଣ୍ଡ ପାଇଲେ । ହରେକୃଷ୍ଣ ମହତାବଙ୍କୁ ଉକ୍ତ ହତ୍ୟାକାଣ୍ଡରେ ସମ୍ପୃକ୍ତ କରାଯାଇଥିଲେ ମଧ୍ୟ ତାଙ୍କ କିଛି ହୋଇ ନଥିଲା । ବରଂ ସେ ରଘୁ ଓ ଦିବାକରଙ୍କୁ ମୁକ୍ତି ଦେବାପାଇଁ ରାଜକୃପା ଭିକ୍ଷା କରି ରଣପୁର ରାଜାଙ୍କର ଅନୁଗ୍ରହର ପ୍ରାର୍ଥୀ ହୋଇଥିବା କଥା ତାଙ୍କ ସ୍ୱହସ୍ତ ଲିଖିତ ନିମ୍ନ ଚିଠିରୁ ପ୍ରମାଣ ମିଳେ ।

"ପୋ : ଅ : ଚାନ୍ଦିନିଚୌକ

ତା ୨୧.୨.୧୯୪୦ ।

ଶ୍ରୀମଦ୍ ରାଜା ସାହେବ, ରଣପୁର

ସ ପ୍ରଣାମ ନିବେଦନଂ ।

ମହାଭାଗ,

ବହୁଚିନ୍ତା ଓ ପ୍ରାୟ ଏକ ରାତ୍ର ଭଗବାନ ପ୍ରାର୍ଥନା ପରେ ଏ ପତ୍ର ଆପଣଙ୍କୁ ଲେଖିବାକୁ ସାହସ କରୁଛି । ଆଶାକରେ ଆପଣ ସମସ୍ତ ତ୍ରୁଟି ମାର୍ଜନା କରି ଏପତ୍ର ପ୍ରତି ସମ୍ୟକ୍ ବିଚାର ଦାନ କରିବେ ।

ନାନା ସୁକୃତ ଫଳରେ ମନୁଷ୍ୟ ଜୀବନରେ ମନୁଷ୍ୟ ଶାସକ ପଦ ଭଗବାନଙ୍କ କୃପାରୁ ପାଏ । ଆପଣ ଏହିପରି ଜଣେ ଉନ୍ନତ ଭାଗ୍ୟ ବିଶିଷ୍ଟ ବ୍ୟକ୍ତି । ଯେଉଁ ସୁକୃତ ଫଳରେ ଆପଣ ଏ ପ୍ରକାର ବିଶିଷ୍ଟ ପଦର ଅଧିକାରୀ ହୋଇଛନ୍ତି, ସେ ସୁକୃତ ପ୍ରତି ଆପଣ ଦୃଷ୍ଟି ଦେଲେ ବିଚାର କରି ଦେଖିବେ ଯେ ତାହା ସର୍ବକାଳ ସ୍ଥାୟୀ ନୁହେଁ । ପୁଣି ଦୁଷ୍କୃତ ଫଳରେ ସେ ଅତୀତ ସୁକୃତ ନଷ୍ଟ ହୋଇ ଯାଇ ପାରେ । ଗୋଟିଏ ସାମାନ୍ୟ ଜୀବ ସୁଦ୍ଧା ସୃଷ୍ଟି କରିବାର କୌଣସି ମନୁଷ୍ୟର ନାହିଁ । କିନ୍ତୁ ଅହଂକାର ବଶବର୍ତ୍ତୀ ହୋଇ ମନୁଷ୍ୟ ଜୀବ ନଷ୍ଟ କରେ ଓ ସେଥିରେ ସାହାଯ୍ୟ କରେ । ହତ୍ୟାପ୍ରଦ ମନୁଷ୍ୟ ମାତ୍ରେ ଦଣ୍ଡିତ । ଆପଣ ସେ ପଥରେ ପଦ ହେବେକି ? ମୋର ଏହି ପତ୍ର ଶ୍ରୀ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କ ଯେଉଁ ଫାଶୀ ହୁକୁମ ହୋଇଛି ସେଥିରେ ଆପଣ ...

ହେବେକି ? ଆପଣ ଯଦି ରାଜା ତେବେ ସେ ଦଣ୍ଡରୁ ସେମାନଙ୍କୁ ମୁକ୍ତ କରି ଦେବାର ଅଧିକାର ଅଛି । ଯଦି ସେ ଅଧିକାର ନାହିଁ ତେବେ ପାପ କାର୍ଯ୍ୟରେ ଆପଣ କିପରି ଦାୟୀ ହେବେ ? ଆପଣ ଧାର୍ମିକ ଓ ବିବେକୀ । ମୋର ପ୍ରଶ୍ନର ଉତ୍ତର ଆପଣଙ୍କଠାରୁ ପାଇବି ଏ ଆଶାରେ ପତ୍ର ଲେଖିଲି । ମୋର ଧୃଷ୍ଟତା ମାର୍ଜନା କରିବେ ।

ବଶମ୍ବଦ

ସ୍ୱା : ହରେକୃଷ୍ଣ ମହତାବ'' ।

ହରେକୃଷ୍ଣ ମହତାବ ଉଭୟ ରାଜା ଓ ପ୍ରଜାମାନଙ୍କ ମଧ୍ୟରେ ତିକ୍ତତା ନ ବଢ଼ାଇ ସେମାନଙ୍କ ମଧ୍ୟରେ ସମନ୍ୱୟ ରକ୍ଷାକରି ଓଡ଼ିଶାର ଉନ୍ନତି ପାଇଁ ପ୍ରଥମରୁ ଚେଷ୍ଟା କରି ଆସୁଥିଲେ । ୧୯୩୮ ମସିହାରେ ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିବା ସମୟରେ ସେହି ବର୍ଷ ନଭେମ୍ବର ମାସ ୨୩ ତାରିଖରେ ଢେଙ୍କାନାଳ ଓ ତାଳଚେର ପ୍ରଜାଆନ୍ଦୋଳନ ବିଷୟରେ ତଦନ୍ତ କରିବା ପାଇଁ ତାଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ଏହାକୁ ଉଭୟ ଢେଙ୍କାନାଳ ରାଜା ଓ ପଲିଟିକାଲ ଏଜେଣ୍ଟ ମଧ୍ୟ ସମର୍ଥନ କରୁଥିଲେ । ସେ ତାଙ୍କ ଟିପ୍ପଣୀରେ ଉଲ୍ଲେଖ କରିଥିଲେ, ''ମି. ମହତାବ ଜଣେ ଉଚିତ ବିଚାରବନ୍ତ ଲୋକ । ଢେଙ୍କାନାଳ, ତାଳଚେର ଓ ଆଠଗଡ଼ ମଧ୍ୟରେ ଉପୁଜିଥିବା ଅବସ୍ଥାର ସମାଧାନ କରି ଉତ୍ତମ ବାତାବରଣ ସୃଷ୍ଟି କରିବେ ବୋଲି ମୁଁ ଦୃଢ଼ତାର ସହିତ ସ୍ୱୀକାର କରୁଛି ।'' ପୁନଶ୍ଚ ୧୯୩୮ ମସିହାରେ ତାଙ୍କ ଅଧ୍ୟକ୍ଷତାରେ ଯେଉଁ କମିଟି ନିଯୁକ୍ତ ହୋଇଥିଲା ତାହାର ରିପୋର୍ଟ ୧୯୩୯ ମସିହାରେ ପ୍ରକାଶିତ ହୋଇଥିଲା । ଉକ୍ତ ରିପୋର୍ଟରେ ଭୌଗୋଳିକ, ସାଂସ୍କୃତିକ ଓ ଐତିହାସିକ ଦୃଷ୍ଟିକୋଣରୁ ଓଡ଼ିଶାର ଛୋଟ ଛୋଟ ରାଜାମାନଙ୍କର ସନନ୍ଦ ରଦ୍ଦ କରାଯାଇ ସେମାନଙ୍କୁ ଆଳି, କୁଜଙ୍ଗ ଓ କନିକା ଭଳି ଜମିଦାର ଶ୍ରେଣୀଭୁକ୍ତ କରାଯାଇ ପ୍ରଦେଶ ସହିତ ମିଶ୍ରଣ ପାଇଁ ମତ ଦେଇଥିଲେ । ଏହା ଅଧିକାଂଶ କ୍ଷେତ୍ରରେ ସମର୍ଥନ ଲାଭ କରିଥିଲେ ମଧ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବା ଯୋଗୁଁ ଏହା କାର୍ଯ୍ୟକାରୀ ହୋଇ ପାରିନଥିଲା । କିନ୍ତୁ ସରକାରଙ୍କର ଏଥିପ୍ରତି ସଚେତନତା ଥିଲା । ସେହି ଦିନଠାରୁ ମହତାବ ରାଜାମାନଙ୍କର ପ୍ରଧାନ ଶତ୍ରୁ ହୋଇଗଲେ ।

୧୯୪୬ ମସିହାରେ କ୍ୟାବିନେଟ୍ ମିଶନ ଓଡ଼ିଶା ଗସ୍ତରେ ଆସିଥିବା ସମୟରେ ହରେକୃଷ୍ଣ ମହତାବ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ତରଫରୁ ଓଡ଼ିଶାର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଗଡ଼ଜାତ ରାଜାମାନଙ୍କୁ ମିଶାଇ ଏକ ଶାସନାନ୍ତର୍ଭୁକ୍ତ କରିବା ପାଇଁ ଗୋଟିଏ ଦୀର୍ଘ ସ୍ମାରକପତ୍ର ଦାଖଲ କରିଥିଲେ । ଓଡ଼ିଶାର ଐତିହାସିକ ଓ ସାଂସ୍କୃତିକ ପରମ୍ପରା ରକ୍ଷା କରି ଏହାର ଉତ୍ତରୋତ୍ତର ଆର୍ଥିକ ଅଭିବୃଦ୍ଧି ନିମନ୍ତେ ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣ ପାଇଁ ମହତାବ କମିଟି ନିକଟରେ ଦାବୀ କରିଥିଲେ । କମିଟି ସନ୍ତୁଷ୍ଟ ହୋଇ ଏହାର କାର୍ଯ୍ୟକାରିତା ପାଇଁ ସୁପାରିଶ୍ କରିଥିଲେ । ଅନ୍ୟପକ୍ଷରେ ସରାଇକଳା ଓ ଅନ୍ୟାନ୍ୟ କେତେକ ରାଜା ଏହାକୁ କାର୍ଯ୍ୟକାରୀ କରାଇ ନ ଦେବା ପାଇଁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ 'ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସଂଘ' ପ୍ରତିଷ୍ଠା ପାଇଁ ଉଦ୍ୟମ ଚଳାଇଥିଲେ । କିନ୍ତୁ ମହତାବ ନିଜ ଚେଷ୍ଟାରୁ ବିଚ୍ୟୁତ ନ ହୋଇ ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେବାପରେ ସେହି ବର୍ଷ ଏପ୍ରିଲ ମାସ ୨୩ ତାରିଖରେ କ୍ଷୁଦ୍ର ରାଜ୍ୟଗୁଡ଼ିକର ଉନ୍ନତି ପାଇଁ ଓ ରାଜ୍ୟମାନଙ୍କରେ ଗଚ୍ଛିତ ଥିବା ଖଣିଜ ଏବଂ ବନ୍ୟ ସମ୍ପଦର ଉପଯୁକ୍ତ ବିନିଯୋଗ ନିମନ୍ତେ ଦେଶ ମିଶ୍ରଣର ଜରୁରୀ ଆବଶ୍ୟକତା ମନେ କରି ଏ ଦିଗରେ ସହଯୋଗ କରିବାକୁ ରାଜାମାନଙ୍କୁ ଚିଠି ଲେଖିଥିଲେ । କେତେକ ରାଜା ଏହାର ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ବଂଶାନୁକ୍ରମେ ଚଳି ଆସୁଥିବା ରାଜପ୍ରଥା, ଅନ୍ୟାନ୍ୟ ପଦ ପଦବୀ ଓ ହାତ ପାଣ୍ଠିକୁ ଉଚ୍ଛେଦ ନ କରି ସେମାନେ ଭୋଗ କରି ଆସୁଥିବା ସୁଖ ସୁବିଧାଗୁଡ଼ିକୁ ରହିତ କରି ଗଡ଼ଜାତଗୁଡ଼ିକ ମିଶ୍ରଣ କରିବା ମହତାବଙ୍କର ଉଦ୍ଦେଶ୍ୟ ଥିଲା । ସେହି ବର୍ଷ ମହତାବ ଗୋଆଲିୟରଠାରେ ଅନୁଷ୍ଠିତ ହୋଇଥିବା ନିଖିଳ ଭାରତ ଗଡ଼ଜାତ ସମ୍ମିଳନୀରେ ଯୋଗ ଦେଇ ଗଡ଼ଜାତ ମଣ୍ଡଳର ମିଶ୍ରଣ ସଂପର୍କରେ ସର୍ଦ୍ଦାର ପଟେଲଙ୍କ ସହିତ ଗୋପନୀୟ ଆଲୋଚନା କରିଥିଲେ ।

ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ମହତାବ ପ୍ରଥମରୁ ଉଦ୍ୟମ କରି ଶେଷରେ ଏହା କାର୍ଯ୍ୟକାରୀ ହେବା ପର୍ଯ୍ୟନ୍ତ ନିଜ ନୀତିରେ ଅଟଳ ଥିଲେ । ଏହି ମର୍ମରେ ସେ ଦେଶୀୟ ରାଜାମାନଙ୍କୁ ପ୍ରଧାନମନ୍ତ୍ରୀ ହିସାବରେ ୧୯୪୬ ମସିହା ମେ ମାସ ନ'/ଦଶ ତାରିଖରେ ଅନ୍ୟ ଏକ ଚିଠି ଲେଖି ସେମାନଙ୍କର ମତାମତ ଲୋଡ଼ିଥିବା କଥା ତାଙ୍କ ବ୍ୟକ୍ତିଗତ ପତ୍ର ସଂ.୪୯ରୁ ପ୍ରମାଣ ମିଳେ । ରାଜାମାନଙ୍କ ବିପକ୍ଷରେ ପୂର୍ବରୁ ପ୍ରକାଶିତ ହୋଇଥିବା ମହତାବଙ୍କର ପ୍ରେସ ବିବୃତିକୁ ଆଳ କରି ରାଜାମାନେ ଅସନ୍ତୁଷ୍ଟ ଥିଲେ ମଧ୍ୟ ଏ କ୍ଷେତ୍ରରେ କେତେଜଣ ରାଜା ଆଲୋଚନା କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ଯାହାହେଉନା କାହିଁକି, ମହତାବ ଏଥିରେ ହତୋତ୍ସାହ ନହୋଇ ଦୃଢ଼ ମନୋବଳ ନେଇ ଆଗେଇ ଥିଲେ । ତାଙ୍କ ମତରେ ଓଡ଼ିଶା ତଥା ପ୍ରଜାମାନଙ୍କର ଉନ୍ନତି ପାଇଁ ମିଶ୍ରଣହିଁ ଏକମାତ୍ର ପନ୍ଥା ଥିଲା । ସେଥିପାଇଁ ସେ ସମସ୍ତ ପ୍ରତିବନ୍ଧକୁ ଏଡ଼ାଇ ବ୍ୟକ୍ତିଗତ ଭାବେ ରାଜାମାନଙ୍କୁ ସାକ୍ଷାତ କରି ଆଲୋଚନା କରିଥିଲେ । ଗଡ଼ଜାତ ରାଜାମାନଙ୍କର ସହଯୋଗ ନ ମିଳିଲେ ରାଜ୍ୟରେ ଗଚ୍ଛିତ ଥିବା ଖଣିଜ ସମ୍ପଦର ଉପଯୁକ୍ତ ବିନିଯୋଗ ହୋଇ ପାରିବ ନାହିଁ । ଏଥିପାଇଁ ଉଭୟ ପ୍ରାଦେଶିକ ସରକାର ଓ ରାଜାମାନଙ୍କର ମିଳିତ ସହଯୋଗ ଆବଶ୍ୟକ ।

ଏଣେ ପ୍ରଜାମାନଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଓ ବର୍ଦ୍ଧିତ କର ନଦେବା ପାଇଁ ଲକ୍ଷ ଲକ୍ଷ ପ୍ରଜା ଆନ୍ଦୋଳନ କରୁଥାନ୍ତି । ଜନ ଆନ୍ଦୋଳନ ଯୋଗୁଁ କ୍ଷୁଦ୍ର ରାଜ୍ୟଗୁଡ଼ିକର ଅବସ୍ଥା ଦିନକୁ ଦିନ ଦୁର୍ବଳ ହେବାକୁ ଲାଗିଥାଏ । ପ୍ରଜା ଆନ୍ଦୋଳନର ପ୍ରଭାବ ଗଡ଼ଜାତ ରାଜାମାନଙ୍କୁ ନାନା ଆଶଙ୍କା ଓ ସନ୍ଦେହରେ ପକାଇଥିଲା । ଏଥିପାଇଁ ସେମାନେ ପୂର୍ବ-ଗଡ଼ଜାତ ରାଜନ୍ୟ ମଣ୍ଡଳୀ ଗଠନ କରିଥିଲେ ଏବଂ ନିଜର ଅନୁଗତ ପ୍ରଜାମାନଙ୍କୁ ସଂଗଠିତ କରି 'ପ୍ରଜାସମିତି' ଗଠନ କରି ପ୍ରଜା ଆନ୍ଦୋଳନକୁ ଛତ୍ରଭଙ୍ଗ କରିବାକୁ ଉଦ୍ୟମ କରୁଥିଲେ । ଫଳରେ ପ୍ରଜାମଣ୍ଡଳ ଦୁର୍ବଳ ହେବା ପରିବର୍ତ୍ତେ ଅଧିକ ଶକ୍ତିଶାଳୀ ହେଲା । ପ୍ରଜାମଣ୍ଡଳ ଗଡ଼ଜାତି ଶାସନ ଲୋପ କରି ଗଣତନ୍ତ୍ର ଶାସନ ପ୍ରବର୍ତ୍ତନ ପାଇଁ 'କର ବା ମର' ଆନ୍ଦୋଳନ କରିବାକୁ ସ୍ଥିର କଲେ । ଏହି ପରିପ୍ରେକ୍ଷୀରେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ନୀଳଗିରିରେ ପ୍ରଜାମଣ୍ଡଳ ନେତୃତ୍ୱରେ ଚାଲିଥିବା ଏହି ଆନ୍ଦୋଳନ ଅତ୍ୟନ୍ତ ଭୟାବହ ରୂପ ଧାରଣ କରିଥିଲା । ଏହାର ପଡ଼ୋଶୀ ଜିଲ୍ଲା ବାଲେଶ୍ୱରରେ ଆଇନ୍ ଶୃଙ୍ଖଳା ପରିଚାଳନା

କରିବାରେ ବାଧାପ୍ରାପ୍ତ ହେବାରୁ ଏହାର ପ୍ରତିକାର ନିମନ୍ତେ ହରେକୃଷ୍ଣ ମହତାବ ନୀଳଗିରିର ଶାସନ ଦାୟିତ୍ୱ ଭାରତ ସରକାର ହାତକୁ ନେବାପାଇଁ ପରାମର୍ଶ ଦେଇଥିଲେ । ଯାହା ଫଳରେ କି ଭାରତ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ନୀଳଗିରିର ଶାସନ କ୍ଷମତା ଓଡ଼ିଶା ସରକାର ୧୯୪୭ ମସିହା ନଭେମ୍ବର ୧୪ ତାରିଖରେ ବହନ କରିଥିଲେ । ଏଥିପୂର୍ବରୁ ହରେକୃଷ୍ଣ ମହତାବ ନୀଳଗିରି ରାଜ୍ୟର ଶାସନ ସଂପର୍କିତ ସାମ୍ବିଧାନିକ ବୈଧତା ବିଷୟ ଓଡ଼ିଶାର ବିଶିଷ୍ଟ ଓକିଲମାନଙ୍କ ସହିତ ପରାମର୍ଶ କରିଥିବା କଥା ତା ୧୦-୧୧-୪୭ ମସିହାର ଟିପ୍ପଣୀରେ ଉଲ୍ଲେଖ କରିଛନ୍ତି । ସମଗ୍ର ଗଡ଼ଜାତ ମିଶ୍ରଣରେ ନୀଳଗିରି ପ୍ରଥମେ ପଥ ପରିଷ୍କାର କରିଥିଲା । ବିଶେଷ କରି ହରେକୃଷ୍ଣ ମହତାବଙ୍କର ଏହା ଏକ ଉଲ୍ଲେଖନୀୟ ଯୁଗାନ୍ତକାରୀ କାର୍ଯ୍ୟ ।

ନୀଳଗିରି ବ୍ୟତୀତ ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟମାନଙ୍କରେ ଉପୁଜିଥିବା ରାଜନୈତିକ ସଙ୍କଟର ଅବସାନ ପାଇଁ ତତ୍କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ହରେକୃଷ୍ଣ ମହତାବଙ୍କ ବିଚାର ଆଲୋଚନା ପରେ ୧୯୪୭ ମସିହା ଡିସେମ୍ବର ମାସ ୧୪ ତାରିଖରେ ରାଜା ମହାରାଜାମାନଙ୍କର ଏକ ଜରୁରୀ ସଭା କଟକରେ ଡକାଇବାକୁ ମହତାବଙ୍କୁ ୧୯୪୭ ମସିହା ନଭେମ୍ବର ମାସ ୨୭ ତାରିଖ ଦିନ ତାର ବାର୍ତ୍ତା ପଠାଇଥିଲେ । ସେ ଏହାର ସମସ୍ତ ବ୍ୟବସ୍ଥା କରିବା ପାଇଁ ମୁଖ୍ୟ ଶାସନ ସଚିବଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଭାରତର ଉପ-ପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲ ଓ ତାଙ୍କ ବିଭାଗର ସେକ୍ରେଟାରୀ ଭି.ପି. ମେନନ ଡିସେମ୍ବର ମାସ ୧୩ ତାରିଖରେ ଉପସ୍ଥିତ ହୋଇ ହରେକୃଷ୍ଣ ମହତାବଙ୍କ ସହିତ ଆଲୋଚନା ଅନ୍ତେ ପର ଦିନ ଓଡ଼ିଶା ଗଡ଼ଜାତ ରାଜ୍ୟ ମହାରାଜାମାନଙ୍କ ସହିତ ସେମାନଙ୍କ ରାଜ୍ୟ ମିଶ୍ରଣ ବିଷୟ ପୁଙ୍ଖାନୁପୁଙ୍ଖ ଆଲୋଚନା ମହତାବଙ୍କ ଉପସ୍ଥିତିରେ କରିଥିଲେ । ମହତାବ ମଧ୍ୟ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରି ରାଜା ମହାରାଜାମାନଙ୍କର ପ୍ରଶ୍ନର ଉତ୍ତର ଦେଇ ସେମାନଙ୍କର ସନ୍ଦେହ ମୋଚନ କରିଥିଲେ । ଓଡ଼ିଶା ସରକାରଙ୍କ ତରଫରୁ ମୁଖ୍ୟମନ୍ତ୍ରୀ ହିସାବରେ ସେ ରାଜାମାନଙ୍କର ପଦବୀ, ହାତପାଣ୍ଠି ଓ କୋଠି ନିରାପତ୍ତା ଆଦି ବ୍ୟବସ୍ଥା ଯୋଗାଇ ଦେବାକୁ ପ୍ରତିଶ୍ରୁତି ଦେବା ପରେ ରାଜନ୍ୟବର୍ଗଙ୍କୁ ସ୍ୱଇଚ୍ଛାରେ ରାଜ୍ୟର ଶାସନ କ୍ଷମତା ହସ୍ତାନ୍ତର କରିବାକୁ ସର୍ଦ୍ଦାର ପଟେଲ ଆହ୍ୱାନ କରିଥିଲେ ଏବଂ ସେମାନେ ଏହାକୁ ଗ୍ରହଣ କରି ଡିସେମ୍ବର ମାସ ୧୫ ତାରିଖରେ କ, ଖ ଓ ଗ ଶ୍ରେଣୀଭୁକ୍ତ ରାଜାମାନେ ସ୍ୱତନ୍ତ୍ରଭାବେ ଚୁକ୍ତିନାମା ସ୍ୱାକ୍ଷର କରିବା ଫଳରେ ଓଡ଼ିଶା ଗଡ଼ଜାତ ରାଜ୍ୟରେ ଉପୁଜିଥିବା ରାଜନୈତିକ ସଙ୍କଟର ଅବସାନ ଘଟିଥିଲା । ଓଡ଼ିଶାର ୨୫ଟି ଗଡ଼ଜାତ ରାଜ୍ୟ ମୟୂରଭଞ୍ଜ ବ୍ୟତୀତ ୧୯୪୮ ମସିହା ଜାନୁଆରୀ ପହିଲାରୁ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହୋଇଥିଲା ।

କିନ୍ତୁ କେତେକ ପ୍ରଶାସନିକ ଅସୁବିଧା ଓ ବିହାରର ଦାବୀ ଫଳରେ ଖଡ଼୍‌ଗକଲା ଓ ଖରସୁଆଁ ରାଜ୍ୟ ୧୯୪୮ ମସିହା ମେ ମାସ ୧୨ ତାରିଖରୁ ବିହାରକୁ ସ୍ଥାନାନ୍ତରିତ କରାଯାଇଥିଲା । ୧୯୪୯ ମସିହା ଜାନୁଆରୀ ପହିଲା ତାରିଖରୁ ମୟୂରଭଞ୍ଜର ଶାସନ ଦାୟିତ୍ୱ ମଧ୍ୟ ଓଡ଼ିଶା ହାତକୁ ଆସିଲା । ଏଥିପୂର୍ବରୁ ସୁନାରାମ ସୋରେନଙ୍କ ନେତୃତ୍ୱରେ ଆଦିବାସୀମାନଙ୍କର ମୟୂରଭଞ୍ଜ ରାଜ୍ୟ ବିହାର ସହିତ ମିଶିବାର ଯେଉଁ ଆନ୍ଦୋଳନ ଚାଲିଥିଲା, ତାହା କେବଳ ହରେକୃଷ୍ଣ ମହତାବଙ୍କ ଅପ୍ରାଣ ଉଦ୍ୟମ ଯୋଗୁଁ ୧୯୪୮ ମସିହା ଅକ୍ଟୋବର ମାସ ୧୭ ତାରିଖରେ ସମାଧାନ ହୋଇ ମିଶ୍ରଣ ପାଇଁ ସେହି ଦିନ ଚୁକ୍ତିନାମା ସ୍ୱାକ୍ଷରିତ ହେବା ଫଳରେ ଏହା ଓଡ଼ିଶା ଶାସନାନ୍ତର୍ଗତ ହେବାର ପଥ ସୁଗମ ହୋଇଥିଲା ଓ ଓଡ଼ିଶାର ସମଗ୍ର ଗଡ଼ଜାତ ଅଞ୍ଚଳର ମିଶ୍ରଣ ସଂପୂର୍ଣ୍ଣ ହୋଇଥିଲା ।

ଓଡ଼ିଶାର ଏହି ଗୁରୁତ୍ୱପୂର୍ଣ୍ଣ ଐତିହାସିକ ସିଦ୍ଧାନ୍ତ ଯୋଗୁଁ ଭାରତର ୬୬୨ ଟି ଛୋଟ ବଡ଼ ଦେଶୀୟ ରାଜ୍ୟ, ରିଯିଷ୍ଟିଆ ଭଳି ଏକ କ୍ଷୁଦ୍ର ରାଜ୍ୟରୁ ମହୀଶୂର ପରି ଏକ ବୃହତ୍ତର ଧନଶାଳୀ ରାଜ୍ୟ ମିଶ୍ରଣର ଅୟମାରମ୍ଭ କେବଳ ହରେକୃଷ୍ଣ ମହତାବଙ୍କ ଯୋଗୁଁ ସମ୍ଭବ ହୋଇ ପାରିଥିଲା । ତେଣୁ ସେ ବିଶାଳ ଉତ୍କଳ ତଥା ବିଶାଳ ଭାରତର ପ୍ରତିଷ୍ଠାତା କହିଲେ ଅତ୍ୟୁକ୍ତି ହେବନାହିଁ ।

*ଓଡ଼ିଶା ରାଜ୍ୟ ଅଭିଲେଖାଗାର, ଭୁବନେଶ୍ୱର*

• • •

## ସ୍ଥିତପ୍ରଜ୍ଞ

ଡକ୍ଟର ମହତାବ ଦେଶର ଜଣେ ଉଚ୍ଚମାନର ନେତା ଥିଲେ । ନିଜର ସାଧନା ବଳରେ ସେ ଭାରତବର୍ଷରେ ଏକ ଉଚ୍ଚ ସ୍ଥାନ ଅଧିକାର କରିଥିଲେ । ଏତେ ଘାତ ପ୍ରତିଘାତ ମଧ୍ୟରେ ନିଜକୁ ସେ ଯେପରି ଗଢ଼ିଛନ୍ତି, ଭାରତବର୍ଷରେ କେହି ନେତା ଏପରି ନଥିବେ । ହୀରାକୁଦ ବନ୍ଧ, ଭୁବନେଶ୍ୱର ରାଜଧାନୀ, ଗାଁ ମଜଲିସ ତାଙ୍କୁ ଅମର କରି ରଖିବ । ତାଙ୍କର ନିଷ୍ଠା, ତ୍ୟାଗ, ମହତ୍ ଲକ୍ଷ୍ୟ, ସମୟାନୁବର୍ତ୍ତିତା, ଶୃଙ୍ଖଳିତ ଜୀବନ, ସ୍ୱଦେଶ ପ୍ରୀତି, ଧୈର୍ଯ୍ୟ, ଆତ୍ମବିଶ୍ୱାସ ଓ ଈଶ୍ୱର ବିଶ୍ୱାସ ତାଙ୍କୁ ମହତ୍ କରାଇଛି । ଗୀତାରେ ବର୍ଣ୍ଣିତ ସ୍ଥିତପ୍ରଜ୍ଞ ମଧ୍ୟରେ ସେ ଜଣେ ବୋଲି ମୋର ଧାରଣା ।

*ସହକର୍ମୀ ଭୈରବ ଚରଣ ମହାନ୍ତି*

# ହୀରାକୁଦ ବନ୍ଧ ନିର୍ମାଣ : ପ୍ରଗତିର ପ୍ରଥମ ସୋପାନ

ଡ଼କ୍ଟର ହରେକୃଷ୍ଣ ମହତାବ

୧୯୪୬ ମସିହାରେ ମହାନଦୀ ବନ୍ଧ ଯୋଜନାର ସର୍ଭେ କାମ ଆରମ୍ଭ କରିବା ପାଇଁ ଭାରତ ସରକାରଙ୍କ ଉପରେ ଚାପ ପକାଇଲି । ସେତେବେଳେ ସାର ଆକବର ହାଇଦରି ଏ ବିଭାଗର ଭାରରେ ଥିଲେ । ସର୍ଭେ ଆରମ୍ଭ କରିବା ପୂର୍ବରୁ ସମ୍ବଲପୁରର ହୀରାକୁଦ ବନ୍ଧ ବିରୋଧ ଆନ୍ଦୋଳନ ତେଜି ଉଠିଲା । ଓଡ଼ିଶା ଇତିହାସର ପୁରୁଣା ପୃଷ୍ଠା ଓଲଟି ନୂଆ ପୃଷ୍ଠା ଆରମ୍ଭ ହେଲା ହୀରାକୁଦ ଯୋଜନାଠାରୁ । ତେଣୁ ତାହା ସହିତ ମୋର ସମ୍ପର୍କର ଇତିହାସ ଲିପିବଦ୍ଧ ହେବା ଉଚିତ । ଆମେମାନେ ଯେତେବେଳେ ଭାରତ ସରକାରଙ୍କ ବନ୍ଦୀ ହୋଇ ଅହମ୍ମଦନଗର ଫୋର୍ଟରେ ଥାଉଁ, ସେତେବେଳେ ୧୯୪୩ର ଘୋର ଦୁର୍ଭିକ୍ଷ ପରେ ୧୯୪୪ରେ ଦାମୋଦର ନଦୀ ଯୋଜନା କଥା ଇଂରେଜ ସରକାର ବିଚାରକୁ ନେଲେ । ସାର ଆର୍ଦେଶ୍ୱର ଦଲାଲ ସେତେବେଳେ ଏହି ବିଭାଗର ଭାରରେ ଏକ୍‌ଜିକ୍ୟୁଟିଭ କାଉନସିଲର ଥିଲେ । ସେତେବେଳେ ଆମେରିକାର ଦୁର୍ଦ୍ଧାନ୍ତ ନଦୀ ଟେନିସକୁ ଯେଉଁ ଯୋଜନାରେ ଦମନ କରାଯାଇ ଥିଲା, ସେହି ଯୋଜନା ଦାମୋଦର ନଦୀ ପ୍ରତି କାର୍ଯ୍ୟକାରୀ ହେବାର ପ୍ରସ୍ତାବ ହେଲା । ଏ ସମ୍ବାଦ ପଢ଼ି ମୁଁ ମୋ ସାନଭାଇ ଗୋପୀନାଥକୁ ଏକ ପତ୍ର ଲେଖିଲି, ଠକ୍କର ବାପାଙ୍କୁ ମୋର ନିବେଦନ ଜଣାଇ ଦେବା ପାଇଁ । ଜେଲ୍‌ର ନିୟମାନୁସାରେ କେବଳ ନିଜର ବନ୍ଧୁ ବାନ୍ଧବ ବ୍ୟତୀତ ଅନ୍ୟ କାହାକୁ ପତ୍ର ଦେବା ନିଷିଦ୍ଧ ଥିଲା । ଗୋପୀନାଥକୁ ଲେଖିଥିଲି, 'ଠକ୍କର ବାପାଙ୍କୁ ଲେଖିବ ଯେ ମୁଁ ଲେଖୁଛି, ଓଡ଼ିଶା କଅଣ ଚିରକାଳ କେବଳ ସମାଜସେବୀମାନଙ୍କ ଚାଉଳବଣ୍ଟା କ୍ଷେତ୍ର ହୋଇ ରହିଥିବ ? ଦାମୋଦର ବନ୍ୟାଠାରୁ ମହାନଦୀ ବନ୍ୟା ବହୁ ଗୁଣରେ ଭୟଙ୍କର ଓ କ୍ଷତିକାରକ । ଅଥଚ୍, ଦାମୋଦର କଥା ବିଚାରକୁ ନିଆଗଲା, ମହାନଦୀ ସମ୍ବନ୍ଧରେ କେହି ପଦେ କହୁନାହାନ୍ତି । ଠକ୍କରବାପା ଯଦି ପ୍ରକୃତରେ ଓଡ଼ିଶାକୁ ଭଲ ପାଉଥିବେ, ତେବେ ସେ ମହାନଦୀ ଯୋଜନା ପାଇଁ ଆନ୍ଦୋଳନ କରିବେ ।

ଠକ୍କର ବାପା ଏ ପତ୍ର ଗୋପୀନାଥଠାରୁ ପାଇଁ "ଟାଇମ୍‌ସ ଅଫ୍ ଇଣ୍ଡିଆ"ରେ ଆନ୍ଦୋଳନ ଚଳାଇଲେ । ସାର୍ ଆର୍ଦେଶ୍ୱର ଦଲାଲଙ୍କ ପରେ ଡ଼କ୍ଟର ଆମ୍ବେଦକର ସେ ବିଭାଗର ଭାର ନେଲେ । ସେ ମହାନଦୀ ଯୋଜନାକୁ ବିଚାରକୁ ନେଲେ । ତାପରେ ସେ ଯୋଜନା ଗତି ସଂଗ୍ରହ କଲା । ୧୯୪୫ରେ ମୁଁ କାରାମୁକ୍ତ ହୋଇ ଆସିଲା ପରେ ଠକ୍କର ବାପା ମୋତେ ପତ୍ର ଲେଖିଲେ, ମୋ ଅନୁପସ୍ଥିତିରେ ସେ ଯାହା କିଛି କରିଛନ୍ତି, ବର୍ତ୍ତମାନ ମୁଁ ସେ କାର୍ଯ୍ୟର ଭାର ନିଏଁ । ସାର ହାଥୋର୍ଣ୍ଣଲୁଇଙ୍କ ସହ ମୋର ବନ୍ଧୁତା ହେବା ପରେ ମୁଁ ତାଙ୍କୁ ଏ ଯୋଜନାର ଗୁରୁତ୍ୱ ବିଷୟ କହିଲି । ସେ ଓ ଏଡ଼ଭାଇଜର ଗୋଖଲେ ଏ କାର୍ଯ୍ୟକୁ ଗୁରୁତ୍ୱ ଦେଇ ଭାରତ ସରକାରଙ୍କର ତତ୍କାଳୀନ ଚିଫ୍ ଇଞ୍ଜିନିୟର ଏ.ଏନ୍. ଖୋସଲାଙ୍କ ସହ ପରାମର୍ଶ କରି ତତ୍‌କାଳୀନ ଶାସନକୁ ଏ ଯୋଜନା ପାଇଁ ପ୍ରତିଶ୍ରୁତ କରାଇବା ଉଦ୍ଦେଶ୍ୟରେ ୧୯୪୫ ମସିହାରେ ସମ୍ବଲପୁର ହୀରାକୁଦଠାରେ ବନ୍ଧର ଭିତ୍ତିପ୍ରସ୍ତର ମଧ ସ୍ଥାପନ କରାଇଦେଲେ । ସେତେବେଳେ କଂଗ୍ରେସ ବେଆଇନ । ସାର ହାଥୋର୍ଣ୍ଣ ଲୁଇ ମୂଳଭିତ୍ତି ସ୍ଥାପନ କଲେ । ସେହି ଉପଲକ୍ଷରେ ମୁଁ ଏକ ବାର୍ତ୍ତା ପଠାଇଥିଲି । ତା' ପରେ ନିର୍ବାଚନ ଓ ମନ୍ତ୍ରିମଣ୍ଡଳ ଗଠନ । କିଛି ଦିନ ପରେ ବନ୍ଧ ବିରୋଧ ଆନ୍ଦୋଳନ ହେଲା ଓ କ୍ରମେ ଏହା ଗୁରୁତର ଆକାର ଧାରଣ କଲା । ଆନ୍ଦୋଳନ ଏପରି ପ୍ରବଳ ହେଲା ଯେ ଗଭର୍ଣ୍ଣର ଚନ୍ଦୁଲାଲ ତ୍ରିବେଦୀ ମଧ ଶଙ୍କି ଗଲେ ସର୍ଭେ କାମ ବୋଧହୁଏ ହୋଇପାରିବ ନାହିଁ । ତତ୍‌କାଳୀନ ଏକ୍‌ଜିକ୍ୟୁଟିଭ କାଉନସିଲର ସାର୍ ଆକବର ହାଇଦରି ମୋତେ ଲେଖିଲେ, ଯଦି ଲୋକଙ୍କ ବିରୋଧ ଯୋଗୁଁ ହୀରାକୁଦ ସର୍ଭେ ହୋଇ ନପାରେ ତେବେ ବହୁ ବର୍ଷ ପାଇଁ ଏ ପ୍ରସ୍ତାବର ପୁନରୁତ୍‌ଥାନ ସମ୍ଭବ ନୁହେଁ ।

X X X

ମୋର ବୁଦ୍ଧି, ଧୈର୍ଯ୍ୟ ଓ କର୍ମକ୍ଷମତା ସବୁ ଏଠି ବାଜି ଲାଗିଲା, ବନ୍ଧ ହେଉ ନହେଲେ ମୁଁ ବ୍ୟର୍ଥ ହୁଏ । ସମ୍ବଲପୁରରେ ବିରାଟ ବନ୍ଧ ବିରୋଧୀ ସଭାମାନଙ୍କରେ ମୁଁ ଘଣ୍ଟା ଘଣ୍ଟା ଧରି ଭାଷଣ ଦେଇଛି, ବୁଝାଇଛି ଓ ଯୁକ୍ତି କରିଛି । ସମଲାଇ ମନ୍ଦିରରେ ମୋର ମାରଣ ମନ୍ତ୍ରରେ ବିଧିବଦ୍ଧ ଭାବରେ ହୋମ ଚାଲିଥାଏ । ମୁଁ ମଧ ସମଲାଇଙ୍କୁ ପ୍ରାର୍ଥନା କରୁଥାଏ ବନ୍ଧ କାର୍ଯ୍ୟ ସୁଗମ କରିଦେବା ପାଇଁ । ବନ୍ଧ ବିରୋଧରେ ସତ୍ୟାଗ୍ରହ ହେଲା । ଶ୍ରୀ ବୋଧରାମ ଦୁବେ ଦିଲ୍ଲୀରେ ତତ୍‌କାଳୀନ କଂଗ୍ରେସ ପ୍ରେସିଡେଣ୍ଟ ଆଚାର୍ଯ୍ୟ କ୍ରିପ୍ଲାନିଙ୍କ ସହ ଦେଖା କରି ଆସି ସମ୍ବଲପୁରରେ ପ୍ରଚାର କଲେ ଯେ କଂଗ୍ରେସ ସଭାପତି ସତ୍ୟାଗ୍ରହର ନିର୍ଦ୍ଦେଶ ଦେଇଛନ୍ତି । କ୍ରିପ୍ଲାନିଙ୍କଠାରୁ ଟେଲିଗ୍ରାମ କରି ବୁଝିଲି ଯେ ତାଙ୍କ ନାମରେ ମିଥ୍ୟା ପ୍ରଚାର ହେଉଛି । ପଦସ୍ଥ ବ୍ୟକ୍ତିମାନେ କାରାବରଣ କଲେ । ପୋଲିସ ଜୁଲମ ହେଉଛି ବୋଲି ଅଭିଯୋଗ ହେଲା । ବ୍ୟବସ୍ଥାସଭାର ବିରୋଧୀ ଦଳର ସଭ୍ୟମାନେ ପୋଲିସ ଜୁଲମର ପ୍ରତିବାଦ କଲେ । ସେତେବେଳେ ସମ୍ବଲପୁରର ଡେପୁଟି କମିଶନର ମିଃ ସ୍ୱାନ ଥିଲେ ଓ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଏସ୍.କେ. ଘୋଷ ଥିଲେ । ଏକ ଦିଗରେ ଶାସନ ଆଇନ ବାଟରେ କାର୍ଯ୍ୟ କରୁଥାଏ ଓ ଅନ୍ୟ ଦିଗରେ ରାଜନୀତିକ କ୍ଷେତ୍ରରେ ଯେତେଦୂର ସମ୍ଭବ ଲୋକମତ ସୃଷ୍ଟି କରିବାର ଚେଷ୍ଟା କରୁଥାଏଁ । ଏଥିରେ ମୋର ଏକମାତ୍ର ସହାୟକ ଥାଏ ମୋଠାରେ ମୋର ସହକର୍ମୀମାନଙ୍କ ଅଖଣ୍ଡ ବିଶ୍ୱାସ ଓ ନିଜ ଦଳ ମଧ୍ୟରେ ସଂହତି । ତଥେ ଗଭର୍ଣ୍ଣର ଓ ଉପରେ ଭାଇସରାୟଙ୍କୁ ସ୍ଥିର ରଖିବା ମଧ ଏକ ପ୍ରଶ୍ନ ହୋଇଥାଏ । କାରଣ ଯିବା ଆସିବା ବେଳେ ସେମାନେ କୌଣସି ପ୍ରକାର ଆନ୍ଦୋଳନ ପାଇଁ ଉତ୍ତେଜନା ସୃଷ୍ଟି କରିବାକୁ ଶଙ୍କିତ ଓ ପଶ୍ଚାତ୍‌ପଦ ହେଉଥାନ୍ତି । ସେମାନେ ଦୁଇ ଦିଗର ପ୍ରଭାବକୁ ପରୀକ୍ଷା କରିଚାଲିଥାନ୍ତି ।

ଆଜି ହୁଏତ ଅନେକେ ବିଶ୍ୱାସ କରିବେ ନାହିଁ ବା ଏପରି କଳ୍ପନା କରି ପାରିବେ ନାହିଁ ଯେ ସେତେବେଳେ ସମ୍ବଲପୁରର କେତେକ ପଦସ୍ଥ ବ୍ୟକ୍ତି ସମ୍ବଲପୁରକୁ ଓଡ଼ିଶାରୁ ଅଲଗା କରିଦେବା ପାଇଁ ଭାରତ ସରକାରଙ୍କଠାରେ ଆପତ୍ତି ଜଣାଇଥିଲେ ଏବଂ ଏକ ପ୍ରତିନିଧି ଦଳ ମଧ୍ୟ ଦିଲ୍ଲୀ ଯାଇଥିଲେ । ସେତେବେଳେ ଗଡ଼ଜାତ ମିଶ୍ରଣ ପାଇଁ ଓଡ଼ିଶାରେ ଯେପରି ଉଦ୍ୟମ ହେଉଥିଲା, ଗଡ଼ଜାତମାନେ ମଧ୍ୟ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ସେହିପରି ଉଦ୍ୟମ କରୁଥିଲେ । ଓଡ଼ିଶା ଓ ଛତିଶଗଡ଼ର ଗଡ଼ଜାତମାନେ ମିଶି ଏକ ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଫେଡ଼େରେସନ ଗଠନ କରି ତାହାର ଶାସନ ବିଧାନ ଆଦି ପଲିଟିକେଲ୍ ଡିପାର୍ଟମେଣ୍ଟ ଦ୍ୱାରା ସମର୍ଥିତ କରାଇ ତାହାର ହେଡ୍‌କ୍ୱାର୍ଟର୍ ରାୟଗଡ଼ରେ କରାଇଥାନ୍ତି । ସମ୍ବଲପୁରର କେତେକ ନେତା ଓଡ଼ିଶାର ସମ୍ବଲପୁରକୁ କାଢ଼ିନେଇ ସେହି ଇଷ୍ଟର୍ଣ୍ଣଷ୍ଟେଟ୍ସ ଫେଡ଼େରେସନ୍ ସହିତ ମିଶାଇବା ପାଇଁ ଭାରତ ସରକାର ତଥା ପଲିଟିକେଲ ଡ଼ିପାର୍ଟମେଣ୍ଟକୁ ଆବେଦନ କରିଥାଆନ୍ତି । ଏଥିରେ ତତ୍କାଳୀନ ଗଡ଼ଜାତ ମିଶ୍ରଣ ବିରୋଧୀ ନେତା ପାଟଣା ମହାରାଜା ସମ୍ବଲପୁର ନେତାମାନଙ୍କୁ ପ୍ରୋତ୍ସାହନ ଦେଉଥାନ୍ତି ବୋଲି ସମ୍ବାଦ ମିଳୁଥାଏ । ଏହି ବିଷୟରେ ମୁଁ ସେତେବେଳେ ଶ୍ରୀ ବୋଧରାମ ଦୁବେ, ଶ୍ରୀ ଶଙ୍କର ପ୍ରସାଦ ମିଶ୍ର ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ଆଲୋଚନା କରିଥିଲି ଓ ନିରାଶ ମଧ୍ୟ ହୋଇଥିଲି । ମନୁଷ୍ୟ କୌଣସି କାରଣରୁ ଅସନ୍ତୁଷ୍ଟ ହୋଇ ଅସନ୍ତୋଷକୁ ମନର ଅତି ଗଭୀର ପ୍ରଦେଶକୁ ନେଇଗଲେ ଶେଷରେ ବିଚାରଶୂନ୍ୟ ହୋଇଯାଏ । ଏହା ହିଁ ସେତେବେଳେ ମୁଁ ଅନୁଭବ କରୁଥିଲି । ମୋର ଯୁକ୍ତି ଥିଲା ଏହି ହୀରାକୁଦ ବନ୍ଧ ଯୋଗେ ବାସ୍ତବିକ କ୍ଷତି ହେଉଛି ସମ୍ବଲପୁର ସବଡ଼ିଭିଜନର ଅନେକ ଗ୍ରାମର, କିନ୍ତୁ ଝାରସୁଗୁଡ଼ା, ବରଗଡ଼, ପଦ୍ମପୁର ପ୍ରଭୃତି ଅଞ୍ଚଳର କୌଣସି କ୍ଷତି ହେଉନାହିଁ । ଯେଉଁ ଗ୍ରାମମାନଙ୍କର କ୍ଷତି ହେଉଛି ସେମାନେ କ୍ଷତିପୂରଣ ପାଇବେ । ଅନ୍ୟ ସମସ୍ତେ କୌଣସି କ୍ଷତି ସହ୍ୟ ନ କରି ଲାଭବାନ୍ ହେବେ । ଏପରି ସ୍ଥଳେ ସମସ୍ତଙ୍କୁ ଟାଣି ଗଡ଼ଜାତ କରାଇବାକୁ କେବେ ଲୋକେ ସମର୍ଥନ କରିବେ ନାହିଁ, କିନ୍ତୁ କିଏ ଶୁଣୁଛି ମୋର ଯୁକ୍ତି ? ଏ ବିଷୟରେ ମୁଁ ଲର୍ଡ଼ ଓ୍ୱାଭେଲଙ୍କ ସହ ଦେଖା କରିଥିଲି । ଭାରତର ସ୍ୱାଧୀନତା ପରେ ବ୍ୟସ୍ତ ଭାଇସରାୟ ଏ ପ୍ରକାର ଆନ୍ଦୋଳନ କଥା ଶୁଣି ବିସ୍ମିତ ହେଲେ ଓ ଅଳ୍ପ କଥାରେ ସମ୍ବଲପୁରର ସେ ନିବେଦନ ଅଗ୍ରାହ୍ୟ କଲେ । ଏ ବିଷୟରେ ଗଭର୍ଣ୍ଣର ଚନ୍ଦୁଲାଲ ତ୍ରିବେଦୀ ମଧ୍ୟ ତତ୍କାଳୀନ ରେସିଡ଼େଣ୍ଟ ଏଚ୍.କେ. ଚଢ଼ାଙ୍କଠାକୁ ଲେଖି ଅନୁରୋଧ କରିଥିଲେ ଯେ ସେ ପାଟଣା ମହାରାଜାଙ୍କୁ ପରାମର୍ଶ ଦିଅନ୍ତୁ, ଏ ପ୍ରକାର ଅଯୌକ୍ତିକର ଆନ୍ଦୋଳନକୁ ପ୍ରଶ୍ରୟ ନଦେବା ପାଇଁ । ଉତ୍ତରରେ ଚଢ଼ା ଏକ ଦୀର୍ଘ ପତ୍ରରେ ଜଣାଇଥିଲେ, ଗଡ଼ଜାତଗୁଡ଼ିକ ଓଡ଼ିଶାରେ ମିଶିବା ପାଇଁ ଯେପରି ଆନ୍ଦୋଳନ ହେଉଛି, ସେହିପରି ଗଡ଼ଜାତ ସହିତ ସମ୍ବଲପୁର ମିଶିବା ପାଇଁ ଆନ୍ଦୋଳନ କରିବାର ଅଧିକାର ସମ୍ବଲପୁରବାସୀଙ୍କର ଅଛି ବୋଲି ପାଟଣା ମହାରାଜା କହୁଛନ୍ତି । ପାଟଣା ମହାରାଜାଙ୍କ ସହିତ ତାଙ୍କର ଆଲୋଚନାର ଏକ ବିବରଣୀ ସେ ପଠାଇ ଦେଇଥିଲେ । ବହୁ ଅର୍ଥ ବ୍ୟୟ କରି ଜଣେ ଅବସରପ୍ରାପ୍ତ ଇଞ୍ଜିନିୟରଙ୍କୁ ଆଣି ହୀରାକୁଦ ଯୋଜନାର ବ୍ୟର୍ଥତା ପ୍ରମାଣ କରିବା ପାଇଁ ସମ୍ବଲପୁର ନେତାମାନେ ଚେଷ୍ଟା କରିଥିଲେ ।

ସେପ୍ଟେମ୍ବର ମାସ ବେଳକୁ କେନ୍ଦ୍ରରେ କଂଗ୍ରେସ ମୋହମ୍ମଦ ଲିଗ ମିଳିତ ମଧ୍ୟବର୍ତ୍ତୀକାଳୀନ ଶାସନ ଗଠିତ ହେବା ପରେ ସମ୍ବଲପୁରର କଂଗ୍ରେସ ନେତା ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର ଦିଲ୍ଲୀରେ ଜଳସେଚନ ବିଭାଗ ମେମ୍ବର ମିଃ ଭାବାଙ୍କୁ ଓ ରାଜେନ୍ଦ୍ର ବାବୁଙ୍କୁ ଦେଖା କରି ହୀରାକୁଦ ବନ୍ଧ ବିରୋଧରେ ପ୍ରବଳ ଜନମତ ଥିବାର ଜଣାଇଲେ । ଗଣ ଆନ୍ଦୋଳନ ଭିତରୁ ବାହାରି ଥିବା ଶାସକମାନେ ଗଣ ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ହେବା ସ୍ୱାଭାବିକ । ତେଣୁ ପୁଣି ଯତ୍ନ କରିବାକୁ ହେଲା ଦିଲ୍ଲୀରେ ସମସ୍ତଙ୍କୁ ବୁଝାଇବାକୁ । ପ୍ରଚାର ବିଭାଗ ପକ୍ଷରୁ ସମ୍ବଲପୁର ଜିଲ୍ଲାରୁ ଦଳକୁ ଦଳ ଲୋକଙ୍କୁ ଭାରତର ବିଶିଷ୍ଟ ସ୍ଥାନରେ ଚାଲୁଥିବା ଯୋଜନାମାନ ଦେଖିବା ପାଇଁ ନିଆ ହେଉଥାଏ । ବରଗଡ଼, ପଦ୍ମପୁର ଓ ଝାରସୁଗୁଡ଼ା ଅଞ୍ଚଳରେ ବନ୍ଧର ଉପକାରିତା ବୁଝା ଚାଲିଥାଏ । ମୁଁ ଓ ନବକୃଷ୍ଣ ଚୌଧୁରୀ ସାହସ ସହକାରେ ସବୁ ସଭାରେ ହୀରାକୁଦ ଯୋଜନାର ଉପକାରିତା ବୁଝାଉଥାଉଁ । ସେତେବେଳେ କୌଣସି ପୋଲିସ ଆମ ସହିତ ରହୁ ନଥିଲେ । ଲୋକଙ୍କୁ ବୁଝାଇବା ମୋର ରାଜନୀତିକ ଦାୟିତ୍ୱ, ଏଥିରେ ଶାସନକଳର ବ୍ୟବହାର ଅନ୍ୟାୟ ବୋଲି ଆମେ ଭାବୁଥାଉଁ । ଧୀରେ ଧୀରେ ଆନ୍ଦୋଳନ ମନ୍ଥର ହେଲା ଓ ଶେଷରେ ବନ୍ଦ ହୋଇଯିବା ପାଇଁ ମାତ୍ର କେତେ ମାସ ଲାଗିଲା । ଏ ଆନ୍ଦୋଳନର ନେତୃତ୍ୱରେ ଥିଲେ ସମ୍ବଲପୁରର ଗୌନ୍ତିଆମାନେ । ସେଠାର ଜମିଜମା ଆଇନ ଅନୁସାରେ ଗୌନ୍ତିଆମାନେ ଜମିର ମାଲିକ ଓ ଚାଷୀମାନେ ସାଧାରଣ ମୂଲିଆଠାରୁ ମଧ୍ୟ ହୀନ । ଦିନକୁ ଚାରି ପଇସା ଦୁଇ ଅଣାରେ ଲୋକଙ୍କୁ ମଜୁରୀ ଖଟାନ୍ତି । ହୀରାକୁଦ ଯୋଜନା ଯେ ଏ ପ୍ରକାର ଅର୍ଥନୀତିକ ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦେବ, ଏହା ବୁଝିବା କିଛି କଠିନ ନଥିଲା । କ୍ରମେ ଯେପରି ବନ୍ଧର ସର୍ଭେ କାମ ଆରମ୍ଭ ହେଲା, ମଜୁରୀ ହାର ହୁ ହୁ ବଢ଼ି ଟ ୧୫ରେ ପହଞ୍ଚିଲା । ଗୌନ୍ତିଆମାନେ ଓ ସେହି ଶ୍ରେଣୀୟ ଲୋକେ ନିତାନ୍ତ ଅସୁବିଧାରେ ପଡ଼ିଲେ । ମୋତେ ଅନେକେ ଡ଼ାକି ନେଇ ଘରେ ସେମାନଙ୍କ ଅସୁବିଧା କଥା ବୁଝାଇଲେ । ଶ୍ରୀ ଶଙ୍କର ପ୍ରସାଦ ମିଶ୍ର ଥରେ ତାଙ୍କ ଘରକୁ ରାତ୍ରି ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ସେଠି ସ୍ତ୍ରୀ ଲୋକମାନେ କହିଲେ, ଖରାଦିନେ ମହାନଦୀରୁ ପାଣି ଆଣିବା ପାଇଁ ପୂର୍ବେ ଦୁଇଅଣା ଖର୍ଚ୍ଚ ହେଉଥିଲା, କିନ୍ତୁ ଆଜି ଦୁଇ ଟଙ୍କା ଖର୍ଚ୍ଚ ହେଉଥିବାରୁ ସେମାନେ ଚଳିବେ କିପରି । ଏ ମଧ୍ୟ ବାସ୍ତବିକ ଅସୁବିଧା ।

ସମ୍ବଲପୁରରେ ଜଳଯୋଗାଣର ବ୍ୟବସ୍ଥା ଆରମ୍ଭ ହେଲା । ସେତେବେଳେ ହୀରାକୁଦ ଯୋଜନା ଯୋଗେ ଯାହା କିଛି ଅସୁବିଧା ଉପୁଜିଥିଲା, ସବୁକୁ ସହାନୁଭୂତିର ସହ ସମାଧାନ କରିବାକୁ ଚେଷ୍ଟା କଲି । ପ୍ରତ୍ୟେକ ପ୍ରତିଶ୍ରୁତିକୁ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଚେଷ୍ଟା କଲି । ନିଜକୁ ଜଣେ ସମ୍ବଲପୁରର ଅଧିବାସୀ ଭାବି ସେଠା ଲୋକଙ୍କ ଅସୁବିଧା ବୁଝି ସେମାନଙ୍କ ପାଇଁ କିଛି କରି ସେମାନଙ୍କ ବିଶ୍ୱାସଭାଜନ ହେବା ପାଇଁ ହେଲା ମୋର ଉଦ୍ୟମ । ଏହା ମୋର ସୌଭାଗ୍ୟ ଯେ ଅଳ୍ପକାଳ ପରେ ଯେଉଁମାନେ ମୋର ଘୋର ବିରୋଧ କରୁଥିଲେ, ସେମାନେ ପରମବନ୍ଧୁ ହେଲେ ଓ ଯେଉଁ ସମଲାଇଙ୍କ ପାଖରେ ମୋର ମାରଣ ମନ୍ତ୍ରରେ ହୋମ ହେଉଥିଲା, ସେଠି ମୋର ଦୀର୍ଘ ଜୀବନ କାମନା କରି ଯଜ୍ଞ ମଧ୍ୟ ହେଲା । ହୀରାକୁଦ ଯୋଜନା ଯୋଗେ ସମ୍ବଲପୁର ମୋର୍ ଓ ମୁଁ ସମ୍ବଲପୁରର ସେଇଦିନୁଁ ହୋଇ ଗଲି ।(ସାଧନାର ପଥେ)

# ରାଜଧାନୀ ଭୁବନେଶ୍ୱର : ଇତିହାସର ପୁନରୁଦ୍ଧାର

ଶ୍ରୀ ଶରତଚନ୍ଦ୍ର ସାମନ୍ତରାୟ

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । କିନ୍ତୁ ଏହି ରାଜ୍ୟର ରାଜଧାନୀ ନିର୍ମାଣ ସମ୍ପର୍କରେ ୧୯୪୬ ମସିହା ପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତ ଗ୍ରହଣ କରାଯାଇପାରି ନଥିଲା । ୧୯୩୭ ରୁ ୧୯୫୨ ମସିହା ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭା ରେଭେନ୍ସା କଲେଜ ହଲରେ ଥିଲା । ସଚିବାଳୟ ପ୍ରଥମେ ପୁରୁଣା ଅଦାଲତ (ସିଟି ହସପିଟାଲ)ରେ ଥିଲା । ପରେ ତାହା କାଣ୍ଟନମେଣ୍ଟରେ ଥିବା ଯୁଦ୍ଧ ଛାଉଣୀର ପରିତ୍ୟକ୍ତ ଘରଗୁଡ଼ିକୁ ଉଠିଗଲା । ରାଜଭବନ ଥିଲା ଲାଲବାଗ(ଶିଶୁଭବନ)ରେ । ପରେ ବାରବାଟି ଦୁର୍ଗ ଅଟ୍ଟାଳିକାକୁ ସ୍ଥାନାନ୍ତରିତ ହୋଇଥିଲା ।

୧୯୩୭ ମନ୍ତ୍ରିମଣ୍ଡଳ କାଳରେ ବିଧାନସଭାରେ ଖଲିକୋଟ ରାଜବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓଙ୍କ ନେତୃତ୍ୱରେ କେତେକ ସଦସ୍ୟ ରଙ୍ଗେଇଲୁଣ୍ଡାଠାରେ ରାଜଧାନୀ ନିର୍ମାଣ ପାଇଁ ଦାବୀ ଉପସ୍ଥାପିତ କରିଥିଲେ । ରେଭେନ୍ସା କଲେଜ ଛାତ୍ରମାନଙ୍କ ପ୍ରତିବାଦ ସତ୍ତ୍ୱେ ବିଧାନସଭାରେ ପ୍ରସ୍ତାବ ଗୃହୀତ ହୋଇଥିଲା । ରାଜଧାନୀ ନିର୍ମାଣ ପାଇଁ ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାରୁ ଓଡ଼ିଶାରେ ଲାଟ ଶାସନ ଚାଲିଲା । ରାଜଧାନୀ ନିର୍ମାଣ ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ୧୯୪୧-୪୪ ମିଳିତ ମନ୍ତ୍ରିମଣ୍ଡଳ ସମୟରେ ରାଜଧାନୀ ସ୍ଥାପନ ସମ୍ପର୍କରେ ଆଗ୍ରହ ପ୍ରକାଶ ପାଇ ନଥିଲା ।

୧୯୪୬ ମହତାବ ମନ୍ତ୍ରିମଣ୍ଡଳ କାଳରେ ହିଁ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ ପାଇଁ ବିଧାନସଭାରେ ପ୍ରସ୍ତାବ ଗୃହୀତ ହୋଇଥିଲା । ଡ଼ଃ ମହତାବ ଯୁକ୍ତି ବର୍ଣ୍ଣାଇଥିଲେ ଯେ ଭୁବନେଶ୍ୱର କେଶରୀ ବଂଶ ଅମଳରୁ ଓଡ଼ିଶାର ରାଜଧାନୀ ଥିଲା । କେବଳ ଜଳାଭାବ ଯୋଗୁଁ କଟକ ଉଠାଇ ନିଆଯାଇଥିଲା । ଏଠାରେ ବିସ୍ତୃତ ଉନ୍ମୁକ୍ତ ପ୍ରାନ୍ତର ରହିଛି । କମ୍ ଖର୍ଚ୍ଚରେ ରାଜଧାନୀ ନିର୍ମିତ ହୋଇପାରିବ । ଅନେକ ସରକାରୀ ଜମି ସହଜରେ ମିଳିପାରିବ । କଟକରେ କରାଗଲେ ଲୋକଙ୍କ ବହୁ ଘରୋଇ ଜମିକୁ ଦଖଲ ନେବାକୁ ହେବ ଓ ପ୍ରଚୁର ଅର୍ଥ କ୍ଷତିପୂରଣ ବାବଦରେ ବ୍ୟୟ କରିବାକୁ ପଡ଼ିବ ।

ବିଶିଷ୍ଟ ରାଜନୀତି ବିଶାରଦ ଲେଖୁଛନ୍ତି-"ଡ଼ଃ ମହତାବ ଜଣେ କର୍ମକୁଶଳ ବ୍ୟକ୍ତି । ସେ ଯାହା ନିଷ୍ପତ୍ତି କରନ୍ତି ସଙ୍ଗେ ସଙ୍ଗେ ତାକୁ କାର୍ଯ୍ୟକାରୀ କରନ୍ତି । ଭୁବନେଶ୍ୱରରେ ରାଜଧାନୀ ହେବ ବୋଲି ସ୍ଥିର ହେବା ମାତ୍ରକେ ସେ ରାଜଭବନ, ସଚିବାଳୟ ଓ ବିଧାନସଭା ନିର୍ମାଣ ପାଇଁ ସ୍ଥାନ ନିରୂପଣ କରି କାର୍ଯ୍ୟ କରିବା ଲାଗି ଆଗେଇ ଗଲେ । ସେ ପାଞ୍ଚବର୍ଷ କାଳ ମୁଖ୍ୟମନ୍ତ୍ରୀ ରହିଥିଲେ ପୂର୍ଣ୍ଣାଙ୍ଗ ରାଜଧାନୀ କରିଦେଇ ପାରିଥାନ୍ତେ । କିନ୍ତୁ ୧୯୫୦ ମଇ ମାସ ୧୨ ତାରିଖ ଦିନ ସେ ପଣ୍ଡିତ ନେହେରୁଙ୍କ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଭାବରେ ଯୋଗଦେଇ ଓଡ଼ିଶା ଛାଡ଼ି ଚାଲିଗଲେ । ରାଜଧାନୀ ନିର୍ମାଣ କାର୍ଯ୍ୟ ଧୀମେଇ ଗଲା । ସେ ୧୯୫୨ରେ ମନ୍ତ୍ରିମଣ୍ଡଳ ଛାଡ଼ିଦେଲେ ଓ ୧୯୫୫ ଜାନୁଆରୀରେ ଅବିଭକ୍ତ ବମ୍ବେ ରାଜ୍ୟର ରାଜ୍ୟପାଳ ହୋଇ ଚାଲିଗଲେ । ତାଙ୍କ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ରାଜଧାନୀ ନିର୍ମାଣ ପ୍ରତି ବେଶୀ ଗୁରୁତ୍ୱ ଦେଲେ ନାହିଁ । ୧୯୫୬ ଅକ୍ଟୋବର ୨୦ ତାରିଖ ଦିନ ଡକ୍ଟର ମହତାବ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ପୁନର୍ବାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରିବା ଫଳରେ ରାଜଧାନୀ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା ଏବଂ ଅସ୍ଥାୟୀ ରାଜଧାନୀ କଟକରୁ ସମ୍ପୂର୍ଣ୍ଣ ରୂପେ ଉଠିଗଲା ।"

ଡ଼ଃ ମହତାବ ରାଜଧାନୀ ନିର୍ମାଣ ପୃଷ୍ଠଭୂମି ସମ୍ପର୍କରେ ତାଙ୍କ ଆତ୍ମଜୀବନୀରେ ଲେଖୁଛନ୍ତି-"ଭୁବନେଶ୍ୱରରେ ରାଜଧାନୀ ସ୍ଥାପିତ ହେବାର ପ୍ରସ୍ତାବ ୧୯୪୬ ସେପ୍ଟେମ୍ବର ୩୦ ତାରିଖ ଓଡ଼ିଶା ବ୍ୟବସ୍ଥାପକ ସଭାରେ ଗୃହୀତ ହୋଇ ଯାଇଥିଲା । ଏ ରାଜଧାନୀ ସ୍ଥାନ ନିରୂପଣ ମଧ୍ୟ ନିର୍ବିବାଦୀୟ ନଥିଲା । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଦିନୁ ରାଜଧାନୀ ସମ୍ବନ୍ଧରେ ବାଦାନୁବାଦ ଚାଲି ଆସିଥିଲା । କେତେକଙ୍କ ମତରେ ଚଉଦ୍ୱାର ଆଡ଼କୁ କଟକ ବଢ଼ି ରାଜଧାନୀ ହେଉ । କେତେକ କହୁଥିଲେ, ବ୍ରହ୍ମପୁର ନିକଟସ୍ଥ ରଙ୍ଗେଇଲୁଣ୍ଡାରେ ରାଜଧାନୀ ହେଉ । ଅବଶ୍ୟ କଟକରେ ରାଜଧାନୀ ଚାଲୁ ବୋଲି ଏକ ଦୃଢ଼ ମତ ଥିଲା । ଯୁଦ୍ଧବେଳେ ଏରୋଡ୍ରମ ସ୍ଥାପନ ପାଇଁ ଯେତେବେଳେ ସ୍ଥାନ ନିର୍ଣ୍ଣୟ କରାହେଲା, ସେତେବେଳେ ଆମେରିକାର ସୈନ୍ୟବାହିନୀ ଭୁବନେଶ୍ୱରର ଏକ ଜଙ୍ଗଲ ଭିତରେ ଏକ ବିଶାଳ ପ୍ରାନ୍ତରର ସନ୍ଧାନ ପାଇଲେ । ଜଙ୍ଗଲ ସଫା କରି ସେମାନେ ଏରୋଡ୍ରମ ତିଆରି କଲେ । ତା'ପରେ ଭୁବନେଶ୍ୱରରେ ରାଜଧାନୀ ସ୍ଥାପନର ଚିନ୍ତା ଚାଲିଲା । ସାର ହାଥୋର୍ଣ୍ଣ ଲୁଇ ଓ ଶ୍ରୀ ଗୋଖଲେଙ୍କ ସଙ୍ଗରେ ଏ ବିଷୟରେ ଆଲୋଚନା ହୋଇଥିଲା । ୧୯୪୬ ମସିହାରେ ମନ୍ତ୍ରିମଣ୍ଡଳ ଗଠନ ପୂର୍ବରୁ ଭୁବନେଶ୍ୱରରେ ରାଜଧାନୀ ହେବ ବୋଲି ମୁଁ ମନରେ ସ୍ଥିର କରି ସାରିଥିଲି । ଭୁବନେଶ୍ୱର ଭାରତବର୍ଷର ଏକମାତ୍ର ସ୍ଥାନ, ଯେଉଁଠି ଅଶୋକଙ୍କ ସମୟରୁ ଅଢ଼େଇହଜାର ବର୍ଷର କ୍ରମାନ୍ୱୟ ଇତିହାସର ଜୀବନ୍ତ ପ୍ରମାଣ ରହିଛି । ସେହି ଥିଲା ଭୁବନେଶ୍ୱର ପ୍ରତି ମୋର ଆକର୍ଷଣର ବିଶେଷ କାରଣ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାବେଳେ ତତ୍କାଳୀନ ଭାରତ ସରକାର ରାଜଧାନୀ ନିର୍ମାଣ ପାଇଁ ମାତ୍ର ୩୦ ଲକ୍ଷ ଟଙ୍କା ମଞ୍ଜୁର କରିବେ ବୋଲି ନିଷ୍ପତ୍ତି କରିଥିଲେ । କିନ୍ତୁ ଅନ୍ତତଃ ଦୁଇକୋଟି ଟଙ୍କା ନହେଲେ ରାଜଧାନୀ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇପାରିବ ନାହିଁ । ଏ ସମ୍ପର୍କରେ ମୁଁ ଲିନଲିଥଗୋଙ୍କୁ ସାକ୍ଷାତ କଲି । ରାଜଧାନୀ ନିର୍ମାଣ ସମ୍ପର୍କରେ ସେ ସୁପାରିଶ ବିଷୟ କହିଲେ । ଯୁକ୍ତି କଲି ଯେ ଭୁବନେଶ୍ୱରରେ କୋଟି କୋଟି ଟଙ୍କା ଖର୍ଚ୍ଚ

ହେଲେ ଅତ୍ର ଉତ୍ପାଦିତ ହେଉଥିବା ଜିନିଷପତ୍ରର ଦର ବଢ଼ିବ ନାହିଁ । କାରଣ ଭୁବନେଶ୍ୱରରେ ଘର ତିଆରି ହେବ ପଥରରେ ଓ କଡ଼ି ଲାଗିବ ନିକଟବର୍ତ୍ତୀ ଜଙ୍ଗଲରୁ ମିଳୁଥିବା କାଠରେ । ତେଣୁ ବୋଇଲା ଇତ୍ୟାଦି କିଣିବାକୁ ଯାଇ ଭୁବନେଶ୍ୱରରେ ସବୁ ଜିନିଷର ଦର ବଢ଼ାଇବ ନାହିଁ । ଏ ଯୁକ୍ତି ସେ ବୁଝିଲେ । ତା'ପରେ ରାଜଧାନୀ ନିର୍ମାଣ ପାଇଁ ଟଙ୍କା ମଞ୍ଜୁର ହେଲା । ଭାରତରେ ଭୁବନେଶ୍ୱର ହିଁ ଏକମାତ୍ର ନୂଆ ରାଜଧାନୀ, ଯାହାର ନିର୍ମାଣ ପାଇଁ ଭାରତ ସରକାରଙ୍କଠାରୁ ଗ୍ରାଣ୍ଟ ପାଇଛି । ଚଣ୍ଡୀଗଡ଼ ପ୍ରଭୃତି ଋଣ ଆକାରରେ ସାହାଯ୍ୟ ପାଇଛନ୍ତି ।"

ପ୍ରଧାନମନ୍ତ୍ରୀ ନେହରୁ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ କଲେ । ଗଡ଼ଜାତ ମିଶ୍ରଣ ପରେ ପରିବର୍ଦ୍ଧିତ ଓଡ଼ିଶା ବ୍ୟବସ୍ଥାସଭାର ପ୍ରଥମ ବୈଠକ ଭୁବନେଶ୍ୱରରେ ହେବ ବୋଲି ଡକ୍ଟର ମହତାବ ସିଦ୍ଧାନ୍ତ କରିଥିଲେ । ସେଥିପାଇଁ ଭୁବନେଶ୍ୱରର ଏକ ଗୋଦାମ ଘରକୁ ବୈଠକ ପାଇଁ ସଜଡ଼ା ଗଲା । ମନ୍ତ୍ରୀ ଓ ଅଫିସରମାନେ ରହିବା ପାଇଁ ବ୍ୟବସ୍ଥା କରାଗଲା । ମହତାବ ନିଜେ ଏରୋଡ୍ରମ ଭିତରେ ଥିବା ଏକ ପରିତ୍ୟକ୍ତ କୋଠରୀରେ ରହିଲେ । ୧୯୪୯ ଅକ୍ଟୋବର ୧୦, ୧୧ ଓ ୧୨ ତାରିଖ ତିନିଦିନ ବ୍ୟବସ୍ଥା ସଭାର ବୈଠକ ବସିଲା । ବୈଠକ ଆରମ୍ଭ ଦିନ ଡ଼ଃ ମହତାବ ତାଙ୍କର ଐତିହାସିକ ଭାଷଣରେ କହିଥିଲେ"It is difficult to conceal the feeling of excitement which I............ over this particular session of the provincial Legislative Assembly which will go down in history as the beginning of a new era in this Province. My heart leaps up with excitement when I remember the day the 30th of September 1946 on which I moved the resolution in the Legislative Assembly that the capital of the province should be located at Bhubaneswar and that steps should be taken to construct the buildings at the capital as early as possible. In course of my speech on resolution I expressed the definite hope that the provincial Assembly, the building of which would be constructed at the New capital would consist of more members on account of the states joining the province under one administration by the time of capital is ready. We are meeting here today almost exactly three years after the resolution on Bhubaneswar was passed in 1946. We are meeting at the New capital and Assembly today consists of more members on account of the amalgamation of the state with the province. The two Historic incidents have been combined in todays function and that is the cause of great excitement for me as I am sure it must be for all the members present here and for the hole of the province. An ancient and Historic family which was artificially devided for hundreds of years and forcibly kept separated has again joined together and the members are determined to start the joint life again with full confidence, both in the present and in the future" ମହତାବ କେନ୍ଦ୍ରମନ୍ତ୍ରୀ ହୋଇ ଚାଲିଯିବା ପରେ ରାଜଧାନୀ ନିର୍ମାଣ ଦିଗରେ କେହି ଧ୍ୟାନ ଦେଉନଥିଲେ । ଏ ସମ୍ପର୍କରେ ମହତାବ ଲେଖିଛନ୍ତି, "ଦିନେ ବିଶ୍ୱନାଥ ଦାଶ ଦିଲ୍ଲୀରେ ମୋ ଅଫିସକୁ ଆସି କହିଲେ ଯେ ଭୁବନେଶ୍ୱରରେ ନୂଆ ରାଜଧାନୀ ନିର୍ମାଣ କାର୍ଯ୍ୟକୁ ରାଜ୍ୟ ସରକାର ବସ୍ତୁତଃ ପରିତ୍ୟାଗ କରିଦେଇଛନ୍ତି ଓ ନବାର୍ଦ୍ଧ କଟକ ସହରରେ ଆବଶ୍ୟକ ପରିବର୍ତ୍ତନ କରି ସେଇଠାରେ ରାଜଧାନୀ କାମ ଚଳାଇନେବେ । ମତେ ବୁଝାଗଲା ଯେ ଓଡ଼ିଶାର ତତ୍କାଳୀନ ଅର୍ଥମନ୍ତ୍ରୀ ରାଧାନାଥ ରଥ ଜୁଆଡ଼େ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣକୁ ତୀବ୍ର ବିରୋଧ କରୁଛନ୍ତି । ବିଶ୍ୱନାଥ ବାବୁ ମଧ ଏହି ପ୍ରସ୍ତାବରେ ରାଜି ଥିବା ଭଳି ମନେ ହେଲା । ଏହା ମତେ ଭୀଷଣ ଆଘାତ ଦେଲା । କାରଣ ମୁଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ କରି ଏକ ନୂତନ ସହରାଞ୍ଚଳ ଗଢ଼ି ତୋଳିବାକୁ ନିଷ୍ପତ୍ତି ନିଆଯାଇଥିଲା ଓ ମୋ ଶାସନର ତାହା ଥିଲା ଏକ ବିରାଟ ପ୍ରାପ୍ତି । ଏ ବିଷୟରେ ମୁଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ କଂଗ୍ରେସ ବିଧାୟକ ଦଳ ସହ ସମ୍ପର୍କ ସ୍ଥାପନ କରି କଥାବାର୍ତ୍ତା କଲି ଓ ସେମାନଙ୍କ ନିଷ୍ପତ୍ତିକୁ ପୁଣି ପରିବର୍ତ୍ତିତ କରାଇଲି । କାଗଜପତ୍ରରେ ନିଷ୍ପତ୍ତି ବଦଳିଲେ ମଧ କାର୍ଯ୍ୟତଃ ସବୁ ନିର୍ମାଣ କାର୍ଯ୍ୟ ୧୯୫୬ ମସିହାରେ ମୁଁ ପୁଣି ଥରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପର୍ଯ୍ୟନ୍ତ ବନ୍ଦ ଥିଲା ।"

ଡ଼ଃ ମହତାବ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାପରେ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣକୁ ଶାସନର ପ୍ରମୁଖ କାର୍ଯ୍ୟକ୍ରମ ରୂପେ ଗ୍ରହଣ କଲେ । ଏହାକୁ ପଞ୍ଚବାର୍ଷିକ ଯୋଜନାରେ ଅନ୍ତର୍ଭୁକ୍ତ କରାଇ ରାଜଭବନ, ବିଧାନସଭା ଭବନ, ମ୍ୟୁଜିୟମ ନିର୍ମାଣ କାର୍ଯ୍ୟ ଜୋରସୋରରେ ଚଳାଇଲେ । ଓଡ଼ିଶାରେ ନୂତନ ଯୁଗର ଶୁଭାରମ୍ଭ ହେଲା ।

ପ୍ଲଟ ନଂ-ଏଫ୍-୨୧୪, ଆଇ.ଆର୍.ସି.ଭିଲେଜ
ନୟାପଲ୍ଲୀ, ଭୁବନେଶ୍ୱର

• • •

# ପୂର୍ଣ୍ଣାଙ୍ଗ ଓଡ଼ିଶା ଇତିହାସ ପ୍ରଣେତା ଡ଼ଃ ମହତାବ

ଡ଼କ୍ଟର ଜଗନ୍ନାଥ ପଟ୍ଟନାୟକ

ପୂର୍ଣ୍ଣାଙ୍ଗ ଓଡ଼ିଆ ଇତିହାସ ପ୍ରଣୟନ କରି ଯେଉଁ କେତେକ ବ୍ୟକ୍ତି ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଯଶସ୍ୱୀ ହୋଇ ରହିଛନ୍ତି, ସେମାନଙ୍କ ମଧ୍ୟରୁ ଡ଼କ୍ଟର ହରେକୃଷ୍ଣ ମହତାବ ଥିଲେ ଅଗ୍ରଗାମୀ । ଏ ଦିଗରେ ତାଙ୍କୁ ଓଡ଼ିଶାର ଭଗୀରଥ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ସେ ଲେଖନୀ ଚାଳନା କରିବା ପୂର୍ବରୁ ଓଡ଼ିଶା ଇତିହାସ ଉପରେ ସ୍ୱଳ୍ପସଂଖ୍ୟକ ପୁସ୍ତକ ପ୍ରଣୟନ କରାଯାଇ ଥିଲା । ତନ୍ମଧ୍ୟରୁ ଓଡ଼ିଆରେ ଲିଖିତ କୃପାସିନ୍ଧୁ ମିଶ୍ର, ବିନାୟକ ମିଶ୍ରଙ୍କର ଓଡ଼ିଶା ଇତିହାସ, ଜଗବନ୍ଧୁ ସିଂହଙ୍କର ପ୍ରାଚୀନ ଉତ୍କଳ, ରାଖାଲ ଦାସ ବାନାର୍ଜିଙ୍କ ଦ୍ୱାରା ଇଂରାଜିରେ ଲିଖିତ History of Orissa ଆଦି ପୁସ୍ତକ ଉଲ୍ଲେଖଯୋଗ୍ୟ । ଓଡ଼ିଶାରେ ଅବସ୍ଥାପିତ ଇଂରେଜ ପ୍ରଶାସକମାନେ ମଧ ଓଡ଼ିଶା ଇତିହାସ ପ୍ରଣୟନ କରିବା ପାଇଁ ଉଦ୍ୟମ କରି କେତୋଟି ପୁସ୍ତକ ରଚନା କରିଥିଲେ । ହଣ୍ଟର ସାହେବଙ୍କର ଦୁଇଟି ଭାଗରେ ଲିଖିତ Orissa, ଆଣ୍ଡ୍ରିଉ ଷ୍ଟର୍ଲିଂଙ୍କର History of Orissa Proper on Cuttack ,ବିମ୍ସ ସାହେବଙ୍କର Memoir of a Bengal Civilian ଓ ଜର୍ଜ ଟଏନବିଙ୍କର History of Orissa ଆଦି ପୁସ୍ତକ ଉଲ୍ଲେଖଯୋଗ୍ୟ । ମାତ୍ର ଉକ୍ତ ପୁସ୍ତକରେ ଓଡ଼ିଶା ଇତିହାସର ପୂର୍ଣ୍ଣାଙ୍ଗ ଚିତ୍ର ଦେଖିବାକୁ ମିଳେ ନାହିଁ । ସେଥିରେ ମୁଖ୍ୟତଃ ଓଡ଼ିଶାର ରାଜନୈତିକ ଇତିହାସର କିୟଦଂଶ ଉପରେ ଆଲୋକପାତ କରାଯାଇଛି । ସଂସ୍କୃତିକ ଇତିହାସ ଓ ଓଡ଼ିଶାରେ ଐତିହାସିକ ସ୍ୱାଧୀନତା ଆନ୍ଦୋଳନ ଉପରେ ଉକ୍ତ ପୁସ୍ତକଗୁଡ଼ିକ ନୀରବ । ଅବଶ୍ୟ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ମାତ୍ର ଗୋଟିଏ ଦୁଇଟି ପୁସ୍ତକ ରଚନା କରାଯାଇଥିଲା । ହରେକୃଷ୍ଣ ମହତାବ ଏହା ଉପଲବ୍ଧି କରି ଓଡ଼ିଶା ଇତିହାସର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଦେବା ପାଇଁ ଉଦ୍ୟମ କରି କୃତିତ୍ୱ ହାସଲ କରିପାରିଛନ୍ତି । ସେ ତାଙ୍କର ଜୀବନକାଳ ମଧ୍ୟରେ ସର୍ବମୋଟ ଦଶଟି ଇତିହାସ ପୁସ୍ତକ ପ୍ରଣୟନ କରି ଓଡ଼ିଶାର ସାରସ୍ୱତ ଉଦ୍ୟାନକୁ ସୁରଭିତ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ଇତିହାସ ନିର୍ମାଣକୁ ଗୁଣିମନ୍ତ କରିଛନ୍ତି । ସେଗୁଡ଼ିକ ତାଙ୍କ କୃତିତ୍ୱର ପ୍ରକୃଷ୍ଟ ପରିଚାୟକ ।

"ଇତିହାସ ପ୍ରତି ମୋର ସେପରି ଆଗ୍ରହ ଛାତ୍ରାବସ୍ଥାରୁ ନ ଥିଲା ଏବଂ ଓଡ଼ିଶା ଇତିହାସ ସମ୍ବନ୍ଧରେ ମୋର ସ୍ପଷ୍ଟ ଧାରଣା ନଥିଲା"- ଏହା ଡ଼କ୍ଟର ମହତାବ ନିଜେ ସ୍ୱୀକାର କରିଛନ୍ତି, ତାଙ୍କ ଦ୍ୱାରା ପ୍ରଣୀତ 'ଓଡ଼ିଶା ଇତିହାସ' ପୁସ୍ତକର ମୁଖବନ୍ଧରେ । ମାତ୍ର ନିଜର ସାଧନା ଓ ଅଧ୍ୟବସାୟ ଦ୍ୱାରା ସେ ଆଜି ଭାରତବର୍ଷରେ ଜଣେ ବିଶିଷ୍ଟ ଐତିହାସିକଙ୍କର ଆସନ ଲାଭ କରିପାରିଛନ୍ତି । ଉକ୍ତ ସାଧନା ସେ ତାଙ୍କ ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ ଅବ୍ୟାହତ ରଖି ପାରିଥିଲେ । ଏହି ସାଧନା ସମ୍ପର୍କରେ ତାଙ୍କ ଦ୍ୱାରା ପ୍ରଣୀତ 'ସାଧନାର ପଥେ' ପୁସ୍ତକର ମୁଖବନ୍ଧରେ ସେ ଲେଖିଛନ୍ତି, "ପ୍ରତ୍ୟେକ ଜୀବନ ବାସ୍ତବିକ ତା' ପକ୍ଷରେ ଏକ ବିରାଟ ସାଧନା । ମୁଁ ନିଜକୁ ବୟସ୍କ ବୋଲି କେବେ ମନେ କରିନାହିଁ । ବାସ୍ତବିକ ମୁଁ ବୟସ୍କ ନୁହେଁ । ନିଜ ବିଚାରରେ ନିଜେ ଦୃଢ଼ ରହି ସଂସାର ଭିତରେ ଠେଲିପେଲି ଚାଲିବା ମୋ'ର ସ୍ୱଭାବ ହୋଇଗଲାଣି ।" କେବଳ ମାତ୍ର ଲେଖିବା ଛଳରେ ଯେ ସେ ଏହା ଲେଖିଥିଲେ ତା' ନୁହେଁ । ତା'ର ବାସ୍ତବ ରୂପାୟନ ସେ ପ୍ରକଟିତ କରିଛନ୍ତି ନିଜ ଜୀବନରେ । ତାଙ୍କ ଅନ୍ତିମ ଶୟନର ମାତ୍ର କେତୋଟି ଦିନ ପୂର୍ବରୁ ପ୍ରକାଶିତ ଇଂରାଜୀ ପୁସ୍ତକ "While serving my nation: Recollections of a Congressman" ତାଙ୍କ ସାଧନାର ଏକ ସଫଳ ରୂପାୟନ । ନିଜର ସାଧନା ବଳରେ ସେ ଯେଉଁ କେତୋଟି ଇତିହାସ ପୁସ୍ତକ ପ୍ରଣୟନ କରିଛନ୍ତି, ତନ୍ମଧ୍ୟରୁ ଓଡ଼ିଆରେ ଲିଖିତ 'ଦଶବର୍ଷର ଓଡ଼ିଶା', 'ଗାନ୍ଧିଜୀ ଓ ଓଡ଼ିଶା', 'ସାଧନାର ପଥେ', ଓଡ଼ିଶା ଇତିହାସ ଓ ଇଂରାଜୀରେ ଲିଖିତ 'Orissa History'....,'Beginning of the End', 'History of Freedom Movement in Orissa, 'States Enquiry Committee Report', 'While serving my Nation' ଗୁଡ଼ିକ ପ୍ରଧାନ ।

ଅବଶ୍ୟ ଓଡ଼ିଶା ତଥା ଭାରତବର୍ଷର ଇତିହାସ ପ୍ରଣୟନ କରିବା ଦିଗରେ ଡ଼କ୍ଟର ମହତାବଙ୍କୁ ଗୋଟିଏ ଅଭ୍ୟାସ ସାହାଯ୍ୟ କରିଥିବାର ଜଣାଯାଏ । ତାହାଥିଲା ଦୈନନ୍ଦିନ ବିବରଣୀ ଲିପିବଦ୍ଧ କରି ରଖିବା । ଏ ଦିଗରେ ସେ ଗାନ୍ଧିଜୀଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ ବୋଲି 'ସାଧନାର ପଥେ' ପୁସ୍ତକର ମୁଖବନ୍ଧରେ ସୂଚିତ ହୋଇଛି । ସେ ଲେଖିଛନ୍ତି, "ଦୈନନ୍ଦିନ ବିବରଣୀ ଲେଖି ରଖିବା ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଏକ ଆଶ୍ରମ ନିୟମ । ତଦ୍ୱାରା ନିଜକୁ ନିଜେ ଜାଣିବାରେ ସାହାଯ୍ୟ ମିଳେ । ଅଭ୍ୟାସବଶତଃ ମୁଁ ଦୈନନ୍ଦିନ ବିବରଣୀ ଲେଖୁଆସୁଛି ।"

ଉପରୋକ୍ତ ଦୈନନ୍ଦିନ ବିବରଣୀ ଉପରେ ଆଧାରିତ ପୁସ୍ତକ ହେଉଛି ୧୯୩୫ ମସିହାରେ ପ୍ରକାଶିତ 'ଦଶବର୍ଷର ଓଡ଼ିଶା' ଏବଂ ଏହା ହିଁ ହେଉଛି ଇତିହାସ ଉପରେ ପ୍ରଣୀତ ତାଙ୍କର ପ୍ରଥମ ପୁସ୍ତକ । ସେ ୧୯୩୦ ମସିହାରେ ଜେଲରେ ଥିବା ସମୟରେ ଉକ୍ତ ପୁସ୍ତକର ରଚନା ଆରମ୍ଭ କରି ୧୯୩୧ ମସିହାରେ ସମାପ୍ତ କରିଥିଲେ । ଏହା ଓଡ଼ିଶାରେ ୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନଠାରୁ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ପର୍ଯ୍ୟନ୍ତ ସଂଗ୍ରାମର ଘଟଣାବଳୀ ଉପରେ ଏକ ପ୍ରାମାଣିକ ଗ୍ରନ୍ଥ । ଏହା ପ୍ରକାଶ ପାଇବା ପରେ ପରେ ତତ୍କାଳୀନ ବ୍ରିଟିଶ ସରକାର ଏହାକୁ ବାଜ୍ୟାପ୍ତି କରି ଦେଇଥିଲେ । ମାତ୍ର ପୁସ୍ତକଟିର ଜନପ୍ରିୟତା ପାଇଁ ୧୯୩୭ ମସିହାରେ ଉକ୍ତ ଆଦେଶ ପ୍ରତ୍ୟାହାର କରି ନିଆଯାଇଥିଲା ।

ଡ଼କ୍ଟର ମହତାବଙ୍କର ଦ୍ୱିତୀୟ ପୁସ୍ତକ ସଙ୍କଳନ ହେଉଛି ଇଂରାଜୀରେ Orissa States Enquiry Committee Report ଏବଂ ଏହା

ପ୍ରକାଶିତ ହୋଇଥିଲା ୧୯୩୯ ମସିହା ଜୁଲାଇ ମାସରେ । ସେତେବେଳେ ସେ ଥାଆନ୍ତି ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ । ଓଡ଼ିଶା ଶ୍ରୀଷ୍ଟୀୟ ଶିକ୍ଷାପରିଷଦ ତଥା ଉତ୍କଳ ୟୁନିୟନ କନ୍‌ଫରେନ୍‌ସର ଭୂତପୂର୍ବ ସମ୍ପାଦକ ଲାଲ୍‌ମୋହନ ପଟ୍ଟନାୟକ ଓ ଲୋକସେବକ ମଣ୍ଡଳୀର ସଦସ୍ୟ ବଳବନ୍ତ ରାୟ ମେହେଟ୍ଟା ଓ ମହତାବଙ୍କୁ ନେଇ ଏକ କମିଟି ଗଠନ କରାଯାଇଥିଲା । ଓଡ଼ିଶାର ଗଡ଼ଜାତ ରାଜ୍ୟସମୂହର ବିଭିନ୍ନ ସମସ୍ୟା ଓ ଶାସନ ପଦ୍ଧତି ଉପରେ ଅନୁସନ୍ଧାନ କରି ତା'ର ସମାଧାନ ଦିଗରେ କେତୋଟି ପଦକ୍ଷେପ ସୁପାରିଶ କରିବା ଥିଲା ଏହି କମିଟିର ଆଭିମୁଖ୍ୟ । ସେମାନେ ଓଡ଼ିଶାର ଗଡ଼ଜାତରେ ବୁଲି ଉଭୟ ପ୍ରଶାସକ ଓ ପ୍ରଜାଙ୍କଠାରୁ ବହୁବିଧ ସମସ୍ୟା ଉପରେ ସାକ୍ଷ୍ୟ ଗ୍ରହଣ କରି ଏକ ତଥ୍ୟସମ୍ବଳିତ ରିପୋର୍ଟ ପୁସ୍ତକ ଆକାରରେ ଲିପିବଦ୍ଧ କରିଛନ୍ତି । ଏହା ଗବେଷକମାନଙ୍କ ପାଇଁ ଏକ ଉପାଦେୟ ଓ ସହାୟକ ଗ୍ରନ୍ଥ ହୋଇ ରହିଛି ।

ଐତିହାସିକ ଭାବେ ଡ଼କ୍ଟର ମହତାବଙ୍କର ସର୍ବୋତ୍କୃଷ୍ଟ ଅବଦାନ ହେଉଛି ଓଡ଼ିଆରେ ପ୍ରଣୀତ "ଓଡ଼ିଶା ଇତିହାସ" । ଏହାର ପ୍ରଥମ ସଂସ୍କରଣ ପ୍ରକାଶ ପାଏ ୧୯୪୮ ମସିହାରେ । ମାତ୍ର ଏହାର ଲେଖା ସେ ଆରମ୍ଭ କରନ୍ତି ୧୯୪୨ ମସିହାରେ । ସେତେବେଳେ ଅହମ୍ମଦ ନଗର ଦୁର୍ଗ ବା ମୋଗଲ ସମୟର ପ୍ରସିଦ୍ଧ ଚାନ୍ଦବିବି କିଲ୍ଲାରେ ସେ ବନ୍ଦୀର ଜୀବନଯାପନ କରୁଥାଆନ୍ତି । ଉକ୍ତ ପୁସ୍ତକ ପ୍ରଣୟନ କରିବା ମୂଳରେ ଦିନକର ଘଟଣା ତାଙ୍କୁ ପ୍ରୋତ୍ସାହିତ କରିଥିଲା । ସେତେବେଳେ ତାଙ୍କ ସହିତ ଜବାହରଲାଲ ନେହେରୁ ଥାଆନ୍ତି ଅନ୍ୟତମ ବନ୍ଦୀ । ଦିନେ ସେ ମହତାବବାବୁଙ୍କ କୋଠରୀକୁ ଏଡ଼ୱାର୍ଡ଼ ଥମ୍ପସନଙ୍କ ଦ୍ୱାରା ଲିଖିତ "The Making of Indian Princes"ର ୬୨ ପୃଷ୍ଠା ଖୋଲି ସେଥିରେ ଉଲ୍ଲିଖିତ କେତୋଟି ଧାଡ଼ି ତାଙ୍କୁ ଦେଖାଇଥିଲେ । ସେଥିରେ ଲେଖାଥିଲା, "ଦୁର୍ନାମରେ ପ୍ରସିଦ୍ଧ ଜଗନ୍ନାଥ ତୀର୍ଥ, ଯେଉଁଠାରେ ଅଛି ଏକ କୁତ୍ସିତ ମନ୍ଦିର । ସେଠାରେ କିମ୍ଭୁତ କିମାକାର ଲୋକେ କୁତ୍ସିତତାକୁ ଈଶ୍ୱରଙ୍କର ଗୁଣ ବୋଲି ମନେକରି ପୂଜା କରନ୍ତି ଓ ବ୍ରାହ୍ମଣ ଧର୍ମ ପୁଣି ଏ ପୂଜାକୁ ଆଧୁନିକ ଜଗତର ଅନ୍ୟ ଧର୍ମଠାରୁ ବଡ଼ ବୋଲି ଗର୍ବ କରେ ।" ଏହା ପାଠକରି ମହତାବବାବୁ ବ୍ୟଥିତ ହୋଇପଡ଼ିଥିଲେ । ଠିକ୍ ପରେ ପରେ ସେ ଲେଖା ଆରମ୍ଭ କରିଥିଲେ, Story of Jagannath' ବା - ଜଗନ୍ନାଥଙ୍କର ଇତିହାସ ଉପରେ ଗୋଟିଏ ସନ୍ଦର୍ଭ । ଉକ୍ତ ସନ୍ଦର୍ଭଟି ସେତେବେଳେ ଏତେ ଆଦର ଲାଭ କରିଥିଲା ଯେ, ସେଥିରେ ଅନୁପ୍ରାଣିତ ହୋଇ ସେ 'ଓଡ଼ିଶା ଇତିହାସ' ପୁସ୍ତକ ପ୍ରଣୟନ କରିଥିଲେ । ସେପର୍ଯ୍ୟନ୍ତ ଧାରାବାହିକ ଭାବେ ଓଡ଼ିଶା ଇତିହାସ ଉପରେ ଇଂରେଜୀରେ ଏକମାତ୍ର ପୁସ୍ତକ ପ୍ରକାଶିତ ହୋଇଥିଲା ରାଖାଲ ଦାସ ବାନାର୍ଜିଙ୍କର ଓଡ଼ିଶା ଇତିହାସ । ସେ ଦୃଷ୍ଟିରୁ ଡ଼କ୍ଟର ମହତାବ ଓଡ଼ିଆରେ 'ଓଡ଼ିଶା ଇତିହାସ' ପୁସ୍ତକ ପ୍ରଣୟନ କରି କାଳକାଳକୁ ଓଡ଼ିଆ ଜାତିର ନମସ୍ୟ ହୋଇ ରହିଛନ୍ତି । ଉକ୍ତ ପୁସ୍ତକ ସେ ଦୁଇଟି ଭାଗରେ ବିଭକ୍ତ କରି ପ୍ରଥମ ଭାଗରେ ଓଡ଼ିଶାର ଉତ୍ପତ୍ତିଠାରୁ ମୋଗଲ ଶାସନର ଶେଷ ପର୍ଯ୍ୟନ୍ତ ଓ ଦ୍ୱିତୀୟ ଭାଗରେ ମରହଟ୍ଟା ଶାସନଠାରୁ ପରବର୍ତ୍ତୀ ଘଟଣାଗୁଡ଼ିକ ଲେଖିଥିଲେ ।

ଡ଼କ୍ଟର ମହତାବଙ୍କର ପରବର୍ତ୍ତୀ ପୁସ୍ତକ Beginning of the End' ଅନ୍ୟ ଏକ ଅନବଦ୍ୟ କୃତି । ଏହା ପ୍ରଥମେ ପ୍ରକାଶିତ ହୋଇଥିଲା ୧୯୪୯ରେ । ଭାରତର ଦେଶୀୟ ରାଜ୍ୟ ମିଶ୍ରଣର ଅବ୍ୟବହିତ ପୂର୍ବରୁ ସଂଘଟିତ ଘଟଣାବଳୀର ଏକ ଐତିହାସିକ ବିବରଣୀ ଏଥିରେ ସନ୍ନିବେଶିତ । ପୁସ୍ତକଟିରେ ପ୍ରଦତ୍ତ ଘଟଣାବଳୀର ଐତିହାସିକ ବର୍ଣ୍ଣନା ପରିପାଟୀରେ ମୁଗ୍ଧ ହେବା ସଙ୍ଗେ ସଙ୍ଗେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱକୁ ପ୍ରଶଂସା କରି ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଲେଖିଛନ୍ତି, "ସେ (ମହତାବବାବୁ) ଓଡ଼ିଶାକୁ ଖୁବ୍ ଭଲ ପାଆନ୍ତି । ତେଣୁ ସେ ଜଣେ ପ୍ରକୃତ ଦେଶପ୍ରେମୀ । କିନ୍ତୁ ସେ ଭାରତକୁ ଅଧିକ ଭଲ ପାଆନ୍ତି । ଜଣେ ବାସ୍ତବ ରାଜନୀତିଜ୍ଞ ଏବଂ ଆଜନ୍ମ ଦିଗ୍‌ଦର୍ଶକ ଭାବେ ସେ ନାମଟିଏ ସୃଷ୍ଟି କରି ଯାଇଛନ୍ତି, ଯାହାକି ଓଡ଼ିଶା ଇତିହାସରେ ବଞ୍ଚି ରହିବ ।"

ଡ଼କ୍ଟର ମହତାବଙ୍କର ଇତିହାସ ପୁସ୍ତକ ପ୍ରଣୟନ ଦିଗରେ ଅନ୍ୟ ଏକ ସଫଳକୃତି ହେଉଛି ୧୯୬୦ ମସିହାରେ ପ୍ରକାଶିତ 'ସାଧନାର ପଥେ' । ଏହା ତାଙ୍କ ଜନ୍ମ ୧୮୯୯ ଠାରୁ ୧୯୫୦ର ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ ଏକପ୍ରକାରର ଆତ୍ମଜୀବନୀ ହୋଇଥିଲେ ମଧ୍ୟ ମୁଖ୍ୟତଃ ଏଥିରେ ଓଡ଼ିଶା ତଥା ଭାରତବର୍ଷର ୬୦ ବର୍ଷର ଇତିହାସ ବର୍ଣ୍ଣନା କରାଯାଇଛି । ଉକ୍ତ ପୁସ୍ତକଟି ବହୁ ଗୁରୁତ୍ୱପୂର୍ଣ୍ଣ ଚିଠିରେ ପରିପୂର୍ଣ୍ଣ । ଯେଉଁଥିରୁ ମହତାବ ବାବୁଙ୍କର ଉଲ୍ଲେଖନୀୟ କୃତିତ୍ୱ ସମ୍ବନ୍ଧରେ ବହୁକଥା ଜାଣିବାକୁ ମିଳିଥାଏ । ତନ୍ମଧ୍ୟରୁ ଦୁଇଟି ଚିଠି ଏଠାରେ ଉଦ୍ଧାର କରାଯାଉଅଛି । ମହତାବବାବୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିବା ସମୟରେ ସି : ରାଜଗୋପାଳଚାରୀ ୧୪/୩/୪୮ ତାରିଖରେ ଗୋଟିଏ ଚିଠି ଲେଖି ସେଥିରେ ତାଙ୍କୁ ଅଭିନନ୍ଦନ ଜଣାଇ ଲେଖିଥିଲେ, "ଆପଣ କି ଯାଦୁବିଦ୍ୟା କରିଛନ୍ତି କି ? ଆପଣ, ଆପଣଙ୍କ ସହକର୍ମୀ ଓ କାଟ୍ରିଜ୍ଙ୍କୁ ଲର୍ଡ଼ ମାଉଣ୍ଟବେଟନ ଏତେ ଉଚ୍ଛ୍ୱସିତ ପ୍ରଶଂସା କରୁଛନ୍ତି । ସେ ଭାବୁଛନ୍ତି ଯେ ଆପଣଙ୍କର ମନ୍ତ୍ରିମଣ୍ଡଳ ପୃଥିବୀରେ ସର୍ବଶ୍ରେଷ୍ଠ ।" ସେହିପରି ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ୧୯୪୯ ମସିହା ଜାନୁୟାରୀ ୧୦ ତାରିଖରେ ମହତାବବାବୁଙ୍କୁ ଲେଖିଛନ୍ତି " ମୁଁ ଜାଣି ଖୁବ୍ ଆନନ୍ଦିତ ଯେ ଓଡ଼ିଶା ଆପଣଙ୍କ ଦକ୍ଷ ନେତୃତ୍ୱରେ ଖୁବ୍ ଉନ୍ନତି କରି ଚାଲିଛି ।"

ଡ଼କ୍ଟର ମହତାବଙ୍କର ଅନ୍ୟ ଏକ ମହାର୍ଘ୍ୟ ଅବଦାନ ହେଉଛି ତାଙ୍କ ସଂକଳନରେ ଇଂରେଜୀରେ ୫ଟି ଖଣ୍ଡରେ ପ୍ରକାଶିତ ଓଡ଼ିଶାର ମୁକ୍ତି ଆନ୍ଦୋଳନର ଇତିହାସ(History of the Freedom Movement in Orissa) । ଓଡ଼ିଶାରେ ମୁକ୍ତି ଆନ୍ଦୋଳନର ସଂକଳନ ପାଇଁ ଗଠିତ ରାଜ୍ୟସ୍ତରୀୟ କମିଟିର ସେ ଥିଲେ ସଭାପତି । ତନ୍ମଧ୍ୟରୁ ପ୍ରଥମ ୪ ଖଣ୍ଡ ୧୯୫୭ରେ ଓ ୫ମ ଖଣ୍ଡଟି ୧୯୫୯ରେ ପ୍ରକାଶ ପାଇଥିଲା । ପ୍ରଥମ ଖଣ୍ଡରେ ୧୭୫୭ରୁ ୧୮୫୭ ପର୍ଯ୍ୟନ୍ତ, ଦ୍ୱିତୀୟ ଖଣ୍ଡରେ ୧୮୫୭ ରୁ ୧୯୧୧ ପର୍ଯ୍ୟନ୍ତ, ତୃତୀୟ ଖଣ୍ଡରେ ୧୯୧୧ ରୁ ୧୯୩୦ ପର୍ଯ୍ୟନ୍ତ, ୪ର୍ଥ ଖଣ୍ଡରେ ୧୯୩୦ ରୁ ୧୯୪୭ ପର୍ଯ୍ୟନ୍ତ ଓ ପଞ୍ଚମ ଖଣ୍ଡରେ ସେହି ୧୯୩୦ରୁ ୧୯୪୭ ପର୍ଯ୍ୟନ୍ତ ବହୁ ତଥ୍ୟ ପ୍ରଦତ୍ତ ହୋଇଛି । ପୁସ୍ତକଗୁଡ଼ିକ ମୁକ୍ତି ଆନ୍ଦୋଳନ ନାମରେ ନାମିତ ହୋଇଥିଲେ ମଧ୍ୟ ଏଥିରେ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସ୍ୱାଧୀନ ହିନ୍ଦୁ ସାମ୍ରାଜ୍ୟର ଅବସାନଠାରୁ ଭାରତର ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଓଡ଼ିଶା ଇତିହାସର ଗବେଷଣାମୂଳକ ତଥ୍ୟାବଳୀ ଆଲୋଚିତ ହୋଇଛି । ଏଗୁଡ଼ିକ ଗବେଷକଙ୍କ ପାଇଁ ଏକ ସହାୟକ ଗ୍ରନ୍ଥ । ଇଂରେଜମାନଙ୍କ ଦ୍ୱାରା ଲିଖିତ ଚିଠିଗୁଡ଼ିକ ସେଥି

ସେଗୁଡ଼ିକୁ ଯଥାସ୍ଥାନରେ ପ୍ରୟୋଗ କରିବା ବେଶ୍ କଷ୍ଟସାଧ୍ୟ, ସେ ଦୃଷ୍ଟିରୁ ଡକ୍ଟର ମହତାବ ଅଭିନନ୍ଦନୀୟ ।

ଇଂରାଜୀରେ ଲିଖିତ ଓଡ଼ିଶା ଇତିହାସର ଦୁଇଖଣ୍ଡ ଡକ୍ଟର ମହତାବଙ୍କର ଐତିହାସିକ ପ୍ରତିଭାର ଅନ୍ୟ ଦୁଇଟି ଝଲକ । ପ୍ରଥମ ଖଣ୍ଡରେ ଓଡ଼ିଶା ପ୍ରଦେଶର ଉତ୍ପତ୍ତିଠାରୁ ୧୫୬୮ରେ ସୂର୍ଯ୍ୟବଂଶୀ ଗଜପତିଙ୍କର ପତନ ପର୍ଯ୍ୟନ୍ତ ଓ ଦ୍ୱିତୀୟ ଖଣ୍ଡରେ ଓଡ଼ିଶାରେ ଆଫଗାନି ରାଜତ୍ୱଠାରୁ ୧୯୬୦ ପର୍ଯ୍ୟନ୍ତ ଘଟଣାବଳୀ ପ୍ରଦାନ କରାଯାଇଛି । ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ପ୍ରଥମ ଖଣ୍ଡ ଓ ଦ୍ୱିତୀୟଖଣ୍ଡ ଯଥାକ୍ରମେ ୧୯୫୯ ଓ ୧୯୬୦ରେ ପ୍ରକାଶିତ ହୋଇଥିଲା । ତଥ୍ୟଗୁଡ଼ିକ ମୁଖ୍ୟତଃ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆୟୋଜିତ ଡକ୍ଟର ରାଧାମୁକୁନ୍ଦ ମୁଖାର୍ଜି ବକ୍ତୃତାମାଳା ଉପଲକ୍ଷେ ଡକ୍ଟର ମହତାବଙ୍କ ଦ୍ୱାରା ପ୍ରଦତ୍ତ ୩ଟି ବକ୍ତୃତା ଉପରେ ଆଧାରିତ । ସେଗୁଡ଼ିକ ୧୯୪୯ରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା । ପୁସ୍ତକଟିର ଉପାଦେୟତା ଉପରେ ମନ୍ତବ୍ୟ ଦେଇ ଡକ୍ଟର ରାଧାମୁକୁନ୍ଦ ମୁଖାର୍ଜି ଲେଖିଛନ୍ତି, ''ଓଡ଼ିଶା ଇତିହାସ ଉପରେ ଏହି ଲେଖାଟି ମୋଟ ଉପରେ ଯେକୌଣସି ପାରମ୍ପରିକ ଗ୍ରନ୍ଥ ସହିତ ସମକକ୍ଷ ହୋଇପାରିବ । ଏଥିରେ ବହୁ ଶୂନ୍ୟସ୍ଥାନ ପୂରଣ କରିବା ପୂର୍ବକ ରହସ୍ୟାବୃତ ଘଟଣା ଉପରେ ଆଲୋକପାତ କରାଯାଇଥିବାରୁ ଉକ୍ତ ପୁସ୍ତକ ସମଗ୍ର ଭାରତର ଇତିହାସ ପାଇଁ ଏକ ମୌଳିକ ଅବଦାନ ହୋଇ ରହିବ !!''

ଡକ୍ଟର ମହତାବଙ୍କର ଇତିହାସ ଉପରେ ଅନ୍ୟ ଏକ ଉପାଦେୟ ପୁସ୍ତକ ହେଉଛି ୧୯୬୧ରେ ପ୍ରକାଶିତ 'ଗାନ୍ଧିଜୀ ଓ ଓଡ଼ିଶା' । ସେ ଓଡ଼ିଶା ରାଜ୍ୟ ଗାନ୍ଧୀ ଜନ୍ମ ଶତବାର୍ଷିକୀ କମିଟିର ସଭାପତି ଥିଲାବେଳେ ଏହାକୁ ଲେଖିଥିଲେ । ଏହା ମୁଖ୍ୟତଃ ମହତାବବାବୁଙ୍କ ପାଖକୁ ଗାନ୍ଧିଜୀ ଲେଖିଥିବା ଚିଠିଗୁଡ଼ିକ ଉପରେ ଆଧାରିତ । ଏଥିରେ ଗାନ୍ଧିଜୀଙ୍କର ଚିନ୍ତାଧାରାକୁ ସେ ନିଖୁଣଭାବରେ ଉପସ୍ଥାପନା କରିଛନ୍ତି । ଏଥିରେ ଓଡ଼ିଶା ସହିତ ମହାତ୍ମାଗାନ୍ଧୀଙ୍କ ସମ୍ପର୍କରେ ପ୍ରକାଶିତ ବହୁ ତଥ୍ୟ ଶ୍ରୀଯୁକ୍ତ ମହତାବ ଲେଖି ନ ଥିଲେ ହୁଏତ ସେଗୁଡ଼ିକ ଲୋକଲୋଚନକୁ ଆସି ନପାରି ବିସ୍ମୃତି ଗର୍ଭରେ ଲୋପ ପାଇ ଯାଇଥାଆନ୍ତା । କେବଳ ସେତିକି ନୁହେଁ, ଗାନ୍ଧିଜୀଙ୍କର ୯।୧୨।୧୯୩୮ ମସିହାର ଚିଠିରେ ଉଲ୍ଲିଖିତ ''ଯାହା ସବୁ ଘଟୁଛି ; ସେ ସବୁ ପ୍ରକାଶିତ ହେବା ଉଚିତ । କିନ୍ତୁ ଯାହା ପ୍ରକାଶିତ ହେବ, ତାହା ପ୍ରମାଣଯୋଗ୍ୟ ହେବା ଉଚିତ'' ବିଷୟ ପ୍ରତି ଦୃଷ୍ଟି ରଖି ଡକ୍ଟର ମହତାବ ବିଷୟବସ୍ତୁଗୁଡ଼ିକ ଏଥିରେ ପ୍ରକାଶ କରିଛନ୍ତି ।

ଜୁଲାଇ ୧୯୮୬ରେ ପ୍ରକାଶିତ 'While Serving My Nation : Recollections of a Congress man' ଥିଲା ଇତିହାସ ଉପରେ ତାଙ୍କର ସର୍ବଶ୍ରେଷ୍ଠ ଗ୍ରନ୍ଥ । ମୁଖ୍ୟତଃ ୧୯୫୦ରୁ ୧୯୫୬ ପର୍ଯ୍ୟନ୍ତ ପ୍ରଥମେ କେନ୍ଦ୍ରମନ୍ତ୍ରୀ ଓ ତା'ପରେ ବମ୍ବେର ରାଜ୍ୟପାଳ ଥିବା ସମୟରେ ଜାତୀୟ ନୀତି ଉପରେ ଏକ ଚିତ୍ତାକର୍ଷକ ବିବରଣୀ ଏଥିରେ ସନ୍ନିବେଶିତ । ବିଭିନ୍ନ ଚିଠିପତ୍ର ଓ ଦଲିଲ ପ୍ରକାଶ କରି ସେହି ସମୟରେ ଭାରତ ସମ୍ମୁଖୀନ ହୋଇଥିବା ବିଭିନ୍ନ ସମସ୍ୟା ଉପରେ ସେ ତାଙ୍କର ମତାମତ ନିର୍ଭୀକ ଭାବରେ ବ୍ୟକ୍ତ କରିଛନ୍ତି । ବିଶେଷତଃ ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଶାସନ କ୍ଷେତ୍ରରେ ଉପୁଜିଥିବା ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରି ସେ ନିଜର ବ୍ୟକ୍ତିଗତ ଅନୁଭୂତି ପ୍ରକାଶ କରିଥିବାର ଦେଖାଯାଏ । ପୁନଶ୍ଚ ଶାସନର ସର୍ବୋଚ୍ଚ ଶିଖରରେ ଥିବା ପ୍ରଶାସକଙ୍କର ବିଭିନ୍ନ ନୀତି ପ୍ରଣୟନରେ ରହିଥିବା ତ୍ରୁଟି ଓ ତାଙ୍କ ସହିତ ମତଭେଦଗୁଡ଼ିକ ବିନା ଗ୍ଳାନିରେ ସେ ପୁସ୍ତକଟିରେ ପ୍ରକାଶ କରିଛନ୍ତି । ତନ୍ମଧ୍ୟରୁ ଜବାହରଲାଲ ନେହେରୁ ଓ ତାଙ୍କ ମନ୍ତ୍ରିମଣ୍ଡଳର କେତେକ ସଦସ୍ୟଙ୍କ ସହ ଭାରତର ଦେଶୀୟ ରାଜ୍ୟ ମିଶ୍ରଣ ଉପରେ ମତପାର୍ଥକ୍ୟ କି ରୂପ ଧାରଣ କରିଥିଲା, ତାହା ତାଙ୍କ ପୁସ୍ତକରୁ ଦେଖାଯାଏ । ସାର୍ ଷ୍ଟାଫୋର୍ଡ କ୍ରିପ୍ସଙ୍କ ସହିତ ତାଙ୍କର ଆଲୋଚନା ମଧ୍ୟ ଉଲ୍ଲେଖଯୋଗ୍ୟ ।

ଇତିହାସ ବହୁ ବ୍ୟକ୍ତି ଲେଖିଛନ୍ତି, ମାତ୍ର ଡଃ ମହତାବଙ୍କ ଲେଖାରେ ଗୋଟିଏ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ତାହା ହେଉଛି କଥାବସ୍ତୁକୁ ନିରପେକ୍ଷ ଦୃଷ୍ଟିକୋଣରୁ ବିଚାର କରି ସତ୍ୟଘଟଣାଗୁଡ଼ିକୁ ପ୍ରକାଶ କରିବା, ଯେଉଁଟା କି ଇତିହାସର ଧର୍ମ । ସେ 'ଓଡ଼ିଶା ଇତିହାସ' ପୁସ୍ତକର ମୁଖବନ୍ଧରେ ଯାହା ଲେଖିଛନ୍ତି, ''ଇତିହାସ କିମ୍ବଦନ୍ତୀ ନୁହେଁ ବା କଳ୍ପନା ନୁହେଁ'', ତାହା ସେ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି ।

*ନୟାପଲ୍ଲୀ, ଭୁବନେଶ୍ୱର*

• • •

## ମହତାବ-କେତେ କଣ

ମହତାବ ହେଉଛନ୍ତି, ବର୍ତ୍ତମାନ ଓ ଭବିଷ୍ୟତର । ତାଙ୍କର ଅତୀତ ଓଡ଼ିଶାର ଚଳମାନ ଇତିହାସ । ମହତାବ ଏପରି ଏକ ବହୁମୁଖୀ ପ୍ରତିଭା- ସ୍ୱାଧୀନତା ସଂଗ୍ରାମୀ ମହତାବ ସମାଜସେବୀ ମହତାବ, ବ୍ୟବସ୍ଥାପକ ମହତାବ, ପ୍ରଶାସକ ମହତାବ, ଐତିହାସିକ ମହତାବ, ସାହିତ୍ୟିକ ମହତାବ, ସାମ୍ବାଦିକ ମହତାବ-ଏପରି କେତେ କଣ ମହତାବ । ଏହି ସକଳ ବିଭାବରେ ତାଙ୍କର ପରିସ୍ଥିତି ଅନନ୍ୟ, ଅଦ୍ଭୁତ ।

**ଶ୍ରୀ ମନମୋହନ ମିଶ୍ର**

# ଡକ୍ଟର ମହତାବଙ୍କ ଉପନ୍ୟାସରେ ରାଜନୀତିକ ଦର୍ଶନ

• ଡକ୍ଟର ବାସୁଦେବ ସାହୁ

ସାହିତ୍ୟିକ ହୋଇଥିବାରୁ ଡକ୍ଟର ମହତାବଙ୍କ ରାଜନୀତିକ ଜୀବନ ଯେପରି ମହନୀୟ, ସରସ ଓ ଉପଭୋଗ୍ୟ, ରାଜନୀତିଜ୍ଞ ହୋଇଥିବାରୁ ତାଙ୍କର ସାହିତ୍ୟ ସେହିପରି ରାଜନୀତିକ ଚିନ୍ତା- ଚେତନା ଓ ଦର୍ଶନରେ ସମୃଦ୍ଧ ହୋଇପାରିଛି । ଷାଠିଏ ବର୍ଷରୁ ଊର୍ଦ୍ଧ୍ୱକାଳ ଡକ୍ଟର ମହତାବ ଓଡ଼ିଶା ଓ ଭାରତର ରାଜନୀତି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଆସିଛନ୍ତି । ସେହିପରି ଷାଠିଏ ବର୍ଷରୁ ଊର୍ଦ୍ଧ୍ୱକାଳ ଓଡ଼ିଆ ସାହିତ୍ୟକୁ ଉପନ୍ୟାସ, ଗଳ୍ପ, କାବ୍ୟ, କବିତା, ଏକାଙ୍କିକା, ପ୍ରବନ୍ଧ, ରମ୍ୟରଚନା, ସାମ୍ବାଦିକସାହିତ୍ୟ ରଚନା ଦ୍ୱାରା ବିଭବାନ୍ୱିତ କରିଆସିଛନ୍ତି । ନିରବଚ୍ଛିନ୍ନ ରାଜନୀତିକ ଜୀବନର ଅଭିଜ୍ଞତା ଲାଭ କରି ନ ଥିଲେ ମହତାବଙ୍କ ସାହିତ୍ୟର ବିଶିଷ୍ଟ ଦିଗଟି ଏପରି ଉଜ୍ଜ୍ୱଳ ଓ ବ୍ୟାପ୍ତ ହୋଇପାରିଥାନ୍ତା କି ନାହିଁ କହିହେବ ନାହିଁ ।

ଦେଶର ରାଜନୀତିକ, ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ, ଶୈକ୍ଷିକ ବିକାଶ ସାଧନ କରିବାପାଇଁ ପ୍ରଚଣ୍ଡ ବ୍ୟାକୁଳତା ଓ ସମାଜର ବିଭିନ୍ନ ସ୍ତର ସହିତ ଘନିଷ୍ଠ ସମ୍ପର୍କ ମହତାବଙ୍କୁ ଚିନ୍ତାଶୀଳ ଓ ଦାର୍ଶନିକ କରି ଗଢ଼ିଛି । ତାଙ୍କ ସାହିତ୍ୟର ଯେଉଁ ଦିଗଟି ଆମର ସଚେତନ ଓ ସସମ୍ମାନ ଦୃଷ୍ଟି ଆକର୍ଷଣ କରିଥାଏ, ସେଇଟି ହେଉଛି ରାଜନୀତିକ ଚେତନା । ଏ ଚେତନା ଭିତରେ ରହିଛି ଏକ ବିଶିଷ୍ଟ ଦର୍ଶନ, ଦେଶକୁ ସୁସ୍ଥ ସମୃଦ୍ଧ କରି ଗଢ଼ିବା ପାଇଁ ସ୍ୱପ୍ନ ଓ ସଂକଳ୍ପ । ତାଙ୍କ ସାହିତ୍ୟର ବିଭିନ୍ନ ବିଭାଗରେ ଏଇ ଦର୍ଶନ ଲକ୍ଷଣୀୟ ହେଲେହେଁ ଉପନ୍ୟାସରେ ଏହାର ପ୍ରତିଫଳନ ଅଧିକ ବ୍ୟାପକ ଓ ଉଜ୍ଜ୍ୱଳ ।

ମହତାବ ଛଅଟି ଉପନ୍ୟାସ ରଚନା କରିଛନ୍ତି, ଯଥା :- ନୂତନଧର୍ମ, ପ୍ରତିଭା, ଅବ୍ୟାପାର, ଟାଉଟର, ତୃତୀୟ ପର୍ବ ଓ '୧୯୭୫' । ୧୯୨୧ରୁ ୧୯୭୫ ମସିହା ପର୍ଯ୍ୟନ୍ତ ଭାରତର (ନିର୍ଦ୍ଦିଷ୍ଟ ଭାବରେ ଓଡ଼ିଶାର ମଧ୍ୟ) ରାଜନୀତିକ, ସାମାଜିକ ଆଦି ଅବସ୍ଥା ଜାଣିବାକୁ ହେଲେ **ଏଇ ଛଅଟି ଉପନ୍ୟାସକୁ ରସାଳ ଇତିହାସ ଭାବରେ** ପଢ଼ାଯାଇପାରେ । କିପରି ବିପ୍ଳବ କରିବାକୁ ହେବ, ଚଳାଇବାକୁ ହେବ, ସମାଜର ସେବା କରିବାକୁ ଓ କରାଇବାକୁ ହେବ- ସେ ଦିଗରେ ମହତାବ ସବୁବେଳେ ସଚେତନ ଥିବାରୁ ତାଙ୍କର ମର୍ମବାଣୀ ବା ଦର୍ଶନ ଏଇ ଛଅଟି ଉପନ୍ୟାସ ମାଧ୍ୟମରେ ପରିବେଷଣ କରିଯାଇଛନ୍ତି ।

'ନୂତନ ଧର୍ମ' ହରେକୃଷ୍ଣ ମହତାବଙ୍କର ଏକ ଆଦର୍ଶ ସାମାଜିକ ଉପନ୍ୟାସ ଓ ପ୍ରଥମ ଉପନ୍ୟାସ (ଖ୍ରୀ.୧୯୨୭-୧୯୩୫) । ଏଥିରେ ସେ ପ୍ରତିପାଦନ କରିବାକୁ ଚାହିଁଛନ୍ତି ଯେ ପ୍ରକୃତ ଧର୍ମ ବାହ୍ୟ ପ୍ରଚାରରେ ନାହିଁ, ଲୋକ ଦେଖାଣିଆ ହରିଧ୍ୱନିରେ ନାହିଁ, ଏହାର ସ୍ଥାନ ଅନ୍ତରରେ । ମାଳା ଜପିବାରେ ଭଗବତ୍ ପ୍ରାପ୍ତି ହୁଏନାହିଁ, ହୁଏ ଜନତା ଜନାର୍ଦ୍ଦନର ସେବାରେ । ଏହାଛଡ଼ା କୁସଂସ୍କାର ତଥା ଜାତିପ୍ରଥା ବିରୁଦ୍ଧରେ ଓ ବିଧବା ବିବାହ ତଥା ନାରୀ ଜାଗରଣ ସପକ୍ଷରେ ମହତାବ ବିଭିନ୍ନ ଚରିତ୍ର ମାଧ୍ୟମରେ ସ୍ୱକୀୟ ବଳିଷ୍ଠ ଦର୍ଶନର ଉପସ୍ଥାପନ କରିଛନ୍ତି । ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ଓଡ଼ିଶାରେ ନୂଆ ନୂଆ ପ୍ରଚାରିତ ହେବାବେଳେ କଂଗ୍ରେସ ଅନୁଷ୍ଠାନ ଓ ତାହାର କାର୍ଯ୍ୟକୁ ଏ ଦେଶର ଅଭିଜାତ ଗୋଷ୍ଠୀ କିପରି ଘୃଣା ଚକ୍ଷୁରେ ଦେଖୁଥିଲେ, ତାହାର ମଧ୍ୟ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ 'ନୂତନ ଧର୍ମ'ରେ ଦେଖିବାକୁ ମିଳେ ।

ମନେହୁଏ ଔପନ୍ୟାସିକ ମାୟାଧର ଚରିତ୍ର-ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ତେଣୁ ଜନତାର ସେବା ହିଁ ମାୟାଧରଙ୍କ ନିକଟରେ ହୋଇଛି ଶ୍ରେଷ୍ଠ ଧର୍ମ । ବାହ୍ୟସର୍ବସ୍ୱ ପ୍ରେମଧର୍ମ ଅପେକ୍ଷା କାର୍ଯ୍ୟରେ, ସମସ୍ୟାର ଅଗ୍ନିପରୀକ୍ଷାରେ ପରୀକ୍ଷିତ ପ୍ରେମଧର୍ମକୁ ମାୟାଧର ଉଚ୍ଚ ସ୍ଥାନ ଦେଇଛନ୍ତି । ମାୟାଧର ଚାହିଁଛନ୍ତି ନୀରବ ସାଧନା, ସଚ୍ଚୋଟ ନିଷ୍ଠାପର କର୍ମ । ରମେଶ ସତ୍‌କର୍ମକୁ ସ୍ୱୀକାର କରିଥିଲେ ମଧ୍ୟ ତା' ସାଙ୍ଗକୁ ଚାହିଁଛନ୍ତି, ଖାଡ଼ି ଓ ପ୍ରଚାର । ଏଇଠି ମାୟାଧର ଓ ରମେଶ ଭିତରେ ଦେଖା ଦେଇଛି ପ୍ରଭେଦ ।

ବିଧବା ବିବାହ ସେ କାଳରେ ପ୍ରାଚୀନପନ୍ଥୀମାନଙ୍କ ଦ୍ୱାରା ଅନ୍ୟାୟ ବୋଲି ବିବେଚିତ ହେଉଥିଲା, କିନ୍ତୁ ଆଧୁନିକ ଯୁବସମାଜ ଏହାକୁ ଏକ ଆଦର୍ଶ କର୍ତ୍ତବ୍ୟ ବୋଲି ଗ୍ରହଣ କରିଥିଲେ । ତେଣୁ ପ୍ରାଚୀନ ଓ ନବୀନ ଚେତନାରେ ଦେଖାଦେଇଛି ସଂଘର୍ଷ । ଏଭଳି ସଂଘର୍ଷ ସମାଜ ପକ୍ଷରେ ଶୁଭଙ୍କର ବୋଲି ମହତାବ ସୁନ୍ଦରମଣି ଚରିତ୍ର ମୁଖରେ କୁହାଇଛନ୍ତି - "ବିପ୍ଳବର ଅର୍ଥ ହେଉଛି ତ ନୂଆ ପୁରୁଣାର ସଂଘର୍ଷ, ପୁରୁଣା ସାଙ୍ଗରେ ନୂଆର ବିବାଦ । ଏ ବିବାଦ ଫଳରେ ସମାଜର ଭବିଷ୍ୟତ ଉଜ୍ଜ୍ୱଳ ହୋଇଉଠିବ ।"

ଗୌଡ଼ୀୟ ବୈଷ୍ଣବମାନଙ୍କର ବାହ୍ୟାଚାର ସର୍ବସ୍ୱ ଓ ଭ୍ରଷ୍ଟାଚାରପୂର୍ଣ୍ଣ ତଥାକଥିତ ପ୍ରେମଧର୍ମକୁ ସେ ସେହି ସୁନ୍ଦରମଣିଙ୍କ ମାଧ୍ୟମରେ କଟୁ ସମାଲୋଚନା କରିଛନ୍ତି - "[illegible]ଅତା ମଣିଷକୁ ପ୍ରେମ କରି ନ ପାରେ, ସେ ଜଡ଼ ଦେବମୂର୍ତ୍ତିକୁ ପ୍ରେମ କରିବ କଅଣ ? କଲେବା ଲାଭ କଅଣ ? ସେ କଳ୍ପନାର ଅତୀତ ଈଶ୍ୱରଙ୍କୁ ପ୍ରେମ କରିବ କ'ଣ, ଯେ ତାଙ୍କର ସୃଷ୍ଟି ମଣିଷକୁ ପ୍ରେମ କରି ନ ପାରେ ?"

କ୍ରମେ ସୁନ୍ଦରମଣିଙ୍କର ପରିବର୍ତ୍ତନ ଘଟିଛି । ଶ୍ୱଶୁରଙ୍କ ପରି ଟାଙ୍ଗ ଜମିଦାରୀର ପ୍ରଜାମାନଙ୍କୁ ନିର୍ଯ୍ୟାତନା ଦେଉଛନ୍ତି । ମହତାବଙ୍କ ଆତ୍ମା ଧରି ମାୟାଧର ସୁନ୍ଦରମଣିଙ୍କୁ ଶୁଣାଉଛନ୍ତି "ଆପଣଙ୍କର ଦିନକର ଅର୍ଥ ହେଉଛି-ଶହ ଶହ ଲୋକଙ୍କ ଘରେ ଚୁଲୀ ଜଳିବା, ଶହ ଶହ ଲୋକଙ୍କ ଘରେ ଦୁଃଖରେ ନିଃଶ୍ୱାସ ବହିବା । ସେମାନେ ମୁହଁ ଖୋଲି କିଛି କହି ପାରୁନାହାନ୍ତି ସତ୍ୟ, ମାତ୍ର ସେମାନଙ୍କର ନିଃଶ୍ୱାସରେ ବଡ଼ ଶକ୍ତି ଅଛି, ସେମାନଙ୍କ ନିଃଶ୍ୱାସ ଭଗବାନଙ୍କ ହାତର ହତିଆର ପରି । x x ଆପଣ

ଦେଶର ଉପକାର କରିବେ ବୋଲି କହୁଥିଲେ, କରୁଥିଲେ ମଧ । x x ଦେଶ ବୋଲକହେ ତ କୋଟି କୋଟି ଗରିବ ଲୋକ, ଯେଉଁମାନେ ମୁଠାଏ ଖାଇବାକୁ ପାଉ ନାହାନ୍ତି କି ରୋଗରେ ପଡ଼ି ମରି ଯାଉଥିଲେ ମଧ ଯେଉଁମାନଙ୍କର ଭାଗ୍ୟରେ ବିଶ୍ୱାସ ଛଡ଼ା ଆଉ ଶୁଶ୍ରୁଷା ମିଳୁନାହିଁ ।''

ଏ ଦର୍ଶନରେ ଉଦ୍‌ବୁଦ୍ଧା ସୁନ୍ଦରମଣି ଶାଶୁ ଓ ସ୍ୱାମୀକୁ ନିର୍ଭୀକ ଭାବରେ ଶୁଣାଉଛି -''ବଡ଼-ଲୋକିରେ ଯେ ପ୍ରତିଷ୍ଠା ମିଳେ, ତାହା କେବଳ ମୁହଁର କଥା, କିନ୍ତୁ ଦରିଦ୍ରର ସେବାରେ ଯେ ପ୍ରତିଷ୍ଠା ମିଳେ ତା' ହୃଦୟର ବିଷୟ । x x x ଦେଶମାତାର ଡାକ ଯଦି ତୁମ କାନରେ ନ ପଡ଼େ, ତେବେ ତୁମକୁ ଅପେକ୍ଷା କରିବାକୁ ମୋର ବେଳ ନାହିଁ ।''

ପ୍ରେମଧର୍ମ ଶୁଷ୍କ କଳ୍ପନାର କଥା ନୁହେଁ, ଜୀବନ୍ତ ମଣିଷର ସେବାରେ ହିଁ ତାହାର ସାର୍ଥକତା - ଏହି ଦର୍ଶନ ମହତାବ ମାଧ୍ୟାଧରଙ୍କ କାର୍ଯ୍ୟ ଓ କଥାରେ ଦେଖାଇ ଦେଇଛନ୍ତି- ''ଈଶ୍ୱର ଦୁଃଖ ସୃଷ୍ଟି କରିଛନ୍ତି । ସେଥିରେ ମଧ ମହତ୍ୱ ରହିଛନ୍ତି । ଦୁଃଖ ଦେଇଛନ୍ତି କାହିଁକି ନା ମନୁଷ୍ୟ ଦୁଃଖୀଙ୍କୁ ସେବା କରି ଈଶ୍ୱରଙ୍କୁ ପୂଜା କରିପାରିବ ।''

ମହତାବ ରାଜନୀତିର ମୂଳଭିତ୍ତି ରୂପେ ସମାଜସେବାକୁ ଗ୍ରହଣ କରିଥିଲେ । ସମାଜସେବାର ମୂଳ ଉପାଦାନ ହେଉଛି ପ୍ରେମ-ଧର୍ମ । ଏ ପ୍ରେମଧର୍ମ ଲୋକ ଦେଖାଣିଆ ବାହ୍ୟାଚାର ନୁହେଁ । ଏହା ନିଖୁଣ ମାନବ-ପ୍ରେମ । ସମାଜ-ଦର୍ଶନ ଉପରେ ଭିତ୍ତି କରି ଗଢ଼ିଉଠିଥିବା ତାଙ୍କର ରାଜନୀତିକ ଦର୍ଶନ ହେଲା - ଈଶ୍ୱରଙ୍କଠାରେ ମନ ରଖି ନମ୍ର ଭାବରେ ଲୋକ-ସେବା କରିବା ହିଁ ପ୍ରକୃତ ପ୍ରେମ-ଧର୍ମ । ଏହି ପ୍ରେମ-ଧର୍ମରେ ଦେଶର ମୁକ୍ତି ସଙ୍ଗେ ଜାତିର ମୁକ୍ତି ।

୧୯୪୨ରୁ ୧୯୪୫ ଯାଏ, ଅହମ୍ମଦନଗର ଫୋର୍ଟରେ ବନ୍ଦୀ ଥିଲାବେଳେ ମହତାବଙ୍କ ପ୍ରତିଭା ସୃଷ୍ଟି କରିଛି 'ପ୍ରତିଭା' । ଏହି ଉପନ୍ୟାସରେ ଜାତୀୟ ସଂଗ୍ରାମୀମାନଙ୍କ ଉପରେ ଇଂରେଜ ସରକାରଙ୍କର ଅମାନୁଷିକ ଅତ୍ୟାଚାର, ପ୍ରଜାମାନଙ୍କର ଦୁର୍ଦ୍ଦଶା ଓ ଦୋଷ-ଦୁର୍ବଳତା, ସରକାରୀ ଚାକିରି ନିଶାରେ ଭାରତୀୟମାନଙ୍କର ଭାରତୀୟମାନଙ୍କ ଉପରେ ଅମାନୁଷିକତା, ସମାଜରେ କଳଙ୍କ ରୂପେ ବ୍ୟାପି ରହିଥିବା ଜାତିପ୍ରଥା, ପରଦାପ୍ରଥା ଓ ନାନା କୁସଂସ୍କାରର ଚିତ୍ର ଅଙ୍କିତ । ଏ ସବୁର ଊର୍ଦ୍ଧ୍ୱରେ ସ୍ଥାନ ପାଇଛି ମହତାବଙ୍କ ରାଜନୀତିକ ଦର୍ଶନ ଓ ଜୀବନ ଦର୍ଶନ ।

ସେ ଦେଖାଇ ଦେବାକୁ ଚାହାନ୍ତି ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିବା ଲାଗି ପୁରୁଷ ପରି ନାରୀର ମଧ ସମାନ ଅଧିକାର ଓ ଶକ୍ତି ରହିଛି । ପ୍ରତିଭା ଶାଶୁଘରେ ଏକାକିନୀ, ସ୍ୱାମୀ ନବୀନଙ୍କ ଦ୍ୱାରା ଅବହେଳିତା । ନବୀନ ଯଦି ସ୍ୱାଧୀନତା-ସଂଗ୍ରାମରେ ଝାସ ଦେବାକୁ ଜୀବନର ବ୍ରତ ରୂପେ ଗ୍ରହଣ କଲା, ତା'ର ଅର୍ଦ୍ଧାଙ୍ଗିନୀ ପ୍ରତିଭାକୁ କ'ଣ ସେହି ପଥରେ ସହଗାମିନୀ କରି ନେବା ଉଚିତ୍ ନ ଥିଲା ? ହୃଦୟ ତା'ର ସ୍ୱାଭିମାନରେ ଭରିଗଲା । ତେଣୁ ନବୀନ ପାଖକୁ ଲେଖିଲା ଯେ ଯଦି ନବୀନ ପ୍ରତିଭାକୁ ନିଜ ଆଦର୍ଶର ପଥରେ ସହଧର୍ମିଣୀ ଓ ସହକର୍ମିଣୀ ଭାବରେ ଅଗ୍ନିପରୀକ୍ଷା କରିବାକୁ ଚାହେଁ, ତେବେ ସେଥିପାଇଁ ସେ ପ୍ରସ୍ତୁତ ଅଛି । ମାତ୍ର ତା' ନ କରି ଯଦି ନବୀନ ପ୍ରତିଭା ଠାରୁ ଦୂରେଇ ଯା'ନ୍ତି, ତେବେ ସେ ମଧ ନବୀନଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ କୁଣ୍ଠାବୋଧ କରିବ ନାହିଁ ।

ମହତାବଙ୍କର ବ୍ୟକ୍ତିଗତ ଜୀବନ-ଦର୍ଶନ ପ୍ରକାଶ, ନବୀନ ଓ ପ୍ରତିଭା ଚରିତ୍ରର ଆଦର୍ଶ, ବାକ୍ୟ ଓ କାର୍ଯ୍ୟ ମଧରେ ପ୍ରତିଫଳିତ ହୋଇଥିବା ଭଳି ମନେହୁଏ । ରାଜନୀତିର ପଥ ସଂକଟସଂକୁଳ, ସମସ୍ୟାବହୁଳ, କଣ୍ଟକାକୀର୍ଣ୍ଣ । ମନରୁ ଭୟ ଛାଡ଼ିଗଲେ, ଆତ୍ମପ୍ରତ୍ୟୟରେ ଶକ୍ତିଶାଳିନୀ ହେଲେ ନାରୀ ମଧ ସେହି ବିପଦଜନକ ପଥକୁ ଡେଇଁ ପଡ଼ିବା ପାଇଁ ପଛଘୁଞ୍ଚା ଦେବ ନାହିଁ । ଏହା ପ୍ରମାଣ କରି ଦେଉଛି ନବୀନ ପାଖକୁ ପ୍ରେରିତ ପ୍ରତିଭାର ଚରମ ପତ୍ର -''ମୁଁ ସେ ଅବଳା ହୋଇ ଆଉ ନାହିଁ ଯେ ପୁରୁଷର ପ୍ରାର୍ଥିନୀ ହୋଇ ଜୀବନ ସାରା ଝୁରି ହେଉଥିବି । ବିପ୍ଳବର ପଥ ମୋ' ପାଇଁ ଉନ୍ମୁକ୍ତ । x xx ଜୀବନକୁ ନଈ ମଝିକୁ ଫୋପାଡ଼ି ଦେବି । ମୋର ମଧ ସନ୍ତରଣ କରିବାର ସାହସ ଆସିଛି ।''

ରାଜନୀତିରେ ଝାସ ଦେଇଥିବା ବ୍ୟକ୍ତି ଆଗରେ ଦେଶ ମହାନ୍, ନିଜ ପରିବାର ତୁଚ୍ଛ । ଜାତୀୟ ସ୍ୱାର୍ଥ ପାଖରେ ଦାମ୍ପତ୍ୟ ସୁଖ ନଗଣ୍ୟ । ଦୁଃଖକୁ ସେ ସୁଖ ବୋଲି ମଣେ, ଦାରିଦ୍ର୍ୟକୁ ଆଦରି ନିଏ, ବିଚ୍ଛେଦ ତା'ପାଇଁ ମିଳନ ଠାରୁ ଅଧିକ ମଧୁମୟ । ପ୍ରକାଶବାବୁଙ୍କ ମୁହଁରେ ମହତାବ ଏହି ରାଜନୀତିକ ଦର୍ଶନ ନବୀନ ଓ ପ୍ରତିଭାଙ୍କୁ (ଏ ଦେଶର ଅଗଣିତ ଯୁବକ-ଯୁବତୀଙ୍କୁ) ଶୁଣାଇଛନ୍ତି -''ବିପ୍ଳବର ସଙ୍ଗୀ ହୋଇ ତୁମେ ଦୁଇଜଣ ବଞ୍ଚି ରହ, ଦୁଃଖ ହିଁ ତୁମର ଚିର ସୁଖ ହେଉ, ନିର୍ଦ୍ଧନତା ହିଁ ତୁମର ସମ୍ପଦ ହେଉ, ବିଚ୍ଛେଦ ହିଁ ତୁମର ମଧୁର ମିଳନ ହେଉ । ଏହା ହିଁ ମୋର ଆଦର୍ଶ ବିପ୍ଳବୀଙ୍କୁ ଆଶୀର୍ବାଦ ।

ଅତ୍ୟାଚାରୀ ଜମିଦାର ପ୍ରତି ଅତ୍ୟାଚାରିତ ନିରୀହ ପ୍ରଜାମାନଙ୍କର ରୁଦ୍ଧ କୋହଭରା ପ୍ରତିକ୍ରିୟା ଭିତରେ ରାଜନୀତିକ ବିପ୍ଳବର ବାଣୀ ପ୍ରତିଧ୍ୱନିତ-''ଆଜି ମୋ' ଦେହରେ ବଳ ନାହିଁ । ମୁଁ ଓଲଟି ମାଡ଼ ଦେଇ ପାରୁନାହିଁ, ମାତ୍ର ସବୁଦିନେ ମୁଁ ଦୁର୍ବଳ ହୋଇ ରହିବି ନାହିଁ । ତା' ଯଦି ନ ହୁଏ, ତେବେ ମୋ' ପୁଅ ନାତି ଏ ମାଡ଼ର ବଦଲା ନେବେ ।'' ଏ ଭଳି ବିପ୍ଳବୀମାନଙ୍କ ସମ୍ପର୍କରେ ମହତାବ 'ପ୍ରକାଶ' ଭୂମିକାରେ ଠିଆ ହୋଇ କହିବାକୁ ଚାହାନ୍ତି- ''ଏମାନଙ୍କ ଛାତିରୁ ଭୟ ହଟିଗଲେ, ଏମାନେ ହିଁ ବୁଦ୍ଧିମାନ୍, ଏମାନେ ହିଁ ଦେଶର ଚାଳକ ଓ ଏମାନଙ୍କ ଉପରେ ନିର୍ଭର କରିବ ଧନୀର ଧନ, କ୍ଷମତାଶାଳୀର କ୍ଷମତା ।''

ଅହମ୍ମଦନଗର ଫୋର୍ଟର କାରାଗାର ମଧରେ ଜନ୍ମ ନେଇଛି ମହତାବଙ୍କର ଅନ୍ୟତମ ପ୍ରସିଦ୍ଧ ରାଜନୀତି ଉପନ୍ୟାସ 'ଅଦ୍ୟାପାର' । ଦେଶପ୍ରେମ, ସ୍ୱାଧୀନତା ସଂଗ୍ରାମ, ଗଡ଼ଜାତ ଆନ୍ଦୋଳନ, ଅହିଂସା, ପୁରୁଷଙ୍କ, ନାରୀଶିକ୍ଷା ଆଦି ଉପନ୍ୟାସଟିର ଉଲ୍ଲେଖଯୋଗ୍ୟ ଉପଜୀବ୍ୟ । ଏଥିରେ ବି ରହିଛି ମହତାବଙ୍କ ରାଜନୀତିକ ଦର୍ଶନ ।

ମହତାବ ଉପନ୍ୟାସର ଦୁଇଟି ଚରିତ୍ର ମାଧମରେ ତୁଳନାତ୍ମକ ଭାବରେ ଧ୍ୱଂସମୂଳକ ବିପ୍ଳବ ଓ ଗଠନମୂଳକ ବିପ୍ଳବର ଅପକର୍ଷ-ଉତ୍କର୍ଷ ଦେଖାଇଛନ୍ତି । ଲାଲମୋହନବାବୁ ଚାହାନ୍ତି, ହଠାତ୍ ଏକ ପରିବର୍ତ୍ତନ, ଅତିମାତ୍ରାରେ ବିପ୍ଳବ, ମାରିବା ଅଥବା ମରିବା- ଏଇ ହେଉଛି ତାଙ୍କର ଧ୍ୱନି । ଦେଶର ଧନୀ-ଦରିଦ୍ର ବୈଷମ୍ୟ ନିରାକରଣ ପାଇଁ ସେ ଚାହାନ୍ତି ଦେଶସାରା ପ୍ରବଳ ଅସନ୍ତୋଷର ଏକ ଧ୍ୱଂସାତ୍ମକ ବିରାଟ ଅଗ୍ନିକାଣ୍ଡ । ମାତ୍ର ଚିନ୍ତାମଣିବାବୁ ଚାହାନ୍ତି ମନର ଅଚିର ଦୃଢ଼ ପରିବର୍ତ୍ତନ । ନିଜର ଶକ୍ତି ଅନୁସାରେ ଦରିଦ୍ରକୁ ସାହାଯ୍ୟ କରି ତାକୁ ଉପରକୁ ଉଠାଇବାକୁ

ହେବ । ସେ ଚାହାନ୍ତି ସମାଜ-ସେବା, ଅହିଂସ ବିପ୍ଳବ ଓ ସଂଗଠନ । ଦେଶର ବିଭିନ୍ନ ସ୍ଥାନରେ ଗାନ୍ଧୀଙ୍କ ଆଦର୍ଶରେ ଗଢ଼ିଉଠୁଥିବା ଆଶ୍ରମକୁ ଲାଲମୋହନ ପସନ୍ଦ କରନ୍ତି ନାହିଁ । କିନ୍ତୁ ଦିବ୍ୟସିଂହ ନିଶ୍ଚିତ ଯେ ଆଶ୍ରମ ମାଧ୍ୟମରେ ହିଁ ଭାରତର ପବିତ୍ର ସଂସ୍କୃତିକୁ ପୁନରୁଜ୍ଜୀବିତ କରିହେବ । ବ୍ରହ୍ମଚର୍ଯ୍ୟରେ ଗାର୍ହସ୍ଥ୍ୟ ଧର୍ମକୁ ମଧ୍ୟ ଗାନ୍ଧୀ ସ୍ୱୀକାର କରିଥିଲେ । ଦିବ୍ୟସିଂହବାବୁ ଏହି ନୀତି ଗ୍ରହଣ କରିବାକୁ ଆଗ୍ରହୀ । ଗାନ୍ଧୀଙ୍କ ମତରେ ମନର ଏକାଗ୍ରତା, ଲକ୍ଷ୍ୟ ପଥରେ ଦୃଢ଼ ପଦକ୍ଷେପ, ବ୍ରତରେ ସହନଶୀଳତା ଓ ହୃଦୟର ପବିତ୍ରତା ହିଁ ବଡ଼ କଥା ।

ହରେକୃଷ୍ଣ ମହତାବ ଗାନ୍ଧିବାଦୀ । ତେଣୁ ତାଙ୍କର ରାଜନୀତିକ ଦର୍ଶନ ଗାନ୍ଧୀଙ୍କର ରାଜନୀତିକ ଦର୍ଶନ ଦ୍ୱାରା ଅନୁପ୍ରାଣିତ । 'ଅବ୍ୟାପାର' ଉପନ୍ୟାସରେ ଦିବ୍ୟସିଂହ ଚରିତ୍ର ଜରିଆରେ ସେ ଏହି ଦର୍ଶନର ପ୍ରତିଫଳନ ଘଟାଇଛନ୍ତି ।

ଏକ ସଚ୍ଚା ରାଜନୀତିକ କର୍ମୀର ଆଦର୍ଶ, ସ୍ୱରୂପ ସମ୍ପର୍କରେ ମହତାବ ଉପନ୍ୟାସର ନାୟିକା କୁମୁଦିନୀ ବିଶ୍ଳେଷଣ କରିଛନ୍ତି - "ଦେଶର ମୁକ୍ତି, ଦରିଦ୍ରର ସେବା, ଅତ୍ୟାଚାରର ପ୍ରତିରୋଧ-ଏସବୁ କାମରେ ଜଣେ ମାତି ରହିଲେ ବିନ୍ଦୁମାତ୍ର ଶୂନ୍ୟତା ଜୀବନରେ ରହିବନାହିଁ । ଯଦି ରହେ, ତେବେ ଜଣାଯିବ ତା'ର ସମସ୍ତ ପ୍ରାଣ ସେ ସବୁ କାମରେ ଲାଗି ନାହିଁ ।"

ଅହମ୍ମଦନଗର ଫୋର୍ଟ କାରାଗାରରେ ଆତ୍ମପ୍ରକାଶ କରିଛି ମହତାବଙ୍କର ଆଉ ଏକ ଉପନ୍ୟାସ 'ଟାଉଟର' । ରାଜନୀତିକ ଓ ସାମାଜିକ ପୃଷ୍ଠଭୂମି ଉପରେ ଏହାର ପ୍ରତିଷ୍ଠା । ଶିକ୍ଷାଲୋକରୁ ଗାଁ ଦୂରେଇ ବହୁତ, ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଗାଁବାସୀଙ୍କ ହୃଦୟରେ ଉତ୍ତାପ ଜଗାଇ ପାରୁନି, ମଧ୍ୟଯୁଗୀୟ ଅନ୍ଧବିଶ୍ୱାସ, କୁସଂସ୍କାର ଓ ଅଜ୍ଞାନ ଅନ୍ଧକାର ମଧ୍ୟରେ ଗାଁ ଆବଦ୍ଧ । ଏମିତି ଏକ ଗାଁରେ ସ୍ୱାର୍ଥାନ୍ଧ, ସାମନ୍ତବାଦୀ; ବ୍ୟଭିଚାରୀ ଟାଉଟରମାନଙ୍କର କ୍ରିୟାକଳାପ ଉପନ୍ୟାସର ମୁଖ୍ୟ ବର୍ଣ୍ଣନୀୟ ବିଷୟ ।

ସାମାଜିକ ସ୍ତରରେ ହେଉ କି ରାଜନୀତିକ ସ୍ତରରେ ହେଉ, ସତ୍‌ପଥରେ ଯିବା ପ୍ରତ୍ୟେକ ବ୍ୟକ୍ତିର ପରମ କର୍ତ୍ତବ୍ୟ । ଅନିଷ୍ଟକାରୀ ବ୍ୟକ୍ତିର ଇଷ୍ଟ କାମନାରେ ମାନବିକତାର ପରିଚୟ ମିଳେ । ଶିକ୍ଷକ ରାମଚନ୍ଦ୍ର ମହାପାତ୍ରଙ୍କ ମୁଖରେ ଏଭଳି ଦର୍ଶନ ଶୁଣିବାକୁ ମିଳିଛି - "ସତ ବାଟରେ ତ ଆମେ ଅଛୁଁ । ଏ ସବୁର ବିଚାର କ'ଣ ଏଇଠି ହେବ ? ଆମର ବିଚାରପତି ନିଜ ମନ ଆଉ ଈଶ୍ୱର । ଆମେ ତ କାହାରି ଅନିଷ୍ଟ କରିବୁ ନାହିଁ । ଆମ କାମ ସେବା କରିବା, କରିଯିବା ।"

ଉପନ୍ୟାସର ଉପସଂହାର ପର୍ଯ୍ୟାୟରେ ମହତାବଙ୍କର ଏକ ବଳିଷ୍ଠ ରାଜନୀତିକ ଦର୍ଶନ ପ୍ରକାଶ ପାଇଛି - "ଗାଁରେ ଟାଉଟରି ଏକ ମହା ସମସ୍ୟା । ଲୋକଚରିତ୍ର ପରିବର୍ତ୍ତିତ ନ ହେଲେ, ଗାଁରେ ଦେଶାତ୍ମବୋଧ ଜାଗରିତ ନ ହେଲେ ଗାଁରୁ ଟାଉଟର ଦୂର କରିବା ସହଜସାଧ୍ୟ ନୁହେଁ ।"

ମହତାବଙ୍କ ପରିଣତ ବୟସର ପରିପକ୍ୱ ଅଭିଜ୍ଞତାର ଏକ ସଫଳ ସୃଷ୍ଟି ହେଉଛି 'ତୃତୀୟ ପର୍ବ ।' ମହତାବ ୧୯୨୧ରୁ ୧୯୪୬ - ଏଇ ପଚିଶି ବର୍ଷକୁ ଧରିଛନ୍ତି ପ୍ରଥମ ପର୍ବ, ୧୯୪୭ରୁ ୧୯୭୨- ଏଇ ପଚିଶି ବର୍ଷକୁ ଗ୍ରହଣ କରିଛନ୍ତି ଦ୍ୱିତୀୟ ପର୍ବ ରୂପେ ଓ ତୃତୀୟ ପର୍ବ ହେଉଛି ୧୯୭୨ରୁ ପରବର୍ତ୍ତୀ କାଳ । ଉପନ୍ୟାସର ନାମକରଣ ସମ୍ପର୍କରେ ଡକ୍ଟର ମହତାବ ନିଜେ ଉପନ୍ୟାସର ୧୯୮ ପୃଷ୍ଠାରେ (ପ୍ରଥମ ସଂସ୍କରଣ, ୧୯୭୭) କହିଛନ୍ତି, ଭାରତର ସ୍ୱାଧୀନତା ଇତିହାସର ଦୁଇଟି ପର୍ବ ଶେଷ ହୋଇ ବର୍ତ୍ତମାନ ତୃତୀୟ ପର୍ବ ଚାଲିଛି । ପ୍ରଥମ ପର୍ବରେ ଚାଲିଥିଲା ନିଃସ୍ୱାର୍ଥ ଦେଶପ୍ରେମମୟ ସ୍ୱାଧୀନତା-ସଂଗ୍ରାମ, ଦ୍ୱିତୀୟ ପର୍ବରେ ଦେଖା ଦେଇଛି ସ୍ୱାଧୀନତା ସଂଗ୍ରାମୀଙ୍କ ହାତରେ ଶାସନର ପରିଚାଳନା । "ତୃତୀୟ ପର୍ବ ହେଉଛି ସେ ଶାସନର ପରିଣତି । କେଉଁଠି ସେ ପର୍ବ ଶେଷ ହେବ ଜଣା ନାହିଁ ।

ମହତାବ ନିଜେ ପ୍ରଥମ ପର୍ବ ଓ ଦ୍ୱିତୀୟ ପର୍ବରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ତୃତୀୟ ପର୍ବରେ ସେ ଭାଗ ନେଇପାରି ନାହାନ୍ତି, ନେବାକୁ ବି ଚାହିଁ ନାହାନ୍ତି । କିନ୍ତୁ ଦର୍ଶକ ଓ ଦ୍ରଷ୍ଟା ଭୂମିକାରେ ଠିଆ ହୋଇଛନ୍ତି ଓ ମନର କଥା ଖୋଲି କହିଛନ୍ତି ।

ସେ ଲକ୍ଷ୍ୟ କରିଛନ୍ତି- ଦୀର୍ଘ ଦିନର କଂଗ୍ରେସ ଶାସନରେ ଗାନ୍ଧିଙ୍କ ଭାରତ ଆଉ ନାହିଁ । ସାଂପ୍ରତିକ ନିର୍ବାଚନ-ରାଜନୀତିରେ ଗଣତନ୍ତ୍ର ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଛି । ଦୀର୍ଘକାଳ କ୍ଷମତାରେ ରହିବା ପରେ ବି ଅନେକ ସ୍ୱାଧୀନତା ସଂଗ୍ରାମୀ ତାକୁ ଛାଡ଼ିବା ପାଇଁ ବିମୁଖ; ଯେକୌଣସି ଉପାୟରେ କ୍ଷମତାକୁ ଜାବୁଡ଼ି ଧରିବା ପାଇଁ ହେମାଳେ ପାଗଳ । ଅନେକ ନିଃସ୍ୱାର୍ଥ କର୍ମୀ କ୍ଷମତା ଠାରୁ ଦୂରରେ ରହି ସ୍ୱାଧୀନତାର ଏ ପରିଣତି, ଗଣତନ୍ତ୍ରର ଏ ଅଧୋଗତିରେ ଭଗ୍ନ-ହୃଦୟ । ଶିକ୍ଷିତ ଯୁବଗୋଷ୍ଠୀ ମଧ୍ୟରେ ହତାଶା, ଅସନ୍ତୋଷ ଏବଂ ତଜ୍ଜନିତ ଧ୍ୱଂସମୁଖୀ କାର୍ଯ୍ୟଲାଗି ଜିଦ୍ । ସ୍ୱାଧୀନତା ପ୍ରାପ୍ତିର ପଚିଶି ବର୍ଷ ପରେ ଏହି ତିନି ଶ୍ରେଣୀ ମଧ୍ୟରେ ଦେଖା ଦେଉଥିବା ସଂଘର୍ଷକୁ ହିଁ ରୂପାୟିତ କରିବା ଏହି ଉପନ୍ୟାସର ଲକ୍ଷ୍ୟ । ଏଥିରେ ପ୍ରଥମ ଶ୍ରେଣୀର ପ୍ରତିନିଧି ହେଉଛନ୍ତି ମୁଖ୍ୟମନ୍ତ୍ରୀ ପ୍ରଫୁଲ୍ଲବାବୁ, ମନ୍ତ୍ରୀ ଜଗଦାନନ୍ଦବାବୁ, ସୀତାକାନ୍ତବାବୁ ଓ ସଦାନନ୍ଦବାବୁ ଇତ୍ୟାଦି । ଦ୍ୱିତୀୟ ଶ୍ରେଣୀର ପ୍ରତିନିଧିତ୍ୱ କରିଛନ୍ତି ରାମଶଙ୍କର, ଧନଞ୍ଜୟ ଇତ୍ୟାଦି ଓ ତୃତୀୟ ଶ୍ରେଣୀର ପ୍ରତିନିଧିତ୍ୱ କରିଛନ୍ତି ଚାରୁକିଶୋର, ହୃଷୀକେଶ, ବିଜୟ, କମଳାକାନ୍ତ, ତାରିଣୀ, ମାନସ, ପ୍ରଦ୍ୟୋତ, ଦୋଳଗୋବିନ୍ଦ ପ୍ରଭୃତି ।

ରାମଶଙ୍କର ଚରିତ୍ର ମାଧ୍ୟମରେ ଡକ୍ଟର ମହତାବ 'ତୃତୀୟ ପର୍ବ'ରେ ତାଙ୍କର ପ୍ରତିକ୍ରିୟା ଓ ଦର୍ଶନ ଅତି ସଫଳତାର ସହିତ ପରିବେଷଣ କରିଛନ୍ତି ।

ରାମଶଙ୍କର ଗାନ୍ଧିଜୀଙ୍କର ଲେଖା ଓ ବାଣୀ ପଢ଼ି ଯୁବଗୋଷ୍ଠୀକୁ ବୁଝାଇଛନ୍ତି - "ରାଜନୀତି କହିଲେ ବୁଝାଏ ଶାସକଗୋଷ୍ଠୀଙ୍କ ସହିତ ସଂଘର୍ଷ । ସେ ସଂଘର୍ଷ ଦୁଇ ପ୍ରକାରର ହୋଇପାରେ- ବନ୍ଧୁକ ତରବାରୀରେ ବା ଅହିଂସାତ୍ମକ ଉପାୟରେ ସତ୍ୟାଗ୍ରହ ଦ୍ୱାରା । x x ହିଂସାର ଉପାୟ ଶ୍ରେଷ୍ଠ ଉପାୟ ନୁହେଁ । ଅହିଂସାତ୍ମକ ଉପାୟ ସତ୍ୟାଗ୍ରହ । ହିଂସାତ୍ମକ ବିଦ୍ରୋହ ପାଇଁ ସାମରିକ ଟ୍ରେନିଂ ଆବଶ୍ୟକ, ଖୁବ୍ କଠିନ ସେ ଟ୍ରେନିଂ । ସେହିପରି ସତ୍ୟାଗ୍ରହ ପାଇଁ ମଧ୍ୟ ଟ୍ରେନିଂ ଆବଶ୍ୟକ । x x ତାହାକୁ ହିଁ ସ୍ୱରାଜ୍ୟ ସାଧନା ବୋଲି କୁହାଯାଉଛି ।"

ଶାସନ କ୍ଷେତ୍ରରେ ସହରକୁ ପ୍ରାଧାନ୍ୟ ଦିଆଯାଇ ଗାଁକୁ ଅବହେଳିତ କରାଯାଉଥିବାର ମହତାବ ଉପନ୍ୟାସର ନାୟକ ରାମଶଙ୍କରଙ୍କ ମାଧ୍ୟମରେ ପ୍ରକାଶ କରିଛନ୍ତି - "ଓଡ଼ିଶା କହିଲେ କେବଳ କଟକ, ପୁରୀ, ଭୁବନେଶ୍ୱର ବୁଝାଏ ନାହିଁ । କଟକ ଓ ଭୁବନେଶ୍ୱରରେ ବସି ଯେଉଁ

ଓଡ଼ିଶା ବିଷୟ ଆଲୋଚିତ ହୁଏ, ତାହା କଳାହାଣ୍ଡି, କୋରାପୁଟରେ ଲୋକେ ବୁଝନ୍ତି ନାହିଁ ବା କଳାହାଣ୍ଡି, କୋରାପୁଟରେ ରାଜ୍ୟର ଯେଉଁ ଅବସ୍ଥା ବିଷୟ ଆଲୋଚିତ ହୁଏ, ତାହା କଟକ, ଭୁବନେଶ୍ୱରର ଲୋକେ ବୁଝନ୍ତି ନାହିଁ । ଓଡ଼ିଶା ଏକ କ୍ଷୁଦ୍ର ପ୍ରଦେଶ । xxx ଭାରତ କେତେ ବଡ଼ ଦେଶ । x x ଯେତେବେଳେ ଦେଶର ବା ପ୍ରଦେଶର ସମସ୍ୟା କଥା ଚିନ୍ତା କରୁ, ସେତେବେଳେ ସବୁ ବାୟ ଅଞ୍ଚଳକୁ ମନ ଭିତରେ ରଖାଯିବା ଆବଶ୍ୟକ । x x ଭାରତ ସରକାର ମନେ କରନ୍ତି ଦିଲ୍ଲୀ ହେଉଛି ଭାରତବର୍ଷ । ଓଡ଼ିଶା ସରକାର ମନେ କରନ୍ତି ଭୁବନେଶ୍ୱର ହେଉଛି ଓଡ଼ିଶା । ଦିଲ୍ଲୀ, ଭୁବନେଶ୍ୱରରେ ଯେତେବେଳେ କୋଠା ପରେ କୋଠା ତିଆରି ଚାଲିଛି, ସ୍କୁଟର, ମଟର ଧାଁ ଦଉଡ଼ କରୁଛି, ସରକାରୀ ଦୋକାନରୁ ଚାଉଳ, ଚିନି ଶସ୍ତାରେ ମିଳୁଛି, ସେତେବେଳେ ଦେଶରେ ଯେ ଦରିଦ୍ରତା ଘାରି ଯାଉଛି, ତାହା ସରକାରଙ୍କ ବିଚାରକୁ ଆସୁନାହିଁ । ଦେଶର ପ୍ରାଣକେନ୍ଦ୍ର ହେଉଛି ସେହି ଅଞ୍ଚଳ, ଯେଉଁଠି ଲୋକମାନେ ପିଇବା ପାଇଁ ମୁନ୍ଦାଏ ପାଣି ପାଉନାହାନ୍ତି, ଦିନସାରା ଖଟି ଖଟି ମଧ ପେଟପୁରା ଗଣ୍ଡେ ଖାଇବାକୁ ପାଉନାହାନ୍ତି, ଯେଉଁଠି ଶରୀରରକ୍ଷା ପାଇଁ ଖାଇବା କହିଲେ ବୁଝାଏ ମୁଠାଏ ଚାଉଳ, ଯାହା ସହଜରେ ମଧ ମିଳେ ନାହିଁ, ଡାଲି ଭାତ କହିଲେ ଯେଉଁଠି ଭୋଜି ବୁଝାଏ, ଯେଉଁଠି ଲାଞ୍ଚ ନ ଦେଲେ ଥାନା ସବ୍‌ଇନ୍‌ସପେକ୍ଟର, ତହସିଲଦାର ବା କେହି ସରକାରୀ କର୍ମଚାରୀ କଥା ପଦେ ଶୁଣନ୍ତି ନାହିଁ, ଯେଉଁଠି ପଞ୍ଚାୟତରାଜ ନାମରେ ସରପଞ୍ଚଙ୍କ ଜୁଲମ ଚାଲିଛି; ଯେଉଁଠି ରୋଗ ବ୍ୟାଧି ହେଲେ ଔଷଧ ପାଣି ଟିକିଏ ଦେବା ପାଇଁ କେହି ନାହାନ୍ତି, ଯେଉଁଠି ବଞ୍ଚି ରହିବା ପାଇଁ ଏକମାତ୍ର ଭଗବାନ ଭରସା, ସେଇଠି ଦେଶର ପ୍ରାଣକେନ୍ଦ୍ର ।"

ଗ୍ରାମ ଉନ୍ନୟନ କ୍ଷେତ୍ରରେ ଛାତ୍ରମାନଙ୍କ ଭୂମିକା ସମ୍ପର୍କରେ ରାମଶଙ୍କରଙ୍କ ବକ୍ତବ୍ୟ ହେଉଛି ଲେଖକ ମହତାବଙ୍କ ବକ୍ତବ୍ୟ- "ଏହି ଅବସ୍ଥାରେ ଶିକ୍ଷିତ ଯୁବକ ଗ୍ରାମବାସୀଙ୍କ ପାଖରେ ରହି ତାଙ୍କ ମୁହଁରେ ଭାଷା ଦେବା କଅଣ କର୍ତ୍ତବ୍ୟ ନୁହେଁ ? ଯାହା ହୋଇଯାଉ ପଛକେ ଆମେ ଶିହରରେ ମରିବୁ ନାହିଁ, ବଞ୍ଚିରହିବୁ- ଯଦି ମରିବୁ ତେବେ ବଞ୍ଚିବା ପାଇଁ ମରିବୁ, ଏ ସାହସ ଦେବା କଅଣ ସଂଗ୍ରାମୀ ଯୁବକଙ୍କ କର୍ତ୍ତବ୍ୟ ନୁହେଁ ? ସହରରେ ସଭା, ଶୋଭାଯାତ୍ରା କରି ଏ ବୁଭୁକ୍ଷୁ ଜନତାଙ୍କ ମୁହଁରେ ଭାଷା ଦେବ କିପରି, ତାଙ୍କ ମନରେ ସାହସ ଦମ୍ଭ ସଂଚାର କରିବ କିପରି ?"

ଜାତୀୟ ନେତା ବୋଲାଉଥିବା ଜାତୀୟତା-ବିରୋଧୀ ନେତାମାନଙ୍କ ସମ୍ପର୍କରେ ସୀତା ରାମେୟାଙ୍କ ମାଧ୍ୟମରେ ମହତାବ ପ୍ରକାଶ କରିଛନ୍ତି- ଜାତୀୟ ସ୍ୱାର୍ଥ ତ ଦୂରର କଥା, ଗ୍ରାମର ସ୍ୱାର୍ଥ ନୁହେଁ, ଦଳର ସ୍ୱାର୍ଥ, ଏ ମନର ଅତି ଗଭୀର ଦେଶରେ ରହିଛି ନିଜର ବ୍ୟକ୍ତିଗତ ସ୍ୱାର୍ଥ । ସେଇ ହେଉଛି ଆମର ଦୋଷ, ସେଇ ଦୋଷରେ ଆମ ରକ୍ତ ଦୂଷିତ, କଳୁଷିତ । ଜାତୀୟ ସ୍ୱାର୍ଥ ବା ପ୍ରାଦେଶିକ ସ୍ୱାର୍ଥ-ବଦଳା ତଳେ ବ୍ୟକ୍ତିଗତ ସ୍ୱାର୍ଥର ପୂଜ ରହିଛି ।

ସ୍ୱାଧୀନତାର ତିନୋଟି ପର୍ବ ପାଇଁ ଔପନ୍ୟାସିକ ମହତାବ୍ ଉପନ୍ୟାସର ଉପସଂହାରରେ ବିବେକାନନ୍ଦ, ମହାତ୍ମା ଗାନ୍ଧୀ ଓ ରବୀନ୍ଦ୍ରନାଥ- ଏହି ତିନିଜଣ ମହାନ୍ ପୁରୁଷଙ୍କର ତିନୋଟି ବାଣୀକୁ ଉଦ୍ଧାର ଓ ବିଶ୍ଳେଷଣ କରିଛନ୍ତି । ଏହି ତିନୋଟି ବାଣୀକୁ ସ୍ୱାଗତ କରିବା ମୂଳରେ ରହିଛି ଏଗୁଡ଼ିକ ସହିତ ନିଜ ରାଜନୀତି ଦର୍ଶନର ସାମ୍ୟ । ବିବେକାନନ୍ଦଙ୍କର ବାଣୀଟି ହେଉଛି ପ୍ରଥମ ପର୍ବର ମନ୍ତ୍ର- "Liberty of thought and action is the only condition of life of growth and wellbeing, where it does not exist, the mass, the race, the nation must go." ଅର୍ଥାତ୍ "ଜୀବନ ଧାରଣ, ଏହାର ବିକାଶ ଏବଂ ଅଭିବୃଦ୍ଧି ପାଇଁ ଚିନ୍ତା ଏବଂ କାର୍ଯ୍ୟର ସ୍ୱାଧୀନତା ଆବଶ୍ୟକ । ଯେଉଁଠି ଏହା ନାହିଁ ସେଠି ମନୁଷ୍ୟ, ସମାଜ ଏବଂ ଜାତି ଅବଶ୍ୟ ଧ୍ୱଂସ ପାଇଯିବ ।" ଦ୍ୱିତୀୟ ପର୍ବରେ ମଧ ଏହି ମନ୍ତ୍ର ତା'ର ପ୍ରଭାବ ହରାଇ ନଥିଲା । ଦ୍ୱିତୀୟ ପର୍ବର ପୁରୋଧା ଜବାହରଲାଲ ନେହରୁ ସର୍ବତ୍ର ଏହାକୁ ହିଁ ପ୍ରଚାର କରୁଥିଲେ ।

ଗାନ୍ଧିଜୀଙ୍କ ମୂର୍ତ୍ତିର ଗମ୍ଭୀର ସ୍ମିତ ମୁଖରୁ ଔପନ୍ୟାସିକ ଅଶରୀ ବାଣୀର ଝଙ୍କାର ତୋଳିଛନ୍ତି- "ଭୟ ନାହିଁ, ଏ ପର୍ବର ଅବସାନ ଶୀଘ୍ର ଘଟିବ । ନିର୍ଭୟ ହୋଇ ଏହାର ସମ୍ମୁଖୀନ ହୁଅ ।" ତୃତୀୟ ପର୍ବରେ ଦେଖାଦେଇଥିବା ଗଣତାନ୍ତ୍ରିକ ସଙ୍କଟରେ ଭାଙ୍ଗି ନ ଯିବା ପାଇଁ ଜନତାକୁ ମହତାବଙ୍କର ଏହା ହିଁ ଅଗ୍ନିମନ୍ତ୍ର । ସେହି ଲକ୍ଷ୍ୟରେ ହିଁ ସେ ପୁଣି ଉଦ୍ଧାର କରିଛନ୍ତି ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ପଙ୍କ୍ତି-"କେଟେ ଯାବେ ମେଘ, ନବୀନ ଗରିମା ଭାତିବେ ଆବାର ଲଲାଟେ ତୋମାର" ଅର୍ଥାତ୍ "କଟିଯିବ ମେଘ, ନବୀନ ଗରିମା ଭାତିବ ପୁଣି ତୋ' ଲଲାଟ ପଟେ ।" ୧୯୭୫ ମସିହାରେ ଘୋଷିତ ଜରୁରୀକାଳୀନ ଶାସନ ସମ୍ପର୍କରେ ମହତାବ କଟୁ ସମାଲୋଚନା କରିଛନ୍ତି - "ଏ ଏକ ପରିସ୍ଥିତି ଯାହା ସ୍ୱାଧୀନତା-ପୁରାଣର ପ୍ରଥମ ବା ଦ୍ୱିତୀୟ ପର୍ବରେ ତତ୍‌କାଳୀନ ନେତୃବର୍ଗଙ୍କ କଳ୍ପନାର ବାହାରେ ଥିଲା । x x ଦେଶର ଅସ୍ୱାଭାବିକ ପରିସ୍ଥିତିରେ ସମ୍ବିଧାନରେ ଯେଉଁ ଆପତ୍‌କାଳୀନ ବ୍ୟବସ୍ଥା ଅଛି, ତାହା ରାଷ୍ଟ୍ରପତିଙ୍କ ଦ୍ୱାରା ହଠାତ୍ ଜାରି ହୋଇଗଲା । ମୌଳିକ ଅଧିକାର ସବୁ ଚାଲିଗଲା । ସ୍ୱାଧୀନ ମତ ବ୍ୟକ୍ତ କରିବାର ବା ସ୍ୱାଧୀନ ଭାବରେ କୌଣସି କାର୍ଯ୍ୟାନୁଷ୍ଠାନ କରିବାର ଅଧିକାର ଚାଲିଗଲା । ସଭା ସମିତି, ସମ୍ବାଦପତ୍ରମାନଙ୍କରେ ସମ୍ବାଦ ପରିବେଷଣ ସବୁକୁ ବନ୍ଦ କରି ଦିଆଗଲା ।" -

ନିଜେ ମହତାବ ୧୯୭୫ ମସିହାର ଜରୁରୀକାଳୀନ ଶାସନର ଶିକାର ହୋଇଥିଲେ । ପ୍ରାର୍ଥନା କରୁଥିବା ଅବସ୍ଥାରେ ଦିନେ ପ୍ରତ୍ୟୁଷରେ ଅପ୍ରତ୍ୟାଶିତ ଭାବରେ ସେ ଗିରଫ୍‌ଦାର ହୋଇଗଲେ । ରାମଶଙ୍କର ଚରିତ୍ର ନିଜ କଥା କହିବା ପାଇଁ ହିଁ ମହତାବ ସୃଷ୍ଟି କରିଛନ୍ତି । "ଯେଉଁ ଦିନ ଆପତକାଳୀନ ବ୍ୟବସ୍ଥା ଜାରି ହେଲା ସେହିଦିନ ପ୍ରତ୍ୟୁଷରେ ରାମଶଙ୍କର ଗିରଫ୍‌ଦାର ହୋଇଗଲେ । ରାମଶଙ୍କର ପ୍ରାର୍ଥନାରେ ବସିଥିଲେ, x x ପୋଲିସ୍ ଦଳ ଯାଇ ଖବର ଦେଲେ ସେ ଗିରଫ୍‌ଦାର ହେଲେ ବୋଲି । ପ୍ରାର୍ଥନା ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିବାପାଇଁ ରାମଶଙ୍କର ଅନୁରୋଧ କଲେ । ପୋଲିସ୍ ଅନୁଗ୍ରହ କରି ଏଥିରେ ରାଜି ହେଲେ"- ଏ ବର୍ଣ୍ଣନା ମହତାବଙ୍କ ନିଜ ଜୀବନର ବାସ୍ତବ ଘଟଣା ।

ତେଣୁ 'ତୃତୀୟ ପର୍ବ'ରେ ପରିବେଷିତ ରାଜନୀତିକ ଦର୍ଶନ ହେଉଛି ମହତାବଙ୍କ ନିଜସ୍ୱ ।

ଉପନ୍ୟାସ '୧୯୭୫' ର ପ୍ରକାଶ କାଳ ୧୯୭୯ । ମୁଖ୍ୟତଃ '୧୯୭୫' ମସିହାର ଜରୁରୀକାଳୀନ ଶାସନକୁ ଭିତ୍ତି କରି ଉପନ୍ୟାସଟି

ଚର୍ଚ୍ଚିତ ହୋଇଥିଲେ ହେଁ ଏହି କାଳର କିଛି ପୂର୍ବ ଓ କିଛି ପର ବର୍ଷର ରାଜନୀତିକ ଚିତ୍ର ଏଥିରେ ଅଙ୍କିତ । 'ତୃତୀୟ ପର୍ବ' ପରି ଏଥିରେ ମଧ କ୍ଷମତାସୀନ ଗୋଷ୍ଠୀ, କ୍ଷମତା ଠାରୁ ଦୂରରେ ଥିବା ସ୍ୱାଧୀନତାସଂଗ୍ରାମୀ ଓ ଅସନ୍ତୁଷ୍ଟ ଯୁବଗୋଷ୍ଠୀ ମଧ୍ୟରେ ଦୈନନ୍ଦିନ ସଂଘର୍ଷ ରୂପାୟିତ ।

ବିଭିନ୍ନ ଚରିତ୍ର ମାଧ୍ୟମରେ ଡଃ ମହତାବ ରାଜନୀତିର ସ୍ୱରୂପ, ସାଂପ୍ରତିକ ରାଜନୀତିରେ ଗଣତନ୍ତ୍ରର ଅଧଃପତନ ପ୍ରଭୃତି ସମ୍ପର୍କରେ ବହୁ ମତ ଓ ମନ୍ତବ୍ୟ ପ୍ରଦାନ କରିଛନ୍ତି । ଯଥା - "ଯେଉଁ ସଂଘର୍ଷରେ ଲୋକର ସତ୍‌ସାହସ ଲୋପ ପାଏ, ସେ ସଂଘର୍ଷକୁ ତ୍ୟାଗ କରିବା ହିଁ ଶ୍ରେୟସ୍କର ।" x x "ଛାତ୍ରମାନଙ୍କ ଭିତରେ ବହୁ ଦଳ, ବହୁ ଗୋଷ୍ଠୀ । ଗୋଟିଏ ଦଳ ନିନ୍ଦା କଲେଣି ତ ଅନ୍ୟ ଦଳଟି ପ୍ରଶଂସା କଲେଣି । ଛାତ୍ରମାନଙ୍କ ମଧ୍ୟରେ ଆଉ କୌଣସି ମତବାଦର ସ୍ଥାନ ନାହିଁ । ଅଧିକାଂଶ, ପ୍ରାୟ ଶତକଡ଼ା ନବେ, ପାଠପଢ଼ି ଘର ସଂସାର କରିବାରେ ଆଗ୍ରହୀ । ସେମାନେ ସଭା ସମିତିରେ ମୂକ । କିନ୍ତୁ ସେମାନଙ୍କ ନାମରେ ଯେଉଁମାନେ ତଥାକଥିତ ଛାତ୍ର ଆନ୍ଦୋଳନ କରନ୍ତି, ସେମାନେ ବିଭିନ୍ନ ରାଜନୈତିକ ନେତାଙ୍କର ଆଶ୍ରୟରେ ଚାଲିଥାନ୍ତି । ନେତାଙ୍କ ଭିତର ବିବାଦ ଆସି ପହଞ୍ଚେ ଛାତ୍ରଙ୍କ ଭିତରେ ।" x x "ନିର୍ଭୟ ଓ ନିର୍ଲୋଭ ହେଲେ ଜଣେ ହିଂସାର ଆଶ୍ରୟ ନ ନେଇ ମଧ ଲୋକକଲ୍ୟାଣ ସାଧନ କରିପାରେ । ବିଶେଷତଃ ଆଜି ସ୍ୱାଧୀନ ଦେଶରେ ଲୋକପ୍ରତିନିଧିମୂଳକ ଶାସନ ଚାଲିଥିବା ଅବସ୍ଥାରେ ନିର୍ଭୟତା ଓ ନିର୍ଲୋଭତା ହିଁ କାର୍ଯ୍ୟକାରୀ ହେବ । ସେଥିପାଇଁ ହିଂସାର ଆବଶ୍ୟକତା ନାହିଁ । ଆବଶ୍ୟକ ହେଉଛି ସଂଗଠନ ।" x x "ସ୍ରୋତରେ (ସ୍ୱାଧୀନତା-ସଂଗ୍ରାମ-ସ୍ରୋତରେ) ଥିଲା ସମସ୍ତଙ୍କର ସୀମାବଦ୍ଧ ଅଭିଳାଷ ଓ ସୀମିତ ଲକ୍ଷ୍ୟ-ଦେଶର ସ୍ୱାଧୀନତା, କିନ୍ତୁ ସ୍ୱାଧୀନତା ପରେ ଜାଗ୍ରତ ହେଲା ସମସ୍ତଙ୍କର ବ୍ୟକ୍ତିଗତ ଅଭିଳାଷ, ଅଭିଳାଷ ପରିପୂର୍ଣ୍ଣ ପାଇଁ ହେଲା ପ୍ରତିଦ୍ୱନ୍ଦ୍ୱିତା- ଏଥିପାଇଁ ଆବଶ୍ୟକ ହେଲା ଚତୁରତା, ଅର୍ଥ ଏବଂ ବୈଷୟିକ ଜ୍ଞାନ ।"

ବାଳକୃଷ୍ଣଙ୍କ କଣ୍ଠରେ ହରେକୃଷ୍ଣ ମହତାବଙ୍କର ଆତ୍ମାର ବାଣୀ ସଂଧ୍ୱନିତ ହୋଇଛି-"ସମାଜର ସବା ତଳେ ଯେଉଁମାନେ ପଡ଼ିଛନ୍ତି, ଯେଉଁମାନଙ୍କୁ କେହି ପଚାରୁ ନାହାନ୍ତି, ଯେଉଁମାନେ ଦିନେ କେବଳ ଗାନ୍ଧୀଙ୍କର ନାମ ଶୁଣି 'ଜୟ ମହାତ୍ମା ଗାନ୍ଧୀଙ୍କ ଜୟ' କହି ଜେଲ୍ ଯାଉଥିଲେ, ଗୁଳିରେ ବି ପ୍ରାଣ ଦେଉଥିଲେ, କେତେ ନିର୍ଯ୍ୟାତନା ସହିଥିଲେ, ସେହିମାନଙ୍କ ଭିତରେ ତାଙ୍କରି ପରି ଜଣେ ହୋଇ ଆମେ ରହିବା । ତାଙ୍କରି ପରି ମୂଲ ମଜୁରି ଲାଗି ବା ବଣର ଫଳମୂଳ ଖାଇ ରହିବା । ସବୁ ରକମର ଅତ୍ୟାଚାର ବିରୋଧରେ ଛିଡ଼ା ହେବାର ଶକ୍ତି ସେହିମାନଙ୍କ ଭିତରେ ଜାଗ୍ରତ କରାଇବା । ଏହି ହେଉଛି ମୋର କାର୍ଯ୍ୟକ୍ରମ । ଏଇଥିରେ ଆମର ଜୀବନ ଶେଷ ହୋଇଯାଉ, କିନ୍ତୁ ଆମେ ରଖିଦେଇଯିବା ପରବର୍ତ୍ତୀ ବଂଶଧରମାନଙ୍କ ପାଇଁ ଏକ ଜନକୈନ୍ଦ୍ରିକ କାର୍ଯ୍ୟକ୍ରମ ।"

୧୯୭୫ ମସିହାର ଜରୁରୀକାଳୀନ ଶାସନରେ ଗଣତାନ୍ତ୍ରିକ ମୂଲ୍ୟବୋଧର ଅବସ୍ଥା ସମ୍ପର୍କରେ 'ତୃତୀୟ ପର୍ବ' ଓ '୧୯୭୫' ଉପନ୍ୟାସରେ ସମ୍ୟକ୍ ଆଲୋଚନା ଦେଖିବାକୁ ମିଳେ । ମହତାବ ଗଣତନ୍ତ୍ରକୁ ଦୃଢ଼ କରିବା ପାଇଁ ସହାୟକ ଆଦର୍ଶ ରାଜନୀତିର ସ୍ୱରୂପ ବହୁ ସ୍ଥଳରେ ଲେଖକ ଭାବରେ ଓ ଚରିତ୍ର ମାଧ୍ୟମରେ ଉପସ୍ଥାପିତ କରିଛନ୍ତି । ମହତାବ ବିପୁଳ ଅଭିଜ୍ଞତାରେ ସେ ଯାହା ଅଙ୍କେ ଲିଭାଇଛନ୍ତି, ତାହାର ଭଲ ମନ୍ଦ ଦିଗକୁ ଅଭିଜ୍ଞାନର ଆଲୋଚନା ପରିଖି ଦେଇଛନ୍ତି, ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଯେଉଁ ସ୍ୱରାଜ୍ୟକୁ ସେ ରକ୍ତ ଦେଇ ଗଢ଼ିଛନ୍ତି, ତା'ର ବିପର୍ଯ୍ୟୟ ଦେଖି ମ୍ରିୟମାଣ ହୋଇଛନ୍ତି, କ୍ଷୁବ୍ଧ ହୋଇଛନ୍ତି । ସେଇ କ୍ଷୋଭ ପ୍ରକାଶ କରିଛନ୍ତି ଏ ଦୁଇ ଉପନ୍ୟାସରେ । ପୂର୍ବର ଚାରୋଟି ଉପନ୍ୟାସ (ନୂତନ ଧର୍ମ, ପ୍ରତିଭା, ଅବ୍ୟାପାର, ଟାଉଟର)ରେ ସ୍ୱରାଜ୍ୟ ଗଠନ ପାଇଁ ବା ସୁସ୍ଥ ସମାଜଗଠନ ପାଇଁ ଆହ୍ୱାନ ରହିଛି, କିନ୍ତୁ ଏହି ଦୁଇ ଉପନ୍ୟାସ (ତୃତୀୟ ପର୍ବ, ୧୯୭୫)ରେ ସ୍ୱରାଜ୍ୟକୁ ବଞ୍ଚାଇ ରଖିବା ପାଇଁ ବ୍ୟାକୁଳ ଆହ୍ୱାନ ରହିଛି । ଆଦର୍ଶ ମାନବବାଦ, ମନର ଶକ୍ତି ଓ ବ୍ୟକ୍ତିର କର୍ମଶକ୍ତି ହେଉଛି ମହତାବଙ୍କ ଦୃଷ୍ଟିରେ ରାଜନୀତିର ମୂଳ ଉପାଦାନ । ଏସବୁର ଉନ୍ମେଷ ଓ ବିକାଶ ପାଇଁ ମହତାବଙ୍କ ଉପନ୍ୟାସରେ ଚିରନ୍ତନ ଆବେଦନ ନିହିତ ଥିବାର ଲକ୍ଷ୍ୟ କରାଯାଏ ।

ପ୍ରଫେସର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର-୪

• • •

# ଓଡ଼ିଶାର ଡାଏରୀ: ଗାଁ ମଜ୍‌ଲିସ୍

• ଡକ୍ଟର ମନୀନ୍ଦ୍ର ମହାନ୍ତି

## ।। ଏକ ।।

'ଦାୟିତ୍ୱବୋଧ'ରୁ 'କର୍ତ୍ତବ୍ୟ'ର ସୃଷ୍ଟି ହୋଇଥାଏ । ଛୋଟ-ବଡ଼ କେତେଟି କର୍ତ୍ତବ୍ୟ ସଂପାଦନ କରି ମଣିଷ ଏହି ଦାୟିତ୍ୱ ତୁଲାଇଥାଏ । ଏହି ଦାୟିତ୍ୱ କେବଳ 'ବଚନ' ମଧ୍ୟରେ ଆବଦ୍ଧ ନୁହେଁ, 'କାର୍ଯ୍ୟ' ମଧ୍ୟରେ ବି ସୁପ୍ରସାରିତ ହୁଏ । ମଣିଷଟି ଯେତେବେଳେ ଏହି ଦାୟିତ୍ୱ ବହନ କରେ ଏବଂ ବଚନ ଓ କାର୍ଯ୍ୟ ମଧ୍ୟରେ କର୍ତ୍ତବ୍ୟ ସମ୍ପାଦନ କରେ, ସେତେବେଳେ ସେ ଦାୟିତ୍ୱବାନ ବ୍ୟକ୍ତିରେ ପରିଣତ ହୁଏ । ସେହିପରି ଜଣେ ଦାୟିତ୍ୱବାନ ବ୍ୟକ୍ତି ହେଲେ ନବ ଉତ୍କଳର ନିର୍ମାତା- ଡକ୍ଟର ହରେକୃଷ୍ଣ ମହତାବ ।

ଭାରତକୁ ଇଂରେଜ ଶାସନରୁ ମୁକ୍ତ ହେବାକୁ ପଡ଼ିବ, ସ୍ୱାଧୀନ ଭାରତରେ ନୂଆ ଶାସନ ପ୍ରତିଷ୍ଠା କରିବାକୁ ପଡ଼ିବ, ଓଡ଼ିଶା ତଥା ଭାରତରେ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ଉନ୍ନତି କରିବାକୁ ହେବ । ଏହିପରି ଗୁରୁତର ଦାୟିତ୍ୱବୋଧରୁ ବହୁ 'କର୍ତ୍ତବ୍ୟ'ର ସୃଷ୍ଟି ହୋଇଛି । ନିଜ ଜୀବନକୁ ଦେଶର ସ୍ୱାଧୀନତା ପ୍ରାପ୍ତି ପାଇଁ ସେ କେବଳ ବିନିଯୋଗ କରିନାହାନ୍ତି, ସେଥିପାଇଁ କାରାବରଣ କରିଛନ୍ତି । ଦଣ୍ଡ ଭୋଗିଛନ୍ତି । ନିଜର ପ୍ରାଚୁର୍ଯ୍ୟମୟ ଜୀବନକୁ ତ୍ୟାଗର ମରୁଭୂମିରେ ବିତାଇ ଦେଇଛନ୍ତି । କେବଳ ସେତିକିରେ ତାଙ୍କର କର୍ତ୍ତବ୍ୟ ସରି ନାହିଁ । 'ଦାୟିତ୍ୱବୋଧର' ଅନୁରୋଧରେ ସେ ପ୍ରହରୀ ପରି ଦେଶକୁ ଜଗିବସିଛନ୍ତି । ଏହିପରି ଏକ ଦାୟିତ୍ୱବୋଧର ଅନୁରୋଧରେ ଡକ୍ଟର ହରେକୃଷ୍ଣ ମହତାବ 'ଗାଁ ମଜଲିସ୍' ପରି ଏକ ସାପ୍ତାହିକ ସ୍ତମ୍ଭ 'ପ୍ରଜାତନ୍ତ୍ର', ସମ୍ବାଦପତ୍ରରେ ଆରମ୍ଭ କରିଥିଲେ ।

'ମଜଲିସ୍' ହେଲା- ଏକ ଯାବନିକ ଶବ୍ଦ । ଏହାର ଅର୍ଥ- ସଭା ବା ସମାରୋହ । ଗାଁ ଲୋକମାନଙ୍କ ସଭାକୁ 'ଗାଁମଜଲିସ୍' କୁହାଯାଏ । ମୋଗଲମାନଙ୍କ ରାଜତ୍ୱ ସମୟରେ ଏହି ମଜଲିସ୍‌ର ବହୁଳ ପ୍ରଚଳନ ଥିଲା । ଏଥିରେ ମନୋରଞ୍ଜନ କାର୍ଯ୍ୟକ୍ରମ ଯୋଗ ହେଲା । ତେଣୁ, ଏହା କ୍ରମେ ଏକ ସାଂସ୍କୃତିକ ଅନୁଷ୍ଠାନରେ ପରିଣତ ହେଲା । ଓଡ଼ିଶାରେ ଓଡ଼ିଆ ନାଟକର ସୃଷ୍ଟି କ୍ଷେତ୍ରରେ ଏହି ସବୁ ମଜଲିସ୍‌ର ଏକ ବିଶେଷ ଅବଦାନ ରହିଛି ବୋଲି ନାଟ୍ୟ ସମୀକ୍ଷକମାନେ ମତ ଦେଇଛନ୍ତି । ତେବେ ସେ ଯାହା ହେଉ, ଓଡ଼ିଶା ଭୂଇଁରେ ଏହି ମଜଲିସ୍ ଶବ୍ଦଟି ପରମ୍ପରାକ୍ରମେ ପ୍ରଚଳିତ ହୋଇ ଆସୁଥିଲା । ଡକ୍ଟର ମହତାବ ଏହି ଶବ୍ଦଟିକୁ ବେଶ୍ ସୁଚିହ୍ନିତ ଭାବରେ ଗ୍ରହଣ କରିଛନ୍ତି ।

କବିମଣ୍ଡଳ କୃଷ୍ଣ ପ୍ରସାଦ ବସୁ ଦିନାକେତେ 'ଝଙ୍କାର' ସାହିତ୍ୟ ପତ୍ରିକାରେ 'ଆଖଡ଼ା ଘରେ ବୈଠକ' ନାମରେ ଏକ ସ୍ଥାୟୀ ସ୍ତମ୍ଭରେ ଲେଖୁଥିଲେ । ସେଥିରେ ଓଡ଼ିଶାର ନାଟକ, ସଙ୍ଗୀତ ତଥା ନାଟ୍ୟକଳାର ପରମ୍ପରା ପ୍ରସଙ୍ଗରେ ଉଲ୍ଲେଖ କରୁଥିଲେ । 'ଗାଁ ମଜଲିସ୍' ପ୍ରସଙ୍ଗରେ ଏହି 'ଆଖଡ଼ା ଘରେ' ବୈଠକ ସ୍ଥାୟୀ ସମ୍ଭଟି ମଧ୍ୟ ପାଠକର ସ୍ମୃତିପଥକୁ ଆସେ ।

ଜନମତକୁ ସଂଗଠିତ କରିବା ପାଇଁ ବାଲେଶ୍ୱରରୁ ଡକ୍ଟର ମହତାବ 'ପ୍ରଜାତନ୍ତ୍ର' ସମ୍ବାଦପତ୍ର ପ୍ରକାଶନ ଆରମ୍ଭ କରିଥିଲେ । ପରେ ସେ ଏଥିରେ 'ଗାଁ ମଜଲିସ୍' ନାମରେ ଏକ ସ୍ଥାୟୀ ସ୍ତମ୍ଭ ନିୟମିତ ଭାବରେ ଲେଖୁଥିଲେ । ଏହି ସ୍ତମ୍ଭ ଲେଖିବାର ମୁଖ୍ୟ ଲକ୍ଷ୍ୟ କେତୋଟି ହେଲା- (୧) ଦେଶର ବର୍ତ୍ତମାନ ଅବସ୍ଥାରେ ଜନମତକୁ କିପରି ଉପଯୁକ୍ତ ଭାବରେ ପ୍ରସ୍ତୁତ କରିବାକୁ ପଡ଼ିବ । (୨) ଦେଶବାସୀମାନଙ୍କୁ ବର୍ତ୍ତମାନ ଅବସ୍ଥାର ଭୂମିକାର ଭବିଷ୍ୟତ ପାଇଁ ସତର୍କ କରାଇ ଦେବାକୁ ପଡ଼ିବ । (୩) ଯେଉଁ ସମସ୍ୟାଟି ସାମୟିକ ଭାବରେ ଦେଖା ଦେଇଛି, ତା'ର ସମୀକ୍ଷା କରାଯାଇ ସମାଧାନ ଦିଗରେ କିଭଳି ପଦକ୍ଷେପ ଗ୍ରହଣ କରାଯାଇପାରେ ? (୪) ସାଧାରଣ ଜନତା ସହିତ ସମ୍ପର୍କ ରଖି ତାଙ୍କ ସୁଖ ଦୁଃଖରେ ଭାଗନେବା ପାଇଁ ଏବଂ ସାଧାରଣ ଜନତାର ଅତି ନିକଟରେ ମୁହାଁମୁହିଁ ଭାବରେ ଉପସ୍ଥିତ ରହିବା ପାଇଁ ଡକ୍ଟର ମହତାବ ସର୍ବଦା ଚାହୁଁଥିଲେ ।

ସପ୍ତାହକୁ ଥରେ ଯେପରି ଓଡ଼ିଶାବାସୀଙ୍କୁ କିଛି କହିବା ପାଇଁ ଓହ୍ଲାଇ ଆସୁଥିଲେ । ସ୍ୱାଧୀନତା ପୂର୍ବରୁ ଲେଖିବାର ଉଦ୍ଦେଶ୍ୟ ଯାହା ଥିଲା, ସ୍ୱାଧୀନତା ପରେ ଲେଖିବାର ଉଦ୍ଦେଶ୍ୟର ମଧ୍ୟ କିଛି ପରିବର୍ତ୍ତନ ଘଟିଲା । ସ୍ୱାଧୀନତା ପୂର୍ବରୁ ଇଂରେଜ ସରକାର ବିରୋଧରେ ଲେଖୁଥିଲେ । ମାତ୍ର ସ୍ୱାଧୀନତା ପରେ ପରେ ସ୍ୱାଧୀନଦେଶର ରାଜନୀତି, ସମାଜ ନୀତି, ଅର୍ଥନୀତି ଏବଂ ସାଂସ୍କୃତିକ ଜୀବନ ବିଷୟରେ ଲେଖୁଥିଲେ । କେଉଁଠି ସେ ବିରୋଧରେ ମତ ପ୍ରକାଶ କରୁଥିଲେତ କେଉଁଠି ସେ ସପକ୍ଷରେ ମତପ୍ରକାଶ କରୁଥିଲେ । କେଉଁଠି ସେ ପ୍ରସ୍ତାବମାନ ଦେଉଥିଲେତ କେଉଁଠି ଦୋଷ ଦୁର୍ବଳତା ସାଧାରଣରେ ପ୍ରକାଶ କରୁଥିଲେ । ଏଥିପାଇଁ ଗାଁ ମଜଲିସ୍ ପାଇଁ ସ୍ୱାଧୀନତା ଲାଭର ବହୁବର୍ଷ ପରେ ମଧ୍ୟ ତାଙ୍କର ନିର୍ଦ୍ଦିଷ୍ଟ ପାଠକ ମହଲ ଥିଲା । ଏମାନେ ସ୍ୱାଧୀନତା ସଂଗ୍ରାମୀ ହୋଇପାରନ୍ତି ବା ଗ୍ରାମବାସୀ ହୋଇପାରନ୍ତି ।

ଏହି 'ଗାଁ ମଜଲିସ୍' ଏକ ନିର୍ଦ୍ଦିଷ୍ଟ ସମୟର ବିଷୟ, ସମସ୍ୟାକୁ ଲକ୍ଷ୍ୟକରି ରଚିତ ହେଲେ ମଧ୍ୟ ତା' ମଧ୍ୟରେ ସାର୍ବକାଳୀନ ମୂଲ୍ୟ ମଧ୍ୟ ରହିଯାଇଛି । ତେଣୁ ସେଗୁଡ଼ିକ ମଧ୍ୟରୁ ମନୋନୀତ କରି କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍‌ର ପ୍ରକାଶକ ଶ୍ରୀ ଅନନ୍ତ ମିଶ୍ର ତାକୁ ତିନିଗୋଟି ଖଣ୍ଡରେ ପ୍ରକାଶ କରିଛନ୍ତି ପ୍ରଥମଖଣ୍ଡରେ ରାଜନୈତିକ (୧୯୬୬), ଦ୍ୱିତୀୟ ଖଣ୍ଡରେ ସାମାଜିକ (୧୯୬୮) ଏବଂ ତୃତୀୟ ଖଣ୍ଡରେ 'ଶାସନନୀତି' (୧୯୮୦) ପ୍ରସଙ୍ଗରେ ସଂଗ୍ରହ କରିଛନ୍ତି । ଏଥିରେ ସ୍ୱାଧୀନତା ପରବର୍ତ୍ତୀ ସମୟ ୧୯୬୪ ମସିହାରୁ ୧୯୬୮ ମସିହା ମଧ୍ୟରେ ଥିବା ଗାଁ ମଜଲିସ୍‌ଗୁଡ଼ିକରୁ ସୁନିର୍ବାଚିତ କେତୋଟି 'ଗାଁ ମଜଲିସ୍'କୁ ସଂଗ୍ରହ କରାଯାଇଛି । ଏହି ସବୁ ଲେଖା ବର୍ତ୍ତମାନ ପାଇଁ ଉଦ୍ଦିଷ୍ଟ ପରି ମନେ ହେବ ।

## ।। ଦୁଇ ।।

'ଗାଁ ମଜଲିସ୍'ର ତିନିଖଣ୍ଡ ପୁସ୍ତକ ପାଠ କଲେ ଏହି ଲେଖାର ବିଷୟବସ୍ତୁର କ୍ଷେତ୍ରକୁ ଚାରିଗୋଟି ଭାଗରେ ବିଭକ୍ତ କରାଯାଇପାରେ । ଯଥା- (କ) ଆନ୍ତର୍ଜାତିକ କ୍ଷେତ୍ର (ଖ) ଜାତୀୟ ବା ଭାରତୀୟ କ୍ଷେତ୍ର (ଗ) ପ୍ରାଦେଶିକ ବା ଓଡ଼ିଶା କ୍ଷେତ୍ର (ଘ) ଆଞ୍ଚଳିକ କ୍ଷେତ୍ର ।

ଡକ୍ଟର ମହତାବଙ୍କ 'ଗାଁ ମଜଲିସ୍'ର ଲେଖାଗୁଡ଼ିକୁ ଲକ୍ଷ୍ୟ କଲେ ପ୍ରତ୍ୟେକ ଲେଖାରେ କେତୋଟି ଉପାଦାନ ଲକ୍ଷ୍ୟ କରାଯାଇଥାଏ । ଯଥା- (କ) ସମସ୍ୟାଟିର ଉପସ୍ଥାପନ (ଖ) ସମସ୍ୟାଟିର ବିଶ୍ଳେଷଣ (ଗ) ସମସ୍ୟାଟିର ସମାଧାନ ପାଇଁ ପ୍ରସ୍ତାବ ।

(କ) ସମସ୍ୟାର ଉପସ୍ଥାପନ- " ଦରଦାମ ଯେଉଁ ଚାରିଆଡ଼େ ଲୋକେ ହନତାଣ ହେଉଥିବାର ସମ୍ବାଦ ମିଳୁଛି । ଚାରିଆଡ଼େ ଖବର ନମିଳିଲେ ମଧ ନିଜ ଘରେ ବୁଝିଲେ ଜଣାଯିବ ଯେ କି ଅସୁବିଧାରେ ଗରିବ ଓ ମଧ୍ୟବିତ୍ତ ଶ୍ରେଣୀର ପରିବାରମାନେ ପଡ଼ିଛନ୍ତି । ଦରଦାମର ଚିତ୍ର ସମସ୍ତଙ୍କ ସାମନାରେ, ବିଶେଷତଃ କର୍ତ୍ତୃପକ୍ଷଙ୍କ ସାମନାରେ ଥିଲାପରି ମନେହେଉ ନାହିଁ ।"(ଶାସନର ଅସାଧୁତା/ତା୭/୭/୬୦ ରିଖ)

(ଖ) ବିଶ୍ଳେଷଣ-"ଜିନିଷପତ୍ରର ଦର ନିର୍ଭର କରେ ତିନୋଟି ବିଷୟ ଉପରେ -

(୧) ଟଙ୍କାକଳରୁ କେତେ ଟଙ୍କା ବା ନୋଟ ଚାଲୁ ହେବା ପାଇଁ ବାହାରୁଛି ।(୨) ଚାଷ ତଥା କଳକାରଖାନାରୁ ଉତ୍ପାଦନ କେତେ ହେଉଛି ଓ (୩) କି ଜିନିଷ କେତେ ପରିମାଣରେ କିଣିବା ପାଇଁ ଚାହୁଁଛନ୍ତି ।" ଇତ୍ୟାଦି (ଶାସନରେ ଅସାଧୁତା/ତା ୭/୭/୬୪ରିଖ)

(ଗ) ପ୍ରସ୍ତାବ-"ଟିକିନିଖିକରି ଦେଖିଲେ ଜଣାଯିବ, ଶାସନର ଭ୍ରଷ୍ଟାଚାର ମୂଲ୍ୟବୃଦ୍ଧି ପାଇଁ ମଧ ଦାୟୀ । ଏଣୁ ବିରାଟ ଯୋଜନା କାର୍ଯ୍ୟକାରୀ କରିବାକୁ ହେଲେ ନିର୍ମଳ ଶାସନ ଆବଶ୍ୟକ XXX। କିନ୍ତୁ ସାଧାରଣ ଲୋକେ ଭ୍ରଷ୍ଟାଚାରକୁ ନିନ୍ଦା ଓ ଘୃଣା ନକଲେ କେବଳ ଦମନନୀତିରେ ଭ୍ରଷ୍ଟାଚାର ଦୂର କରିବା ପାଇଁ ବିପ୍ଳବ ଘଟିଲେ ମଧ ତାକୁ ସହିବାକୁ ପଡ଼ିବ । XXX ତାହାକୁ ପରବାୟ ନକରି ଭ୍ରଷ୍ଟାଚାର ବିରୋଧରେ ଆନ୍ଦୋଳନ କରିବାହିଁ ବର୍ତ୍ତମାନ ମୁଖ୍ୟକାର୍ଯ୍ୟ ।"(ଶାସନର ଅସାଧୁତା/ତା୭/୭/୬୪ରିଖ)

ଡକ୍ଟର ମହତାବଙ୍କ ବ୍ୟକ୍ତିଗତ ଜୀବନ ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି, ସେମାନେ ସ୍ୱୀକାର କରିବେ ଯେ ସେ ଆଞ୍ଚଳିକ, ପ୍ରାଦେଶିକ, ଜାତୀୟ ତଥା ଆନ୍ତର୍ଜାତିକ ଘଟଣା ପ୍ରସଙ୍ଗରେ ବିଭିନ୍ନ ସମ୍ବାଦ /ବିବରଣୀ ସହିତ ସର୍ବଦା ପରିଚିତ ଥାନ୍ତି । ଏପରିକି ପୁରପଲ୍ଲୀର ବିଭିନ୍ନ ବ୍ୟକ୍ତିର କାର୍ଯ୍ୟ କଳାପ, ବ୍ୟବସାୟ, ଅନୁଷ୍ଠାନ ବା ବିବାହ ବା ମୃତ୍ୟୁ ବିଷୟରେ ସେ ସବୁବେଳେ ଖବର ଅନ୍ତର ବୁଝନ୍ତି, ତେଣୁ ତାଙ୍କ 'ଏକାମ୍ର ନିବାସ'କୁ କେତେ ବ୍ୟକ୍ତି ବ୍ୟଙ୍ଗରେ Information Cantre ବା ସୂଚନା କେନ୍ଦ୍ର ବୋଲି କହିଥାନ୍ତି । ସେ ପ୍ରତିଦିନ ବ୍ୟକ୍ତିଗତ ଜୀବନରେ ବିଭିନ୍ନ ଅଞ୍ଚଳର ବହୁଲୋକଙ୍କ ସମ୍ପର୍କରେ ଆସୁଥିଲେ ଏବଂ ସେମାନଙ୍କ କଥା ମଧ ମନେ ରଖି ପାରୁଥିଲେ । ତେଣୁ ଘଟଣାଗୁଡ଼ିକ ପ୍ରତି ସେ କେବଳ ପରିଚିତ ହୋଇନଥିଲେ, ଅଧିକନ୍ତୁ, ସେହି ଘଟଣା ସହିତ ନିଜେ ସଂପୃକ୍ତ ହୋଇ ପଡୁଥିଲେ । ସୁତରାଂ, ବ୍ୟକ୍ତିଗତ ଅନୁଭୂତି ବା ଅନ୍ତରଙ୍ଗଭାବବ କଥା 'ଗାଁ ମଜଲିସ୍'ରେ ବହୁପରିମାଣରେ ରୂପାୟିତ ହେଉଥିଲା ।

ଏହି ପ୍ରସଙ୍ଗରେ ୧୯୬୫ ମସିହା ମାର୍ଚ୍ଚ ୩ ତାରିଖ (ବୁଧବାର)ରେ 'ସେ ନୂତନ ଆଶା' ଶିରୋନାମାରେ ଗୋଟିଏ ସ୍ଥାନରେ ଲେଖିଛନ୍ତି, "ବହୁକାଳ ପରେ ଏ ମଜଲିସ୍‌ର ବୈଠକ । ଏଥିରେ ସୁଖ କହିବି କି ଦୁଃଖ କହିବି ନାଁ ଯାହା ଅଙ୍ଗେ ନିଭାଉଛି, ତାହା କହିବି, କିଛି ସ୍ଥିର କରିପାରୁ ନାହିଁ । ତଥାପି, ଅଙ୍ଗେ ନିଭାଉବା କଥା କହିବା ହିଁ ମଙ୍ଗଳଜନକ ହେବ ବୋଲି ଭାବୁଛି ।"

ଡ୍.ମହତାବ ବମ୍ବେରେ ରାଜ୍ୟପାଳ ଥିଲାବେଳେ ଶ୍ରୀମତୀ ମେହେଟ୍ଟା(ଶିଳ୍ପପତି)ଙ୍କ ସହିତ ନିଶା ନିବାରଣ ପ୍ରସଙ୍ଗରେ ଯେଉଁ ଘଟଣା ତାହା ବେଶ୍ ଚମକପ୍ରଦ । ସେ ରାଜ୍ୟପାଳ ଥିଲାବେଳେ ଚୋରାମଦ ବ୍ୟବସାୟ ବମ୍ବେରେ କିପରି ଚାଲିଛି, ତା'ର ନିଜେ ପରୀକ୍ଷା କରିଛନ୍ତି । ଏହି ଚୋରାମଦ ବ୍ୟବସାୟରେ ପୋଲିସ୍ ଓ ମାନ୍ୟଗଣ୍ୟ ବ୍ୟକ୍ତିମାନେ ସଂପୃକ୍ତ ଥିଲେ ବୋଲି ସେ ଜାଣିଲେ ।(ତା ୩୧।୭।୧୯୬୭ ରିଖ)

କଲିକତାରେ କିପରି ଅଶାନ୍ତି ବ୍ୟାପିଛି, ତା' ପ୍ରସଙ୍ଗରେ ସେ କଲିକତାରୁ ଥାଇ ନିଜେ ଲେଖିଛନ୍ତି-"ଯାହାକୁ ମୁଁ କଲିକତାରେ ବସି ଲେଖୁଛି । ଏଠି ଚାରିଆଡ଼େ ଯେପରି ଅଶାନ୍ତି ବ୍ୟାପିଛି ସେହି ବିଷୟ ଆଲୋଚନା ଚାଲିଛି । ଏହି ସମ୍ପର୍କରେ ଜନତା ଓ ପୋଲିସ୍ ଏମାନଙ୍କର ପରସ୍ପର ସମ୍ବନ୍ଧ ମଧ ଆଲୋଚିତ ହେଉଛି ।"(ତା୧୨/୯/୬୬ରିଖ)

ସେ ଥରେ ନିଜ ଅନୁଭବ କଥା ପ୍ରକାଶ କରିଛନ୍ତି ୧୯୬୮ ମସିହା ଜୁନ୍‌ମାସ ୩୦ ତାରିଖରେ(ଲୋକଙ୍କ ମୁଖରୁ ପଦେ)-"ମୁଁ ନିଜେ ଅନୁଭବ କଲିଣି ଯେ ଆମେ ଯେଉଁମାନେ ରାଜନୀତି କରୁଛୁ, ଆମଠାରୁ କ୍ରମେ ଲୋକଙ୍କ ଆସ୍ଥା ତୁଟି ଯାଉଛି । କାରଣ, ଲୋକେ ଯେଉଁଥିପାଇଁ ବ୍ୟସ୍ତ ଓ ଉଦ୍‌ବିଗ୍ନ, ସେଥିପ୍ରତି ଆମର ବେଶି ଦୃଷ୍ଟି ନ ରହି ଆମର ଦୃଷ୍ଟି ରହୁଛି ଅଳ୍ପ କେତେକ କହି ବୋଲି ପାରିବା ବା ଆନ୍ଦୋଳନ କରି ପାରିବା ଶ୍ରେଣୀ ଉପରେ । ସାଧାରଣ ଲୋକଙ୍କ ସ୍ୱର ଆମ କାନ ପର୍ଯ୍ୟନ୍ତ ଆସୁନାହିଁ । ଆମ ଚାରିପାଖେ ଯେଉଁମାନେ ଖୋଳ କରତାଳ ପିଟୁଛନ୍ତି, ତାହାକୁ ହିଁ ଆମେ ଶୁଣୁଛୁ ।"

"ଗାଁ ମଜଲିସ୍‌ରେ ଯଦିଓ ଓଡ଼ିଶାର ସାମ୍ପ୍ରତିକ ସମସ୍ୟାକୁ ଅଧିକ କରି ଲେଖାଯାଇଛି, ତଥାପି ବିଭିନ୍ନ ଉତ୍ସବ ଉପଲକ୍ଷେ ବା ପ୍ରସଙ୍ଗରେ ଲେଖି ଲେଖି ଗୋଟିଏ ଗୋଟିଏ ପ୍ରବନ୍ଧ ବା ଆଲୋଚନାରେ ପରିଣତ ହୋଇଯାଇଛି । ଉଦାହରଣ ସ୍ୱରୂପ-

ଶ୍ରୀଜଗନ୍ନାଥଙ୍କ ସହ ଚିଠିପତ୍ର-ତା ୩୦/୬/୧୯୬୭ରିଖ

ପ୍ରଜାଙ୍କଟି-ତା ୨୮/୯/୧୯୬୮ ରିଖ

ଛଉନାଚ ସମ୍ବନ୍ଧରେ(ବିଷୁବର ଆହ୍ୱାନ)-ତା ୧୪/୪/୧୯୭୦ରିଖ

ଜଗର୍ଣ୍ଣାଥ-ତା୨୧/୬/୧୯୭୩ରିଖ

ଭାରତରେ ଶ୍ରମଜୀବୀର ଭୂମିକା-ତା ୪/୮/୧୯୬୮ରିଖ

ଗୋହତ୍ୟାର ତାତ୍ତ୍ୱିକ ଆଲୋଚନା-ତା ୨୧/୧୦/୧୯୬୬ରିଖ

ଗୋଟିଏ ପଦନର ରୂପ-(ଜର୍ଣ୍ଣାଥ)-

"ଇଂରେଜ ଭାଷାକୁ ଓଡ଼ିଶାର ସର୍ବଶ୍ରେଷ୍ଠ ଅବଦାନ ହେଉଛି ଜଗନ୍ନାଥ ଶବ୍ଦଟି । ଯେତେବେଳେ ଓଡ଼ିଆ ଭାଷା ସଂସ୍କୃତ ଭାଷାରେ ଦ୍ୱାରା ଆକ୍ରାନ୍ତ ହୋଇନଥିଲା, ସେତେବେଳେ ଲୋକେ 'ଜଗର୍ଣ୍ଣାଥ'(ଜଗନ୍ନାଥ) ବା 'ଜଗନାଥ' ବୋଲି କହୁଥିଲେ ।

ଲୋକେ ଯାହା କହୁଥିଲେ ତଦନୁସାରେ ଶବ୍ଦଟି ସେହିପରି ଇଂରେଜ ଭାଷାକୁ ଯାଇ ତା'ର ଇଂରେଜି ବନାନ ମଧ୍ୟ ସେହିପରି ହୋଇଗଲା । ଇଂରେଜି ଅଭିଧାନରେ 'ଜଗର୍ଣ୍ଣାଥ' ଶବ୍ଦର ମୂଳ ଇତିହାସ ଦିଆହୋଇଛି । ଏକ ସମୟରେ ଭକ୍ତମାନେ ସ୍ୱର୍ଗଲାଭ ବିଶ୍ୱାସରେ ଜଗନ୍ନାଥଙ୍କର ରଥଚକ ଆଗରେ ପଡ଼ିଯାଇ ନିଜକୁ ପେଷି ଦେଉଥିଲେ ।"

(ତା ୨୧/୬/୭୭ ରିଖ/ସୋମବାର)

ଏକ କଲାତ୍ମକ ଢଙ୍ଗ ମଧ୍ୟରେ ସେ 'ଶ୍ରୀଜଗନ୍ନାଥଙ୍କ ସହ ଚିଠିପତ୍ର' ଦେଇଛନ୍ତି- "ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରୀଚରଣ କମଳେଷୁ

ମହାପ୍ରଭୁ,

ନିତିପ୍ରତି ପ୍ରାର୍ଥନାରେ ମୋ ମନୋଭାବ ଜଣାଉଛି । ତୁମେ ତ ଶୁଣି ନଶୁଣିଲାପରି ହୋଇ ରହିଛ । ମୁଁ କଅଣ ତୁମକୁ ଜଣାଉଛି ତା' ଲୋକେ ଜାଣିପାରୁନାହାନ୍ତି । ତୁମେ କିଛି କହୁଛ କି ନକହୁଛ, ତାହା ମଧ୍ୟ କେହି ଜାଣିପାରୁ ନାହାନ୍ତି । ଏଣୁ ଏ ପତ୍ର । ଚିଠିଟି ପାଇ ଉତ୍ତର ଦେବ । ମୋ ଚିଠି, ତୁମର ଉତ୍ତର ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଲେ ତୁମ କଥା ସ୍ପଷ୍ଟ ଜଣାପଡ଼ିବ । କେତେକାଳ ଆଉ ମୂକ ହୋଇ ବସିଥିବ ?"

(ତା ୩୦/୬/୧୯୬୫ରିଖ)

'ଗାଁ ମଜଲିସ୍' ସ୍ତମ୍ଭରେ ରଚିତ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ଲେଖାଗୁଡ଼ିକର କେତେକ ସମୟରେ ସ୍ୱତନ୍ତ୍ର ନାମକରଣ କରାଯାଇଛି । ଏହି ନାମଗୁଡ଼ିକ ମଧ୍ୟରୁ କେତୋଟି ନାମ ସୂଚନାଧର୍ମୀ-ଯଥା-ନୂତନ ଆଶା, ସମୟର ଗତି, ଆନ୍ଦୋଳନମୟ ହେଉ, ନାଉରୀ ନଥାଇ ନାଆ-ପ୍ରଭୃତି ।

କେତେକ ନାମକରଣରେ ପ୍ରବଚନକୁ ଗ୍ରହଣ କରାଯାଇଛି । ଯଥା- ଅଡ଼ିଲେଣୁ ଚିପୁଡ଼ିଲେ ପିତା, ମାନିଲେ ଠାକୁର-ନ ମାନିଲେ ପଥର, ଗାଁ ପଡ଼ିମଲ ଧୋବାତୁଠରୁ, ମାର ମାର ଭଣ୍ଡାରିଆକୁ ମାର ।

'କଥନଶୈଳୀ' ହିଁ 'ଗାଁ ମଜଲିସ୍'ର ପ୍ରାଣ । ବଡ଼ ବଡ଼ ସମସ୍ୟାକୁ ସାଧାରଣ ଲୋକଙ୍କୁ ବୁଝାଇବା ପାଇଁ ଏହି କଥନଶୈଳୀ ସାହାଯ୍ୟ କରିଥାଏ । ଦୃଷ୍ଟାନ୍ତ ସ୍ୱରୂପ-"କାମ ନାହିଁ, ଜିନିଷ ପତ୍ର ଦର ବେଶି, ବିଶେଷତଃ ଖାଦ୍ୟ ଜିନିଷର ଦର ବଢ଼ି ବଢ଼ି ଚାଲିଛି । ଏହି କାରଣ ହେତୁରୁ ବହୁ ଅଞ୍ଚଳରେ ଓଲଟି ଅବସ୍ଥା ସୃଷ୍ଟି ହୋଇଛି । ଏ ଅବସ୍ଥାରେ କଅଣ କରାଯାଇପାରେ ଚିନ୍ତା କରିବାକୁ ହେବ । ସବୁ ଅଞ୍ଚଳକୁ ଶସ୍ତାରେ ଚାଉଳ, ଗହମ ଯୋଗାଇ ଦେବା ସମ୍ଭବ ନୁହେଁ, କାରଣ ସେତେ ପରିମାଣରେ ଖାଦ୍ୟ ଜିନିଷ ସରକାରଙ୍କ ହାତରେ ନାହିଁ ।

(ତା ୨୪/୭/୭୪ରିଖ/ବୁଧବାର/କଅଣ କରାଯାଇପାରେ ?)

ଭାଷାରେ ସାଧାରଣ ଓଡ଼ିଆ ଭାଷା ସହିତ କଥିତ ଶବ୍ଦ, ଇଂରାଜୀ ଓ ସଂସ୍କୃତକୁ ମଧ୍ୟ ଡ଼. ମହତାବ ଗ୍ରହଣ କରିଛନ୍ତି । କେତୋଟି କଥିତ ଶବ୍ଦ-ବେପରୁଆ, କିଅଁରିଆ ଅହଳ, ପତିଆରା, ହାଟବେଳ ପ୍ରଭୃତି । ସଂସ୍କୃତ ଶ୍ଲୋକର ବ୍ୟବହାର-"ରାଜ କରୋତି କାଳ ବା କାଳଃ କରୋତି ରାଜନଂ, ଇତିତେ ସନ୍ଦେହାଭୂତ ରାଜା କାଳସ୍ୟ କାରଣମ୍ ।"

||ତିନି||

'ଗାଁ ମଜଲିସ୍' ହିଁ ଓଡ଼ିଶାର ଦର୍ପଣ । ଏହିସବୁ ଗାଁ ମଜଲିସ୍ ପାଠକଲେ କେବଳ ଓଡ଼ିଶାର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଜୀବନ ନୁହେଁ, ସାଂସ୍କୃତିକ ଜୀବନର ପରିଚୟ ମିଳେ । ନିଶାନିବାରଣଠାରୁ ଆରମ୍ଭ କରି କିରାଣି ସମସ୍ୟା, ପର୍ବ-ପର୍ବାଣୀ(ରଜ, ରଥ, ଦୀପାବଳୀ, କୁମାର ପୂର୍ଣ୍ଣିମା, ବିଷୁବ ସଂକ୍ରାନ୍ତି) ଦୁର୍ନୀତି, ବଜାରଦାମ, ଓଡ଼ିଶାବନ୍ଦ ପର୍ଯ୍ୟନ୍ତ ଏହାର ଗତିପଥ ପରିବ୍ୟାପ୍ତ । ସେ କେବଳ ଗାଁର 'ସାଧାରଣ ଲୋକଙ୍କ ପାଇଁ ନୁହେଁ, ଏବର ଯୁବସମାଜ ପାଇଁ ଗାଁ ମଜଲିସ୍‌ରେ ଆଜିର ବାର୍ତ୍ତା ଶୁଣାଉଥିଲେ । ସେଥିପାଇଁ 'ବିରାଟ ପ୍ରତାରଣା' ଶିରୋନାମାରେ ସେ ଲେଖୁଛନ୍ତି-"ବହୁଦିନୁ ଭାବିଛି, ଯୁବକ ଯୁବତୀ ଯେଉଁମାନଙ୍କର ବୟସ ପଚିଶ ବର୍ଷ ବା ତାଠାରୁ କମ୍, ସେହିମାନଙ୍କ ପାଇଁ କ୍ରମାନ୍ୱୟରେ କିଛି ଲେଖିବା ପାଇଁ, କାରଣ ସେମାନେ ଯେଉଁ ପରିସ୍ଥିତିରେ ସାବାଳକ ହୋଇ ଦୁନିଆକୁ ଦେଖୁଛନ୍ତି, ସେଥିରେ ସେମାନଙ୍କ ମନରେ ପ୍ରତିକ୍ରିୟା ସହଜରେ ଅନୁମାନ କରାଯାଇପାରେ । ପଚିଶବର୍ଷର ତରୁଣ ତରୁଣୀମାନେ ଯେଉଁମାନେ ଦୁନିଆର ଗତିରେ ବିବ୍ରତ, ସେହିମାନେ ମଙ୍ଗ ମୋଡ଼ିବା ପାଇଁ ଚେଷ୍ଟା କରନ୍ତୁ: ତୁଙ୍ଗୀ ବାଉଁଶଟି ତାହାରି ଡାଳିଯିବ ଏଥିରେ ସନ୍ଦେହ ନାହିଁ ।

ବିଷୟବସ୍ତୁ, ସମସ୍ୟା ଓ ସମାଧାନ, ଶୈଳୀ ଓ ଭାଷାଦିଗରୁ ବିଚାର କଲେ ଏହି ଗାଁ ମଜଲିସ୍ ଓଡ଼ିଶାର ସାକ୍ଷାତ ସାଂସ୍କୃତିକ ଇତିହାସ - ଓଡ଼ିଶାର ଡ଼ାଏରୀ ! ତେଣୁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ୧୯୮୩ ମସିହାରେ ଏହି ଗ୍ରନ୍ଥକୁ ପୁରସ୍କାର ପ୍ରଦାନ କରି ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଛି । ସମାଜର ଚିତ୍ର ଆଙ୍କିବା ଏବଂ ସମାଜକୁ ସଂଶୋଧନ କରିବା ପାଇଁ ସାହିତ୍ୟର ଭୂମିକାକୁ ଯଦି ସ୍ୱୀକାର କରାଯାଏ, ତେବେ ଗାଁ ମଜଲିସ୍ ହେଉଛି-ଓଡ଼ିଶାର ଗଦ୍ୟ ମହାକାବ୍ୟ ।

*ଓଡ଼ିଆ ବିଭାଗ ମୁଖ୍ୟ*
*ଚନ୍ଦ୍ରଶେଖର କଲେଜ, ପୋ : ଚମ୍ପୁଆ,*
*ଜିଲ୍ଲା-କେନ୍ଦୁଝର-୭୫୮୦୪୧*

# ଐତିହାସିକ ଡକ୍ଟର ମହତାବ

● ଡକ୍ଟର ବଂଶୀଧର ମହାନ୍ତି

ଡକ୍ଟର ମହତାବ ତାଙ୍କ ଓଡ଼ିଶା ଇତିହାସର ମୁଖବନ୍ଧରେ ଲେଖିଛନ୍ତି ଯେ, ସେ ଯେତେବେଳେ ୧୯୪୨ ମସିହାରେ ବନ୍ଦୀ ହୋଇ ଅହମଦନଗର ଦୁର୍ଗରେ ଥିଲେ, ସେତେବେଳେ ପଣ୍ଡିତ ଜବାହରଲାଲ ନେହରୁ ଶ୍ରୀଜଗନ୍ନାଥ ମନ୍ଦିରର ବିଭିନ୍ନ ପ୍ରକାର ନୈଷ୍ଠିକ ଆଚାର ବ୍ୟବହାର, ତାହାର ରକ୍ଷଣଶୀଳତା ଓ ଶ୍ରୀଜଗନ୍ନାଥଙ୍କର ଅଦ୍ଭୁତ ମୂର୍ତ୍ତିକଳାକୁ କୁତ୍ସିତ ବୋଲି ଅଭିହିତ କରିଥିବା ଜନୈକ ପାଶ୍ଚାତ୍ୟ ସମାଲୋଚକଙ୍କର ଉକ୍ତିର ସତ୍ୟତା ସମ୍ବନ୍ଧରେ ତାଙ୍କୁ ପଚାରନ୍ତେ, ଡକ୍ଟର ମହତାବ ତାହାର ଉତ୍ତର ଦେଇପାରି ନଥିଲେ । ସେ କହିଛନ୍ତି, "ଜଗନ୍ନାଥଙ୍କ ଇତିବୃତ୍ତ ଆଲୋଚନା କରିବାକୁ ଯାଇଁ ମୋତେ ଓଡ଼ିଶା ଇତିହାସକୁ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିବାକୁ ପଡ଼ିଥିଲା । ସେହି ଆଲୋଚନାରେ ମୁଁ ଜାଣିଲି ଯେ, ଓଡ଼ିଶା ଇତିହାସ ଲେଖାର ଆରମ୍ଭ ହୋଇ ନାହିଁ । ଯାହା ପ୍ରକାଶିତ ହୋଇଛି, ତାହା ପ୍ରଥମେ ଜନଶ୍ରୁତି ଓ ପରେ ଅନୁମାନ ଉପରେ ପ୍ରତିଷ୍ଠିତ ହୋଇଯାଇଛି । ଫଳରେ ଓଡ଼ିଶା ଇତିହାସ ସମ୍ବନ୍ଧରେ ଭ୍ରମାତ୍ମକ ଧାରଣା ଓ ସେ ଧାରଣା ଉପରେ ନିର୍ଭର କରି ସାହିତ୍ୟ ମଧ ରଚିତ ହୋଇଯାଇଛି ।" ପୁଣି ସେ ଲେଖିଛନ୍ତି, "ଆଜିଯାଏ ଓଡ଼ିଶା ଇତିହାସର ପ୍ରାଥମିକ ଆଲୋଚନା ହୋଇନାହିଁ ଜାଣି ମୋତେ ଦୁଃଖ ଲାଗିଲା-ଦୋଷ ଦେବି କାହାକୁ ? ମୁଁ ତ ନିଜେ ଦୋଷୀ, ମୁଁ ଆଲୋଚନା କରିନାହିଁ । ଏହି ମନୋଭାବରେ ଓଡ଼ିଶା ଇତିହାସର ପ୍ରାଥମିକ ଆଲୋଚନା ମାତ୍ର ଏ ପୁସ୍ତକରେ କରିଛି ।"(ଓଡ଼ିଶା ଇତିହାସ-ମୁଖବନ୍ଧ) ।

ରାଜନୀତିକ, ସାମ୍ବାଦିକ, ସମାଜସେବକ ବ୍ୟତୀତ ମହତାବଜୀ ଓଡ଼ିଶା ତଥା ଓଡ଼ିଶା ବାହାରେ ବିଶିଷ୍ଟ ସାହିତ୍ୟିକ, ପୁଣି ଓଡ଼ିଶାର ବିଶିଷ୍ଟ ଐତିହାସିକ ଭାବରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଅଛନ୍ତି । ସାହିତ୍ୟ ପରି ତାଙ୍କର ଓଡ଼ିଶା ଇତିହାସକୁ ଯଥେଷ୍ଟ ଅବଦାନ ରହିଛି । ଏହା ସତ୍ୟ ଯେ ଇତିହାସ ଆଲୋଚନା କରିବା ପାଇଁ ସେ ସ୍ୱର୍ଗତ ପଣ୍ଡିତ ଜବାହରଲାଲ ନେହରୁଙ୍କଠାରୁ ପ୍ରେରଣା ପାଇଥିଲେ ଓ ତଦନୁଯାୟୀ ସେ ଓଡ଼ିଶା ଇତିହାସ ରଚନାରେ ପ୍ରବୃତ୍ତ ହୋଇଥିଲେ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବା ପରେ ସେ ନିଖିଳ ଭାରତ ଇତିହାସ କଂଗ୍ରେସ ଅଧିବେଶନ କରାଇ ତହିଁରେ ଶ୍ରୀଜଗନ୍ନାଥ ଧର୍ମ ସମ୍ବନ୍ଧରେ ବିଶଦ ଆଲୋଚନାର ସୂତ୍ରପାତ କରାଇଥିଲେ । ଏହି ଐତିହାସିକ ଇତିହାସ କଂଗ୍ରେସ ସହ ଓଡ଼ିଶା ଅଧିବେଶନର ସମୟ ହେଉଛି ୧୯୪୭ ମସିହା । ରେଭେନ୍ସା କଲେଜ ପରିସରରେ ଉକ୍ତ ଅଧିବେଶନରେ ହଜାର ହଜାର ଛାତ୍ରଛାତ୍ରୀ, ଅଧ୍ୟାପକ ପୁଣି ଓଡ଼ିଶା ଓ ଓଡ଼ିଶା ବାହାରର ବହୁ ବୁଦ୍ଧିଜୀବୀ ପଣ୍ଡିତଙ୍କ ଗହଣରେ ଶ୍ରୀଜଗନ୍ନାଥ ଧର୍ମର ଆଲୋଚନା ହୋଇଥିଲା । ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସ, ଅଧ୍ୟାପକ ମହେଶ୍ୱର ଦାସ, ପଣ୍ଡିତ ବିନାୟକ ଆଚାର୍ଯ୍ୟ, ଡକ୍ଟର ହରେକୃଷ୍ଣ ମହତାବ, ପ୍ରଫେସର ହରନାରାୟଣ ସିହ୍ନା ପ୍ରଭୃତି 'ଶ୍ରୀଜଗନ୍ନାଥ ଧର୍ମ' ସମ୍ବନ୍ଧରେ ବିଭିନ୍ନ ପ୍ରବନ୍ଧ ପାଠ କରିଥିଲେ । ମୋର ସେତେବେଳେ ଛାତ୍ରାବସ୍ଥା-ମନେପଡୁଛି, ଐ ଜାକ୍‌ଜମକରେ ବିରାଟ ଜନସମାବେଶ ମଧ୍ୟରେ ସେହି ଗାମ୍ଭୀର୍ଯ୍ୟପୂର୍ଣ୍ଣ ସମାବେଶ ମଧ୍ୟରେ ଆଲୋଚନା ଚାଲିଥିଲା । ମନେହୁଏ, ଓଡ଼ିଶାରେ ନିଖିଳ ଭାରତ ଇତିହାସ କଂଗ୍ରେସ ଆଗରୁ କେବେ ଅନୁଷ୍ଠିତ ହୋଇନଥିଲା । ଏହା ହେଉଛି ପ୍ରଥମ ।

ସେତେବେଳକାର ଓଡ଼ିଶା ଆସେମ୍ବ୍ଲି ହଲ୍‌ଥାଏ ରେଭେନ୍ସା କଲେଜ ହଲ୍ । ଆସେମ୍ବ୍ଲି ଅଧିବେଶନ ପରେ ଦିନେ ଦିନେ ଓଡ଼ିଆ ସାହିତ୍ୟ, ଓଡ଼ିଶାର ଇତିହାସ ଓ ଅର୍ଥନୀତି ସମ୍ବନ୍ଧରେ ବାରମ୍ବାର ଆଲୋଚନା ମହତାବଜୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହେଉଥିଲା । ଜନୈକ ଆଇ.ସି.ଏସ୍. ଅଫିସର ମିଃ ମୋହାନ୍ତୀ, ପ୍ରଫେସର ରାଧାକମଳ ମୁଖାର୍ଜୀ, ପ୍ରଫେସର ଡକ୍ଟର ସଦାଶିବ ମିଶ୍ର ପ୍ରଭୃତିଙ୍କର ସାରଗର୍ଭକ ବକ୍ତୃତା ସମସ୍ତଙ୍କୁ ବିମୁଗ୍ଧ କରି ଦେଉଥିଲା । ଡକ୍ଟର ମହତାବ ଅଧିକାଂଶ ଦିନ ବିଭିନ୍ନ ଆଲୋଚନା ସଭା କରାଇ ଯେଉଁ ପରିବେଶ ସୃଷ୍ଟି କରିଥିଲେ, ସେଥିରୁ ମନେ ହେଉଥିଲା ତାଙ୍କର ସାଂସ୍କୃତିକ ଦୃଷ୍ଟିଭଙ୍ଗୀ । ସେତେବେଳେ ରେଭେନ୍ସା କଲେଜ ଯେପରି ପାଲଟିଯାଇଥିଲା ଓଡ଼ିଶାର ଏକ ମହାନ୍ ସାଂସ୍କୃତିକ ପୀଠଭୂମି ।

ନିଖିଳଭାରତ ଇତିହାସ କଂଗ୍ରେସ ଅଧିବେଶନ ବ୍ୟତୀତ ୧୯୫୬ ମସିହାରେ ଓଡ଼ିଶାର ନୂଆ ରାଜଧାନୀ ଭୁବନେଶ୍ୱରରେ ସେ ଏକ ଅଖିଳଭାରତ ସାହିତ୍ୟ ଅଧିବେଶନ ଡକାଇଥିଲେ । ତାହା ହେଉଛି ସ୍ୱର୍ଗୀୟା ସୋଫିଆ ୱାଡିଆଙ୍କ ପ୍ରତିଷ୍ଠିତ ପି.ଇ.ଏନ୍. ଅନୁଷ୍ଠାନ । ଭାରତର ବିଭିନ୍ନ ପ୍ରଦେଶରୁ ଶହ ଶହ ସାହିତ୍ୟିକ, କବି, ଲେଖକ ଓ ଅଧ୍ୟାପକଙ୍କର ବିରାଟ ସମାବେଶ ଘଟିଥାଏ ନୂଆ ରାଜଧାନୀରେ । ସେହି ଅଧିବେଶନର ଉଦ୍‌ଘାଟକ ଥିଲେ ସ୍ୱର୍ଗୀୟ ପଣ୍ଡିତ ଜବାହରଲାଲ ନେହରୁ । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କର ଓଡ଼ିଶା ଆଗମନ, ଓଡ଼ିଶା ଓ ଓଡ଼ିଶା ବାହାରର ହଜାର ହଜାର ନିମନ୍ତ୍ରିତ ପ୍ରତିନିଧି, ଅତିଥି ଓ ଦର୍ଶକଙ୍କର ସମାବେଶରେ ଭୁବନେଶ୍ୱର ଉଚ୍ଛୁଳି ପଡ଼ିଥାଏ । ଏପରି ମହାନ ଆଡ଼ମ୍ବରରେ ସାହିତ୍ୟ ସଭା ଅନୁଷ୍ଠିତ ହେବା ଓ ଏ ପ୍ରକାର ଉଚ୍ଚକୋଟୀର ଅତିଥି ଚର୍ଚ୍ଚା ସମଗ୍ର ଭାରତରେ ବିରଳ ବୋଲି ନିମନ୍ତ୍ରିତ ଅନ୍ୟ ରାଜ୍ୟର କବି, ସାହିତ୍ୟିକ ଓ ଲେଖକମାନେ ମହତାବଜୀଙ୍କର ସମୁଚ୍ଚ ପ୍ରଶଂସା କରିଥିଲେ । ଓଡ଼ିଆ ସାହିତ୍ୟ ତଥା ଭାରତୀୟ ସାହିତ୍ୟର ଜାଗୃତି ନିମିତ୍ତ ମହତାବଜୀଙ୍କର କି ପ୍ରକାର ଗଭୀର ଉନ୍ମାଦନା, ତାହା ଦେଖିଥିବା ଲୋକହିଁ କେବଳ ଅନୁଭବ କରିପାରିବ ।

ଓଡ଼ିଶାର ପତ୍ନତତ୍ତ୍ୱପତି ମହତାବଜୀଙ୍କର ଶ୍ରଦ୍ଧା ବହୁତ । ଓଡ଼ିଶା ପତ୍ନତାତ୍ତ୍ୱିକ ଉପାଦାନର ଗନ୍ତାଘର ହେଲେ ହେଁ ଓଡ଼ିଶାର ପତ୍ନତାତ୍ତ୍ୱିକ ରତ୍ନସବୁ ପ୍ରଦେଶ ବାହାରେ ବା ବିଦେଶ ସଂଗ୍ରହାଳୟଗୁଡ଼ିକରେ

ରହିଯାଇଛି । ଏହା ବ୍ୟତୀତ ଏବେ ବି ବହୁ ପ୍ରତ୍ନତାତ୍ତ୍ୱିକ ସମ୍ପଦ ଓଡ଼ିଶାରୁ ଦେଶ ବିଦେଶକୁ ଚୋରା ଚାଲାଣ ହେବା ସମ୍ବାଦ ଅଧିକାଂଶ ଦିନ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଉଛି । ଆମ ପଢ଼ିବା ସମୟରେ ରେଭେନ୍‌ସାକଲେଜ ପାୱାର ହାଉସ ପାଖରେ ଥିବା ୪/୫ଟି କୋଠରୀରେ ଥିଲା ଓଡ଼ିଶା ସଂଗ୍ରହାଳୟ । ଭୁବନେଶ୍ୱର ନୂଆ ରାଜଧାନୀ ହେବାପରେ ସେଠାରେ ଏକ ରାଜ୍ୟସଂଗ୍ରହାଳୟ ପ୍ରତିଷ୍ଠା କରିବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ଆଜିର ରାଜ୍ୟ ସଂଗ୍ରହାଳୟ ଡଃ ମହତାବଙ୍କର ଅଦମ୍ୟ ପ୍ରଚେଷ୍ଟାର ଫଳ । ସେତେବେଳେ ସ୍ୱର୍ଗୀୟ ପ୍ରଫେସର ହୁମାୟୁନ କବୀର ଥିଲେ ଭାରତର ଶିକ୍ଷା ଓ ସଂସ୍କୃତି ବିଭାଗ ମନ୍ତ୍ରୀ । ମ୍ୟୁଜିୟମ ଉଦ୍‌ଘାଟନ କାର୍ଯ୍ୟରେ ସାହାଯ୍ୟ କରିବା ଲାଗି ଡକ୍ଟର ମହତାବ ମୋତେ ମାସାଧିକ କାଳ ଉକ୍ତ କାର୍ଯ୍ୟରେ ନିଯୁକ୍ତି ଦେଇଥିଲେ । ସେତେବେଳେ ମୁଁ ଥାଏ ବି.ଜେ.ବି. କଲେଜର ଅଧ୍ୟାପକ । ଉଦ୍‌ଘାଟନ ଉତ୍ସବ ପୂର୍ବରୁ ପ୍ରାୟ ପ୍ରତ୍ୟହ ସନ୍ଧ୍ୟାରୁ ରାତି ୯ଟା ପର୍ଯ୍ୟନ୍ତ ନବନିର୍ମିତ ସଂଗ୍ରହାଳୟରେ ବସି ନିଖିଳଭାରତ ପ୍ରତ୍ନତାତ୍ତ୍ୱିକ ଅଧିବେଶନର ବିଭିନ୍ନ କାର୍ଯ୍ୟ ସେ ବୁଝାସୁଝା କରୁଥିଲେ ।

ମହତାବଙ୍କ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଓଡ଼ିଆ ଜ୍ଞାନକୋଷ ସଂକଳନ ଓ ଇଂରାଜୀରେ ଓଡ଼ିଶା ଇତିହାସ ୫ ଖଣ୍ଡରେ ପ୍ରଣୟନ ଓ ପ୍ରକାଶନ ନିମିତ୍ତ ବହୁ ଉଦ୍ୟମ କରିଥିଲେ । ପ୍ରଫେସର ଡକ୍ଟର ପରିଜା ଓ ପ୍ରଫେସର ଡକ୍ଟର ସଦାଶିବ ମିଶ୍ରଙ୍କ କୁଳପତିତ୍ୱ ସମୟରେ ଏହି କାର୍ଯ୍ୟ ତତ୍ପରତାରେ ଚାଲିଥିଲା; କିନ୍ତୁ ଦୁଃଖର ବିଷୟ ଯେ ଦୁଇଟିଯାକ ଜାତୀୟ କାର୍ଯ୍ୟ ଉତ୍ସାହ ଓ ଉଦ୍ୟମ ଅଭାବରୁ ବନ୍ଦ ହୋଇଗଲା । ଏହିସବୁ ଜାତୀୟ ସାଂସ୍କୃତିକ କାର୍ଯ୍ୟରେ କେତେ ଯେ ଶକ୍ତି ଓ ଅର୍ଥର ଅପଚୟ ହେଲା, ତାହା କହିହେବ ନାହିଁ । ଡକ୍ଟର ମହତାବଙ୍କର ଓଡ଼ିଆ ଭାଷାରେ ଲିଖିତ ଓଡ଼ିଶା ଇତିହାସ ଏକ ପ୍ରାମାଣିକ ଗ୍ରନ୍ଥ । ତାଙ୍କର ଇଂରାଜୀ ଭାଷାରେ ଲିଖିତ ଓଡ଼ିଶା ଇତିହାସ ଭାରତ ତଥା ଭାରତ ବାହାରେ ବିଶେଷ ଖ୍ୟାତି ଲାଭ କରିଛି ।

ମହତାବଙ୍କର ଅନ୍ୟ ଏକ କୃତିତ୍ୱପୂର୍ଣ୍ଣ ଐତିହାସିକ ଓ ସାଂସ୍କୃତିକ କାର୍ଯ୍ୟ ହେଉଛି 'ରାଷ୍ଟ୍ରଭାଷା ଶତ ଜୟନ୍ତୀ ଗ୍ରନ୍ଥ'ର ପ୍ରକାଶନ । ପଣ୍ଡିତ ଅନସୂୟା ପ୍ରସାଦ ପାଠକ ଜୀବିତ ଥିବା ସମୟରେ ମାସାଧିକ କାଳ ସେ ପ୍ରତିଦିନ ସନ୍ଧ୍ୟାରେ ରାଷ୍ଟ୍ରଭାଷା ଭବନ ପରିସର ମଧ୍ୟରେ ଉପସ୍ଥିତ ରହି ରାଷ୍ଟ୍ରଭାଷା ଶତ ଜୟନ୍ତୀ ଗ୍ରନ୍ଥ ପ୍ରକାଶନ ନିମିତ୍ତ ଯେଉଁ କଠିନ ପରିଶ୍ରମ କରିଥିଲେ, ତାହାର ଫଳ ହେଉଛି-ଓଡ଼ିଶା ସଂସ୍କୃତି ଓ ଐତିହାସିକ ଆଲୋଚନା ପରିପୂର୍ଣ୍ଣ ଗୌରବମୟ ଶତ ଜୟନ୍ତୀ ଗ୍ରନ୍ଥ ।

ଓଡ଼ିଶାର କଳା, ସଂସ୍କୃତି, ସାହିତ୍ୟ ଓ ଦେଶର ଇତିହାସ ପାଇଁ ମହତାବଙ୍କର ଅଶେଷ ଦାନ ରହିଛି । ତାଙ୍କରି ଉଦ୍ୟମ ଓ ପ୍ରଚେଷ୍ଟାରେ ଓଡ଼ିଶାରେ ସାହିତ୍ୟ, ସଙ୍ଗୀତ ଓ ନାଟକ ଏକାଡ଼େମୀ ପ୍ରଭୃତି ପ୍ରତିଷ୍ଠିତ ହୋଇଥିଲା । ପୂର୍ବରୁ ଓଡ଼ିଶା ସମ୍ବନ୍ଧରେ ବହୁ ଅଣଓଡ଼ିଆ ଓ ବିଦେଶୀ ଐତିହାସିକ ଆଲୋଚକମାନେ ଯେଉଁ ଭ୍ରମ ଧାରଣା ଦେଇଥିଲେ, ତାହା ଆଜି ସମ୍ପୂର୍ଣ୍ଣ ବିଦୂରିତ । ମହତାବବାବୁ ତାଙ୍କର ଓଡ଼ିଶା ଇତିହାସ ଓ ଅନ୍ୟାନ୍ୟ ଲେଖାଲେଖିରେ ଓଡ଼ିଶାର ଗୌରବମୟ ଇତିହାସ ଦେବାକୁ ଚେଷ୍ଟା କରିଛନ୍ତି । ଉଭୟ ପ୍ରାଚୀନ ଓ ଆଧୁନିକ ଓଡ଼ିଶା ଇତିହାସକୁ ଛନ୍ଦେ ଛନ୍ଦେ ସମୁଚିତ ସ୍ଥାନ ଦେଇଛନ୍ତି । ଐତିହାସିକ ଡକ୍ଟର ମହତାବ ଓଡ଼ିଶାର ନୂତନ ଇତିହାସ ପ୍ରଣୟନ କରି ଓଡ଼ିଶା ଇତିହାସକୁ ସମୃଦ୍ଧ କରିବା ସହିତ ଓଡ଼ିଶା ଇତିହାସରେ ଏକ ଅମର ଆସନର ଅଧିକାରୀ ହୋଇ ପାରିଛନ୍ତି ।

• • •

## ଅଦ୍ଭୁତ ଲୋକ ଆକର୍ଷଣ ଶକ୍ତି

ଦୁଃଖେଷ୍ୱନୁଦ୍ୱିଗ୍ନମନା, ସୁଖେଷୁ ବିଗତଃସ୍ପୃହ' ଏହି ଉକ୍ତିର ମୂର୍ତ୍ତିମାନ ଉଦାହରଣ ମହତାବ ବାବୁ । ତାଙ୍କ ଜୀବନରେ ସେ ବହୁବାର ଦୁଃଖ ଭୋଗ କରିଛନ୍ତି ଓ ସୁଖ ସମୃଦ୍ଧି ମଧ୍ୟ ଲାଭ କରିଛନ୍ତି । କିନ୍ତୁ ଉଭୟ ଅବସ୍ଥାରେ ସେ କେବେ ବିଚଳିତ ହୋଇନାହାନ୍ତି ।

ତାଙ୍କର ଅଦମ୍ୟ ଉତ୍ସାହ ଓ ନୀରଳସ କର୍ମ ତତ୍ପରତା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି । ତାଙ୍କର ଅଦ୍ଭୁତ ଲୋକ ଆକର୍ଷଣ ଶକ୍ତି । ବହୁ ଲୋକଙ୍କୁ ସେ ଆକୃଷ୍ଟ କରିଛନ୍ତି, ଶତ୍ରୁକୁ ମଧ୍ୟ ମିତ୍ର କରିଛନ୍ତି । ବହୁ ଲୋକ ତାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କରି ପ୍ରେରଣାରେ ବହୁ ଦୁଃଖ ଯନ୍ତ୍ରଣା ସହ୍ୟ କରିଛନ୍ତି ।

ତାଙ୍କ ପରି ନିର୍ଭୀକ ବ୍ୟକ୍ତି କ୍ୱଚିତ ଦେଖାଯାଆନ୍ତି । ସବୁ କ୍ଷେତ୍ରରେ ସେ ସର୍ବଦା ସତ୍ୟର ଅନୁଧ୍ୟାନ କରିଛନ୍ତି । ମୋର ତାଙ୍କ ସହିତ ସମ୍ପର୍କ ଅର୍ଦ୍ଧଶତାବ୍ଦୀର ।

ଏ ନିତ୍ୟାନନ୍ଦ କାନୁନଗୋ

# ବିଷୁବ କର୍ଣ୍ଣଧାରଙ୍କ ବିଷୁବ ସମ୍ଭାଷଣ

● ଶ୍ରୀ ଅପୂର୍ବ ରଂଜନ ରାୟ

ବ୍ୟକ୍ତିର ନିଷ୍ଠା, ତ୍ୟାଗ, ଆଦର୍ଶ ଓ ସାଂଗଠନିକ ଶକ୍ତିକୁ ନେଇ ତା'ର ବ୍ୟକ୍ତିତ୍ୱ ପ୍ରକଟିତ ହୁଏ । ସେହି ବ୍ୟକ୍ତିତ୍ୱ ହିଁ ଅନୁଷ୍ଠାନର ପ୍ରତିଷ୍ଠାତାଙ୍କୁ ସ୍ମରଣୀୟ ତଥା ନମସ୍ୟ କରି ରଖେ । ଯେଉଁ ପ୍ରତିଷ୍ଠାତାଙ୍କ ବ୍ୟକ୍ତିତ୍ୱ ଯେପରି କାଳ ବକ୍ଷରେ ସ୍ୱାକ୍ଷରିତ, ସେପରି ସେହି ପ୍ରତିଷ୍ଠାତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ ଇତିହାସରେ ନୂତନ ପୃଷ୍ଠା ସୃଷ୍ଟି ପାଇଁ ଯୋଗ୍ୟ ହୋଇଥାଏ । ଜନନାୟକ ଡଃ ହରେକୃଷ୍ଣ ମହତାବ ତାଙ୍କ ତ୍ୟାଗ, ନିଷ୍ଠା, ଆଦର୍ଶ ଓ ବନ୍ଧୁବତ୍ସଳତା ଯୋଗୁଁ ଯେପରି ଜନମାନସରେ ନମସ୍ୟ, ଠିକ୍ ସେପରି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ 'ପ୍ରଜାତନ୍ତ୍ର' ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା, ପରିଚାଳିତ ତଥା ତାଙ୍କ ଦ୍ୱାରା ପ୍ରବର୍ତ୍ତିତ 'ବିଷୁବ ମିଳନ' ଅତ୍ୟନ୍ତ ସମ୍ମାନିତ ଓ ଆଦରଣୀୟ ।

ଏହି ମିଳନୋତ୍ସବ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ହେଲା ଆରମ୍ଭ ହେଲାଣି । ଏହା ଦ୍ୱାରା ଅସଂଖ୍ୟ ଅନାଲୋଚିତ ପ୍ରତିଭା ଆଲୋକକୁ ଆସିପାରିଛନ୍ତି । ପ୍ରତିବର୍ଷ ଅବହେଳିତ ପ୍ରତିଭାବାନ ଏହି ସାରସ୍ୱତ ସମ୍ମେଳନ ଦ୍ୱାରା ସମ୍ବର୍ଦ୍ଧିତ ହୋଇ ଆସୁଛନ୍ତି । ପ୍ରତି ବର୍ଷ ବୈଶାଖ ମାସ ପଣା ସଂକ୍ରାନ୍ତି ଦିନ ବିଷୁବ ମିଳନ ନିୟମିତ ଅନୁଷ୍ଠିତ ହୋଇ ଆସୁଛି । ଏଥିରେ ଯେପରି ବ୍ୟତିକ୍ରମ ନହୁଏ, ସେଥିପ୍ରତି ମଧ୍ୟ କର୍ଣ୍ଣଧାର ଡଃ ମହତାବଙ୍କ ଲକ୍ଷ୍ୟ ରହିଥାଏ । ଏହା ସହିତ ସବୁ ଶ୍ରେଣୀର ଲେଖକ ଲେଖିକା ଜଡ଼ିତ ହୋଇ ରହନ୍ତୁ । ଏହା ଥାଏ ତାଙ୍କର ଅଭିଳାଷ । ପ୍ରତିବର୍ଷ ନୂତନ ସାରସ୍ୱତ ସାଧକ ଓ କର୍ମୀମାନଙ୍କର ଏହି ମିଳନୋତ୍ସବ ସହିତ ମିଳିତ ହେବାର ପ୍ରତିଷ୍ଠାତା ଉଦାରମନା ଡଃ ମହତାବଙ୍କର କି ଆନନ୍ଦ ସତେ । ଏହି ଅନୁଷ୍ଠାନ ଗଠନରେ ଯାହାଙ୍କ ମନରେ ଅହଂକାର ନାହିଁ, ନିଜେ ଗଢ଼ି ସୁଦ୍ଧା ଏହା ତାଙ୍କ ନିଜର ନୁହେଁ - ଏହା ସମସ୍ତଙ୍କ ଦ୍ୱାରା ଗଠିତ, ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବାରେ ଦ୍ୱିଧା ନଥାଏ, ସେହି ସିନା କହି ପାରନ୍ତି - "ଧନୀ ପରିବାରରେ ଜନ୍ମ ନ ହୋଇ ଥିବାରୁ ଆନନ୍ଦର ନହବତ ବାଜି ନାହିଁ । ମଧ୍ୟବିତ୍ତ ପରିବାରରେ ତା'ର ଜନ୍ମ ନହୋଇଥିବାରୁ, ବନ୍ଧୁବାନ୍ଧବ ଓ ପୁରୋହିତ ଦୁବ ଅକ୍ଷତ ନେଇ ଆସି ନାହାନ୍ତି, କିମ୍ବା ନିଃସ୍ୱ ପରିବାରରେ ମଧ୍ୟ ଜନ୍ମ ହୋଇ ନଥିବାରୁ କ୍ଷୁତ୍‌ପିପାସା ଜନିତ ଉଦ୍‌ବେଗ ଜାତ ହୋଇ ନାହିଁ । କେତେଜଣଙ୍କ ଉତ୍ସାହର କୋଳରେ ଏହାର ଜନ୍ମ । କେବଳ ଉତ୍ସାହରେ ହିଁ ଏହାର ବୃଦ୍ଧି ।" କେବଳ ଏହି କଥନରେ ସମ୍ଭାଷଣ ତାଙ୍କର ଶେଷ ହୋଇନାହିଁ । ମିଳନୋତ୍ସବରେ ଯୋଗଦାନ ପାଇଁ ଆସିଥିବା ନିମନ୍ତ୍ରିତ ସଜ୍ଜନମଣ୍ଡଳୀ ପାଇଁ ଥାଏ ଅନ୍ତରଙ୍ଗ ଓ ଆନ୍ତରିକ ସ୍ୱାଗତ । ନମ୍ର ସ୍ୱରରେ ପ୍ରକାଶ ପାଏ - "ବନ୍ଧୁ ମିଳନରେ ପାଦ୍ୟଅର୍ଘ୍ୟ ପ୍ରଦାନ ଗୃହସ୍ଥର ଧର୍ମ । ଆନନ୍ଦୋତ୍ସବ ସେଥିର ଅଂଶ । ଆମେମାନେ ଆଶାକରୁଁ, ଏ ମିଳନ ବର୍ଷକୁ ବର୍ଷ ଦୃଢ଼ତରୁ ଦୃଢ଼ତର ହେବ ଓ ବନ୍ଧୁ ସଂଖ୍ୟା କ୍ରମେ ବୃଦ୍ଧି ପାଇ ଓଡ଼ିଶାରେ ଏକ ବିଶାଳ ସାହିତ୍ୟିକ ପରିବାର ସୃଷ୍ଟି କରିବ ।" ୧୯୫୦ ମସିହା ଅପ୍ରେଲ ୧୩ ତାରିଖରେ ଅନୁଷ୍ଠିତ "ବିଷୁବ ମିଳନ" ର ପ୍ରଥମବର୍ଷ ସମାରୋହରେ ଏହାର ପ୍ରତିଷ୍ଠାତାଙ୍କ ଯେଉଁ ଆନ୍ତରିକତାର ସମ୍ଭାଷଣ, ସେଥିରେ ଅନ୍ୟମାନେ ବା ପ୍ରଭାବିତ ନହୁଅନ୍ତେ କିପରି ! ଭାଷା ଓ ସଂଳାପ ହିଁ ମଣିଷକୁ ଅନ୍ୟ ପାଖରେ ପ୍ରିୟତର କରିପାରେ । ପରସ୍ପରକୁ ବାନ୍ଧି ରଖିବା ଓ ବୁଝିବା ପାଇଁ ବିନୟତା, ନମ୍ରତା ହିଁ ସହାୟକ ହୋଇଥାଏ । ସେହି ସଂପର୍କ ଦିନକୁ ଦିନ ଦୃଢ଼ତର ହେବା ଲାଗି 'ସମର୍ପଣ ଭାବ'ହିଁ ଆଧାର ହୁଏ । ବିଷୁବର ପ୍ରତିଷ୍ଠାତା ସେହି ଉଦାର ଭାବ ଚେତନାରେ ଉଦ୍‌ବୁଦ୍ଧ ହୋଇଥିବା ହେତୁ, ଏହା ସ୍ମରଣୀୟ ମିଳନୋତ୍ସବରେ ପରିଣତ ହୋଇ ରହିଛି ।

ବ୍ୟକ୍ତିର ଆତ୍ମପ୍ରତ୍ୟୟରୁ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ମିଳିଥାଏ । ଏହି ବଳିଷ୍ଠତା ହିଁ ବ୍ୟକ୍ତିର ସକଳ କର୍ମଯୋଜନାକୁ ପ୍ରଭାବିତ କରିଥାଏ । ଯେଉଁ କର୍ମଟି ଆରମ୍ଭ ହେଲା, ସେହି କର୍ମ ପଛରେ ନିହିତ ଥିବା ଶ୍ରମ, ସାଧନା, ଆବେଗ, ନିଷ୍ଠା ଓ ନିଃସ୍ୱାର୍ଥପରତା ସେହି କର୍ମକୁଶଳତାର ମାପକାଠି । ସେହି ବ୍ୟକ୍ତି କେବଳ ଦୃଢ଼ କଣ୍ଠରେ କହିପାରେ - "ଉଦ୍ଦେଶ୍ୟରେ ଯଦି କୌଣସି ବ୍ୟକ୍ତିଗତ ସ୍ୱାର୍ଥର ଲେଶ ସୁଦ୍ଧା ନାହିଁ, ସେ ଉଦ୍ଦେଶ୍ୟ ପଛରେ ଯଦି ବିଶ୍ୱାସ ଓ ଉତ୍ସାହ ପୂର୍ଣ୍ଣ ମାତ୍ରାରେ ରହିଛି ଓ ଯଦି ସେ ଉଦ୍ଦେଶ୍ୟ ସର୍ବସାଧାରଣଙ୍କ ଦ୍ୱାରା ଗୃହୀତ ହେବାର ଯୁକ୍ତିଯୁକ୍ତ କାରଣ ଅଛି, ତେବେ ସେ ଉଦ୍ଦେଶ୍ୟ ସାଧିତ ହେବା ସୁନିଶ୍ଚିତ । ଅର୍ଥାଭାବ ବା ଅନ୍ୟ କୌଣସି ବସ୍ତୁର ଅଭାବ ସେ ଉଦ୍ଦେଶ୍ୟ ସାଧନର କେବେହେଲେ ଅନ୍ତରାୟ ହୁଏ ନାହିଁ ।" ଯେ କୌଣସି କର୍ମ ପାଇଁ ଅର୍ଥର ଆବଶ୍ୟକତା ରହିଛି ସତ, କିନ୍ତୁ ଉଦ୍ଦେଶ୍ୟ ମହତ ନଥିଲେ, ସେହି ଅର୍ଥ ମଧ୍ୟ ସତ୍‌କର୍ମରେ ବିନିଯୋଗ ହୋଇପାରେ ନାହିଁ । ସତ୍‌କର୍ମ ପାଇଁ ଅର୍ଥ ବଡ଼ ସମସ୍ୟା ନୁହେଁ । ହୃଦୟର ସ୍ୱଚ୍ଛତା ଓ ପ୍ରସାରିତ ଉଦାର ହସ୍ତ ହିଁ ଏଥିପାଇଁ ସହାୟତା କରିଥାଏ । ଏହି ସତ୍ୟ ଅଭିଜ୍ଞତା ସଂପନ୍ନ ଅନୁଭୂତିରେ ଡଗ୍ଧ ଡଃ ମହତାବ ଅଙ୍ଗେ ଅଙ୍ଗେ ଅନୁଭବ କରିଛନ୍ତି । ସେ ଦୃଷ୍ଟିରୁ ୧୯୫୧ ମସିହା ଅପ୍ରେଲ ୧୩ ତାରିଖରେ ଅନୁଷ୍ଠିତ ଦ୍ୱିତୀୟ ବାର୍ଷିକ 'ବିଷୁବ ମିଳନ' ରେ ସ୍ୱାଗତ ଭାଷଣ ପ୍ରସଙ୍ଗରେ ସମବେତ ବୁଦ୍ଧିଜୀବୀମାନଙ୍କୁ ତାଙ୍କର ଏହି ମୁକ୍ତ ଉଚ୍ଚାରଣ, କେତେ କର୍ମଠର ଆସନ ପ୍ରଦାନ କରେ, ତାହା ହୃଦୟଙ୍ଗମ କରିହୁଏ ।

ଆରମ୍ଭ ହିଁ ଉଦ୍ୟୋକ୍ତା ତଥା ପୃଷ୍ଠପୋଷକମାନଙ୍କ ପାଇଁ ପ୍ରେରଣାର ଉତ୍ସ ହେବା ଉଚିତ । ଯଦି ସେମାନେ ଆଗ ପାହାଚରେ ପାଦ ଦେବାକୁ ସାହସୀ ନହୁଅନ୍ତି, ତେବେ ଆରମ୍ଭ ଦୁର୍ବଳ ହୋଇଯାଏ । ଏହି ଦୁର୍ବଳତା ଆଗକୁ ଆଗ ମାଡ଼ିଯିବା ସ୍ଥାନରେ ଆହୁରି ପଛକୁ ଫେରିଯିବାକୁ ବାଧ୍ୟ କରାଏ । ଉଚ୍ଚକୁ ଗତି କରିବା ଯଦି ଆମର ଲକ୍ଷ୍ୟ, ତେବେ ପାହାଚ ଗଣି ଗଣି ଯିବା ଆଦୌ ଉଚିତ ନୁହେଁ । ପାହାଚ ଗଣି ଗଣି ଚାଲିଲେ, ଉଚ୍ଚକୁ ଗତି କରିବା କେବେ ସମ୍ଭବପର ହେବ ନାହିଁ । ଏହି ଦମ୍ଭ ଧରି

ଯାତ୍ରୀ ଚାଲିଥାଏ । ଦମ୍ଭ ହରାଇ ବସିଲେ, ଯାତ୍ରା ଅଟକିଯାଏ । ସେଥିପାଇଁ ଦୂରଦ୍ରଷ୍ଟା ଡଃ ମହତାବ କହନ୍ତି- "ଯିବାର ଯଦି ସଂକଳ୍ପ, ତେବେ ମାଇଲ ଖୁଣ୍ଟ ଗଣି ଲାଭ ବା କ'ଣ ? କେବଳ ସେତିକି କହି ସେ ତୃପ୍ତି ହୋଇ ନାହାନ୍ତି । ବିଶ୍ଳେଷଣ କରିବାର ମନୋଭାବ ତାଙ୍କୁ ଅଧିକ ସକ୍ରିୟ କରିଛି । ଯେଉଁ କାର୍ଯ୍ୟଟି ଆରମ୍ଭ କରାଗଲା, ସେହି କାର୍ଯ୍ୟ ଦ୍ୱାରା ସମାଜ ଓ ଜାତିର କୌଣସି ସୁଫଳ ସାଧିତ ହେଉଛି କି ନା, ତାହା ସମୀକ୍ଷା କରିବା କର୍ମୀର ପ୍ରଧାନ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ ସଂପନ୍ନ କରିପାରିବା ଜଣେ ଦାୟିତ୍ୱବାନ କର୍ମୀ ପକ୍ଷେ ବଡ଼ ସାଧନା । ଏଥିପାଇଁ କର୍ମୀ ନିଜକୁ ନିଜେ ପ୍ରଶ୍ନ କରେ । ନିଜ ଲାଗି ନିଜେ ସମାଲୋଚକ ହୁଏ । ବହୁ କ୍ଷେତ୍ରରେ କୃତ କର୍ମର ବିଫଳତା ପାଇଁ ନିଜକୁ ହେୟ ମନେ କରେ । କିନ୍ତୁ କେବେ ଭାଙ୍ଗି ପଡ଼େ ନାହିଁ । ସମାଲୋଚନା, ସମୀକ୍ଷା ଓ ନିଜକୁ ପ୍ରଶ୍ନ, ଏସବୁ ସଂସ୍କାର ପାଇଁ ପଥ ଉନ୍ମୁକ୍ତ କରେ । ସେଥିପାଇଁ ନିଷ୍ଠାପର କର୍ମୀ କହନ୍ତି - "ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ସାହିତ୍ୟର ବାର୍ତ୍ତା ଆମେମାନେ ପହଞ୍ଚାଇ ପାରିଛୁ ? ପ୍ରତ୍ୟେକ ଓଡ଼ିଆ ଶିକ୍ଷିତ ବ୍ୟକ୍ତିର ଓଡ଼ିଆ ସାହିତ୍ୟ ପ୍ରତି କର୍ତ୍ତବ୍ୟଜ୍ଞାନ ଜାଗରଣ କରିପାରିଛୁ ? ଖାଦ୍ୟପେୟ ଭଳି ସାହିତ୍ୟ ଯେ ଜୀବନର ଏକ ଅପରିହାର୍ଯ୍ୟ ବସ୍ତୁ, ଏହା କଥଣ ଆମେମାନେ ପ୍ରତିପାଦନ କରିପାରିଛୁ ? ଦେଶରେ କ'ଣ ଆମେମାନେ ଉଚ୍ଚାଭିଳାଷପୂର୍ଣ୍ଣ ଜୀବନର ଅବିଶ୍ରାନ୍ତ କର୍ମପ୍ରବାହ ଖେଳାଇ ପାରିଛୁ ?" ଏସବୁର ସମାଧାନ ହେଉ କି ନହେଉ, କର୍ମୀର ଏହା ହେଉଛି ବଡ଼ ପ୍ରଶ୍ନ । ଯାତ୍ରୀଟିଏ ଆଗକୁ ତ ଯିବ । ତେବେ ଯେତିକି ବାଟ ଆସିଲା, ସେହି ପଥଯାତ୍ରା ଭିତରେ ସେ ସମାଜ ପାଇଁ କିଭଳି ହିତ ସାଧନ କରି ପାରିଛି ! ଏପରି ପ୍ରଶ୍ନବାଚୀର ସ୍ରଷ୍ଟା ହିଁ, ସମାଜ ପାଇଁ ମଙ୍ଗଳର ବାର୍ତ୍ତାବହ ହୋଇଥାଏ । ସେ ଦୃଷ୍ଟିରୁ ୧୯୫୩ ମସିହା ଅପ୍ରେଲ ୧୩ ତାରିଖରେ ଅନୁଷ୍ଠିତ ଚତୁର୍ଥ ବାର୍ଷିକ ବିଷୁବ ମିଳନରେ ଡଃ ମହତାବଙ୍କ ପ୍ରଦତ୍ତ ଅଭିଭାଷଣ ସାର୍ଥକ ଯାତ୍ରା ପାଇଁ ଶୁଭଙ୍କର ।

ଯିଏ କର୍ମୀ, ସିଏ ଯୋଗୀ, ସେ ସାଧକ । ତାଙ୍କୁ ସ୍ଥିତପ୍ରଜ୍ଞ ହେବାକୁ ହୁଏ । ଦୁଃଖରେ ବିଚଳିତ କିମ୍ବା ସୁଖ ପାଇଁ ବିହ୍ୱଳିତ ହେବା ଯୋଗୀ ପକ୍ଷରେ ଅସମୀଚୀନ । ଏହା ଯେପରି ତା' ଯୋଗ ସାଧନାର କଷଟି ପଥର । ସେଥିପାଇଁ ଶ୍ରୀମଦ୍ ଭଗବତ ଗୀତାରେ କୁହାଯାଇଛି - 'ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ, ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍ ।।" କିମ୍ବା "ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ, ବୀତରାଗଭୟ କ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ ।।" ଏହି ଆଦର୍ଶ ଯେପରି ବିଷୁବର କର୍ଣ୍ଣଧାରଙ୍କୁ ଅନୁପ୍ରାଣିତ କରିଛି । କର୍ମ କରିଯିବା ମଣିଷର କର୍ତ୍ତବ୍ୟ, ଏଥିପାଇଁ ନିନ୍ଦା ପ୍ରଶଂସାକୁ କର୍ଣ୍ଣପାତ କରି ବସିଲେ, କର୍ମୀ ଆଗକୁ ଯିବା ସମ୍ଭବପର ହେବ ନାହିଁ । କର୍ମ କରିବା ଲକ୍ଷ୍ୟ ନେଇ ଆଗେଇ ଚାଲିଲେ କର୍ମୀ ଏହାହିଁ କହେ - "ନିନ୍ଦାରେ ବିଚଳିତ ହୋଇନାହୁଁ । ପୂର୍ଣ୍ଣ ଆତ୍ମ ବିଶ୍ୱାସ ନେଇ ଆମେ ଚାଲିଛୁ ।"

ଏହି ବିଶ୍ୱାସ ଉପରେ ଭରସା କରି କର୍ମଯୋଗୀ ହିଁ ଭିତ୍ତିଭୂମିକୁ ପ୍ରଥମେ ଦୃଢ଼ କରେ ଏବଂ ଏହି ଦୃଢ଼ତା ଉପରେ ଚୂଡ଼ା ଗର୍ବ ଅନୁଭବ କରେ । ପୁଣି ସେହି ଚୂଡ଼ାର ସ୍ଥିତିକୁ ନେଇ କର୍ମ-ମନ୍ଦିର ଦୀର୍ଘଜୀବୀ ହୋଇରହେ । ଏହା ଯେପରି ଇତିହାସର ଧ୍ରୁବ ସତ୍ୟ । ବିଷୁବ ମିଳନ ଯେଉଁ ଆଶା ଓ ଆକାଂକ୍ଷା ଭିତରେ ଗଠିତ ହୋଇଥିଲା, ତା'ର କ୍ରମୋନ୍ନତି ନେଇ କର୍ଣ୍ଣଧାର ସନ୍ତୁଷ୍ଟ ହୋଇ ଥିଲେ ହେଁ, ଏହାର ଭିତ୍ତିଭୂମି ଓ ଚୂଡ଼ା ଉପରେ ସବୁବେଳେ ଦୃଷ୍ଟି ରଖିଥାଆନ୍ତି । ସେଥିପାଇଁ ସେ କହନ୍ତି-"ଭିତ୍ତି ଉପରେ ଚୂଡ଼ା ଯେପରି ନିର୍ଭର କରେ, ଚୂଡ଼ାର ସ୍ଥିତି ଉପରେ ମନ୍ଦିରର ସ୍ଥାୟିତ୍ୱ ମଧ୍ୟ ନିର୍ଭର କରେ ।"

ଏପରି ଦୂରଦ୍ରଷ୍ଟାଙ୍କ ମନ ଭିତରେ ଅନୁଷ୍ଠାନ ପାଇଁ ଅନେକ ସଂଶୟ ସୃଷ୍ଟି ହେବା ସ୍ୱାଭାବିକ । ଅନୁଷ୍ଠାନଟିଏ ଦେଖିଲେ, କେତେକେ ବହୁ ଖୁସି ହୁଅନ୍ତି, ଏହାର ସ୍ଥାୟିତ୍ୱ କାମନା କରନ୍ତି । ଆଉ କେତେକ ମଧ୍ୟ ଅନୁଷ୍ଠାନ ଗଠନରେ ବିମୁଖ ହୋଇ ଉଠନ୍ତି । ଏହାର ଅଗ୍ରଗତିରେ ସେମାନେ ଆଦୌ ଖୁସି ହୋଇପାରନ୍ତି ନାହିଁ । ଏଥିରେ କିନ୍ତୁ ନିଷ୍ଠାପର କର୍ମଯୋଗୀ ବିଚଳିତ ନହୋଇ, ସଂସାରର ଭିନ୍ନ ଭିନ୍ନ ମଣିଷ ଚରିତ୍ରକୁ ବିଶ୍ଳେଷଣ କରି କହିଥାଆନ୍ତି-"ସଫଳତା ଯେପରି ବହୁ ବନ୍ଧୁଙ୍କ ମନରେ ଆନନ୍ଦ ଜନ୍ମାଏ, ଅନ୍ୟ ଲୋକଙ୍କ ମଧ୍ୟରେ ସେହିପରି ଈର୍ଷା ଜନ୍ମାଇଥାଏ ।"

ସମସ୍ତଙ୍କ ସହିତ ମିଳିତ ହେବାର ଯେଉଁ ଆଗ୍ରହ, ତାହା କେବଳ ଅନୁଷ୍ଠାନର ମୁଖ୍ୟକର୍ତ୍ତା ହିଁ ଅନୁଭବ କରେ । କୌଣସି କାରଣରୁ ଅନୁପସ୍ଥିତ ରହିଲେ, ମନରେ ଅବଶୋଷ ରହିଯାଏ । ମୁଖ୍ୟକର୍ତ୍ତାଙ୍କୁ ଏଥିପାଇଁ ପ୍ରଶ୍ନ ହୋଇନପାରେ, ମାତ୍ର ଅନୁରାଗୀ ମଣିଷଟିଏ ଏହି ଅନୁପସ୍ଥିତି ପାଇଁ ଦୁଃଖିତ ହେବା ସ୍ୱାଭାବିକ । ଯିଏ ଅନେକଙ୍କୁ ନେଇ ଚଳି ଆସିଛି ଏବଂ ମିଳନୋତ୍ସବରେ ଅନେକଙ୍କ ସହିତ ମିଶିବା ପାଇଁ ପ୍ରବଳ ଆଗ୍ରହୀ, ସେ ନିଶ୍ଚୟ ମିଳନରୁ ବଞ୍ଚିତ ହେଉଥିବା ଦୁଃଖିତାରେ ମ୍ରିୟମାଣ ହୋଇପଡ଼ିବ । ୧୯୫୬ ମସିହାରେ ଡ଼ଃ ମହତାବ ଅବିଭକ୍ତ ବମ୍ବେର ରାଜ୍ୟପାଳ ଥିବାବେଳେ, କାର୍ଯ୍ୟଚାପରେ ସେହିବର୍ଷ ବିଷୁବ ମିଳନରେ ଯୋଗଦେବା ତାଙ୍କ ପକ୍ଷେ ସମ୍ଭବପର ହେଉ ନଥାଏ । କିନ୍ତୁ ମନରେ ପ୍ରବଳ ଆଗ୍ରହ, ବିଷୁବ ମିଳନରେ ଉପସ୍ଥିତ ହେବା ପାଇଁ ଅଦମ୍ୟ ଉତ୍ସାହ । ମାତ୍ର କାର୍ଯ୍ୟବ୍ୟସ୍ତତା ପାଇଁ ନିରୁପାୟ ହୋଇ ବିଷୁବର ଚିନ୍ତା ମନରେ ଆସୁଥିବା ବେଳେ ଶ୍ରୋତୃମାନଙ୍କ ଉଦ୍ଦେଶ୍ୟରେ ଅନୁଭବବାର୍ତ୍ତା ପ୍ରେରିତ ହେଲା-"ବାସ୍ତବିକ ମୁଁ ଯୋଗଦେବାକୁ ବ୍ୟାକୁଳ । ବୃତ୍ତି ବାଧା ଦେଉ ନାହିଁ । ବାଧା ହେଉଛି ସାହିତ୍ୟ ଓ ରାଜନୀତି ମଧ୍ୟରେ ଧର୍ମ-ସଙ୍କଟ । ସବୁ କଥା ବିଚାରି ଯଦି ଯାଇନପାରେ, ତେବେ କ୍ଷମା ଦେବେ । ଏତିକି ଜାଣି ରଖିବେ ଯେ, ନଯାଇପାରି ମୁଁ ଅତି ବ୍ୟଥିତ । ମିଳନ ଶୁଭମୟ ହେଉ ।" ଏହି ପ୍ରାଣ ଖୋଲା ଭାଷାରେ କାହାର ମନ କିଣା ହୋଇନପାରେ । ଭାଷାର କାରିଗରୀରେ ପୁଣି ସେ ସାରସ୍ୱତ ଜଗତର ମଣିଦୀପ ହୋଇ ପାରନ୍ତି ।

ସଙ୍ଗଠକ ତଥା ଅନୁଷ୍ଠାନର କର୍ଣ୍ଣଧାର କ୍ଷୁଦ୍ର ପରିସର ଭିତରେ ନିଜକୁ ଆବଦ୍ଧ ନ ରଖି, ତା' ପରିସରକୁ ବିସ୍ତୃତ କରିବା ଉଚିତ । ଏହି ପରିସରରେ ସଂକୀର୍ଣ୍ଣତା ତାଙ୍କୁ ଗ୍ରାସ କରିପାରେ ନାହିଁ । ଏହି ଉଚ୍ଚ ଚିନ୍ତାର ବାହକ ହେଉଛନ୍ତି ଡ଼ଃ ମହତାବ । ସେଥିପାଇଁ ସେ କହିଥାଆନ୍ତି-"କ୍ଷୁଦ୍ର ପରିସରରେ ପରସ୍ପର ମତଭେଦ ଅତି ବେଶୀ ପ୍ରକାଶ ପାଏ । ଗ୍ରାମ୍ୟତା ପ୍ରଶ୍ରୟ ପାଇଥାଏ । କ୍ଷୁଦ୍ର ଚିନ୍ତା ପ୍ରାଧାନ୍ୟ ଲାଭ କରେ । ଏସବୁକୁ ଅତିକ୍ରମ କରିବାର ଉପାୟ ହେଉଛି ଉଚ୍ଚାଭିଳାଷ । ସେହି ଅଭିଳାଷର ଉଦ୍ରେକ କରାଇବା 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର କାର୍ଯ୍ୟ । ସେହି ଅଭିଳାଷର ବର୍ଦ୍ଧନ କରିବା 'ବିଷୁବ ମିଳନ'ର ଉଦ୍ଦେଶ୍ୟ । ସେହି ଅଭିଳାଷକୁ ରୂପରେଖ ଦେବା ସାହିତ୍ୟିକର ଧର୍ମ ।" ଏହା ସହିତ ସେ

କହିଥାଆନ୍ତି-"ଭୟ ଏବଂ ହୀନମନ୍ୟତା ଯାହା ଓଡ଼ିଶାର ସମସ୍ତ ଉତ୍କର୍ଷକୁ ମଳିନ କରିଦେଉଛି, ତାହାକୁ ହିଁ ଦୂର କରି ଉତ୍ସାହ ସୃଷ୍ଟି କରିବା ହେଉଛି ଏ ଅନୁଷ୍ଠାନର କାର୍ଯ୍ୟ । ସର୍ବୋପରି ବିଷୁବ ମିଳନ ହେଉଛି ସେହି ଭାବଧାରାର ବାହକ ।" ଏହି ମହାନ୍ ଚିନ୍ତାଧାରାରେ ବିଷୁବ ମିଳନ ଉଦ୍‌ବୁଦ୍ଧ ହୋଇଛି । ତା'ର ସେହି ମହନୀୟ ପରମ୍ପରାକୁ ବଜାୟ ରଖାଯାଇଛି । ଆଜି ଏହା ଅର୍ଦ୍ଧଶତାବ୍ଦୀ ଧରି ନିୟମିତ ଚାଲିଆସିବା ମୂଳରେ ସେହି ପୁଣ୍ୟଯଶା କର୍ଣ୍ଣଧାରଙ୍କ ମହାନୁଭବତା ହିଁ ଦାୟୀ ।

ତାଙ୍କ ବିୟୋଗରେ ହାତଗଢ଼ା ଅନୁଷ୍ଠାନ ଭାଙ୍ଗିଯାଉ । ତାହା ଅନ୍ୟର ପୃଷ୍ଠପୋଷକତାରେ ବଞ୍ଚିରହୁ । ଏହା ଡ଼ଃ. ମହତାବଙ୍କ ଚିନ୍ତାଧାରା ଥିଲା । ଏଥିପାଇଁ ସେ ସଚେତନ ହୋଇପଡ଼ି, ମୃତ୍ୟୁର ଦୁଇ ବର୍ଷ ପୂର୍ବରୁ ବିଷୁବ ମିଳନରେ ସ୍ୱାଗତ ସମ୍ଭାଷଣ ନିଜେ ଶୁଣାଇବାକୁ ଇଚ୍ଛୁକ ହୋଇ ନଥିଲେ । ଯୋଗ୍ୟ ଦାୟାଦ ଓ ଦକ୍ଷ ସଂଗଠକ ସୃଷ୍ଟି ଲାଗି ସେ ଆଗ୍ରହୀ ଥିଲେ । ୧୯୮୭ ମସିହାରେ ତାଙ୍କ ବିୟୋଗ ହେଲା । ମାତ୍ର ପୂର୍ବରୁ , ବିଷୁବ ମିଳନ ଯେପରି ତାଙ୍କ ମୃତ୍ୟୁରେ ନିଷ୍ପ୍ରଭ ହୋଇନଯାଏ, ସେଥିପ୍ରତି ଧ୍ୟାନ ଦେଇ ସେ କହିଥିଲେ- "ମୁଁ ନ ଥାଇ ବିଷୁବ ମିଳନ କେମିତି ହେବ, ମୁଁ ତାହା ଏବେ ଦେଖିବାକୁ ଚାହେଁ ।"

ଏହିପରି ଉଦାର ଓ ମହାନ ଚିନ୍ତାଧାରା ପାଇଁ ତାଙ୍କ ପ୍ରବର୍ତ୍ତିତ 'ବିଷୁବ ମିଳନ' ବଞ୍ଚି ରହିଛି । ଯାହାର ପରମ୍ପରା ସୁଦୃଢ଼ ଏବଂ ଐତିହ୍ୟ ସ୍ମରଣୀୟ, ସେହି ହିଁ ଟିକି ରହିବାକୁ ଯୋଗ୍ୟ । ଯେଉଁ ସଂଗଠନର ପୃଷ୍ଠଭୂମିରେ ନିଷ୍ଠା, ତ୍ୟାଗ ଓ ଆଦର୍ଶ ପରିପୂର୍ଣ୍ଣ, ସେହି ଇତିହାସ ବକ୍ଷରେ ସ୍ୱତନ୍ତ୍ର ସ୍ୱାକ୍ଷର ବହନ କରିପାରେ । ସ୍ୱାଗତ ସମ୍ଭାଷଣ ନମ୍ର ସ୍ୱରରେ କେବଳ ମୁଖରିତ ନୁହେଁ, ଆତ୍ମ ବିଶ୍ୱାସରେ ମଧ୍ୟ ସମୃଦ୍ଧ । ଗୋଟିକ ପରେ ଗୋଟିଏ ପାହାଚ ଅତିକ୍ରମ ପାଇଁ ଅନ୍ୟମାନଙ୍କର ସହଯୋଗ ଭିକ୍ଷା ବିଷୁବ ମିଳନ ପ୍ରଶସ୍ତ ହୃଦୟର ପରିଚାୟକ । ସଂଗଠକ ତଥା ପ୍ରତିଷ୍ଠାତା ଅନୁଷ୍ଠାନକୁ ବ୍ୟକ୍ତିଗତ ସମ୍ପତ୍ତି ବୋଲି ନଭାବି, ଏହା ଜାତିର, ଜାତୀୟ ସ୍ୱାର୍ଥ ପାଇଁ ଏହା ଉଦ୍ଦିଷ୍ଟ, ଏହି ଭାବଧାରା ହିଁ ସଂଗଠନକୁ କାଳଜୟୀ କରିଥାଏ । ବିଷୁବ ମିଳନ ସେହି ମହାନ ବାର୍ତ୍ତାର ପ୍ରତୀକ ଏବଂ ତା'ର ପ୍ରତିଷ୍ଠାତା ଡ଼ଃ ମହତାବ ହିଁ ମିଳନୋତ୍ସବର ପ୍ରେରଣା-ଉତ୍ସ ।

ସମ୍ପାଦକ,
ଉତ୍କଳ ପ୍ରଜ୍ୟପ୍ରଜ୍ଞା ସଂସଦ,
ମଠସାହି, ଭଦ୍ରକ-୭୫୬୧୦୦

• • •

## ସବୁଥିର କେନ୍ଦ୍ର ବିନ୍ଦୁ, ସମସ୍ତଙ୍କର ସମ୍ମାନାସ୍ପଦ

ମହତାବବାବୁଙ୍କ ସହିତ ମୋର ସମ୍ପର୍କ କିଛି ଦିନ ଅଧିକର ନୁହେଁ । ରାଜନୀତିକ ଜୀବନ ଆରମ୍ଭ ବେଳୁ ୧୯୩୦ ରୁ ଏକା ସାଙ୍ଗରେ କାମ କରିଛୁ । ଦୁଃଖ, କଷ୍ଟ ବରଣ କରିଛୁ । ତାଙ୍କର ଦୀର୍ଘ ରାଜନୀତିକ ଜୀବନରେ ସେ ବହୁ ଲୋକଙ୍କୁ ଗଢ଼ିଛନ୍ତି, ବହୁ ଲୋକଙ୍କୁ ଉଜାଡ଼ି ଦେଇଛନ୍ତି ।

କେହି ଯଦି ତାଙ୍କର ମସ୍ତିଷ୍କର ଏକ ଗବେଷଣା ବା ଅନୁଧ୍ୟାନ ଆଧୁନିକ ଯନ୍ତ୍ର ସାହାଯ୍ୟରେ କରି ଥାଆନ୍ତା, ସେ ବୋଧହୁଏ ନିଶ୍ଚିତ ଭାବରେ ଆବିଷ୍କାର କରି ଥାଆନ୍ତା ଏପରି ଏକ ମାନସିକ ଶକ୍ତି, ଯାହା ଏକାଧାରରେ ବହୁ ଦିଗରେ ଚାଳିତ ହେଉଛି । ବହୁ ଦିଗଦର୍ଶୀ ହୋଇ ଥିବାରୁ ସେ ନିଜର, ନିଜ ସାଥୀମାନଙ୍କର ଏବଂ ବିରୋଧୀଙ୍କର ଏକ ସୂକ୍ଷ୍ମ ମୂଲ୍ୟାୟନ କରି ପାରୁଥିଲେ । ସବୁଦିନ ପାଇଁ ସମ୍ପର୍କ ଛିନ୍ନିଯିବା ଅବସ୍ଥାକୁ ଯାଆନ୍ତି ନାହିଁ । ତାଙ୍କର ଅବିରତ ଉଦ୍ୟମ ଥିଲା । ଯାହା କିଛି ଘଟଣା ଘଟୁ ପଛକେ ସେ ସବୁଥିରେ ରହିଥିବେ କେନ୍ଦ୍ରବିନ୍ଦୁ ହୋଇ । ସମସ୍ତଙ୍କୁ ନେଇ ଚଳିବାହିଁ ପ୍ରକୃତ ନେତୃତ୍ୱ । ଲୋକେ ତାଙ୍କ ଉପରେ ବିରକ୍ତ ହୁଅନ୍ତି, କ୍ରୋଧ କରନ୍ତି । ତାଙ୍କଠୁ ସାହାଯ୍ୟ ପାଆନ୍ତି ନାହିଁ, କେହି ହୁଏତ ଚରମ ଶତ୍ରୁ ବୋଲି ବିଚାରନ୍ତି, ମାତ୍ର ତଥାପି ଦେଖାଯାଏ, ସେମାନେ ତାଙ୍କ ପାଖକୁ ଯାଆନ୍ତି କିମ୍ବା ସେ ସେମାନଙ୍କ ସହ ହେଲମେଳ ହେବାରେ କୁଣ୍ଠା କରନ୍ତି ନାହିଁ । ମୁଁ ଜାଣେ କେତେକ ଲୋକଙ୍କୁ ସେ ମନେ ମନେ ଅତି ଘୃଣା କରୁଥିଲେ ମାତ୍ର ତାଙ୍କ ସହ କଥାବାର୍ତ୍ତା ବା ଆଚରଣରେ ସେମାନେ ସେ ଭାବର ସୂଚନା ବି ପାଇପାରୁନଥିଲେ ।

ତାଙ୍କ ସହିତ ମୋର ରାଜନୀତିକ ବିରୋଧ ଥିଲା ସୈଦ୍ଧାନ୍ତିକ, ନୀତିଗତ-ବ୍ୟକ୍ତିଗତ ନୁହେଁ । ପରସ୍ପର ପ୍ରତି ସ୍ନେହ ଶ୍ରଦ୍ଧା ଓ ଭକ୍ତି ପୂର୍ଣ୍ଣ ମାତ୍ରାରେ ରହିଥିଲା । ୧୯୬୨ ରୁ ୧୯୬୭ ଲୋକସଭାରେ ଏକ ସାଙ୍ଗରେ ଥିଲୁ । ମୋରି ଗଳିରେ ସେ ବାସ କଲେ । ଏକ ପଡ଼ୋଶୀ ପରି ଯିବା ଆସିବା ଚାଲିଥିଲା ।

ସେ ଥିଲେ ଅଟଳ ଧର୍ମ ଓ ଭଗବତ ବିଶ୍ୱାସୀ । ଶେଷକୁ ଶ୍ରୀମାଙ୍କର ଭକ୍ତ ପାଲଟିଗଲେ । ମତେ କହିଲେ, ସେ ଓଡ଼ିଶାର ରାଜନୀତିରେ ଅତ୍ୟନ୍ତ ବିରକ୍ତ ହୋଇ ବିରତି ନେବା କଥା ଯେବେ ଚିନ୍ତା କରୁଥିଲେ, ସେତେବେଳେ ତାଙ୍କୁ ମାଆ ଡ଼କାଇ ପଠାଇ କହିଲେ-'ତୋର ଏହା ବିତୃଷ୍ଣା ନୁହେଁ, ବିରକ୍ତି, କ୍ରୋଧର ଭାବ । ତୁ ରାଜନୀତି ଛାଡ଼ି ପାରିବୁ ନାହିଁ । କାର୍ଯ୍ୟକ୍ଷେତ୍ର ବଦଳାଇ ଦେ । ଭୁବନେଶ୍ୱରରୁ ଦିଲ୍ଲୀ ଚାଲିଯା ।" ମହତାବବାବୁ ସେତେବେଳେ ବଡ଼ ମନଦ୍ୱିଧା ଭିତରେ ଥିଲେ । ଶ୍ରୀମାଙ୍କ ଉପଦେଶ ତାଙ୍କୁ ଏକ ନୂଆ ଆଲୋକ ଦେଖାଇଲା ଏବଂ ଲୋକସଭାକୁ ଆସିଲେ ।

ଓଡ଼ିଶାର ରାଜନୀତିକ ଓ ସାଧାରଣ ଜୀବନରେ ତାଙ୍କର ଅଖଣ୍ଡ ପ୍ରଭାବ ଓ ପ୍ରତିଷ୍ଠା ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ରାଜନୀତି କ୍ଷେତ୍ରରେ ସେ ଥିଲେ ଜଣେ ବିବାଦୀୟ ବ୍ୟକ୍ତିତ୍ୱ । ମାତ୍ର ସେ ଥିଲେ ସମସ୍ତଙ୍କର ଶ୍ରଦ୍ଧାଭାଜନ, ସମ୍ମାନାସ୍ପଦ । ଦେଶୀୟ ରାଜ୍ୟ ମିଶ୍ରଣ ତାଙ୍କର ଏକ ଅକ୍ଷୟ କୀର୍ତ୍ତି ଏବଂ ସେଥିପାଇଁ ଭାରତୀୟ ରାଜନୀତିରେ ଉଚ୍ଚସ୍ଥାନ ଲାଭ କରିଥିଲେ । ତାଙ୍କର ଯଶ ଭାରତ ଓ ଭାରତ ବାହାରେ ଫୁଟି ଉଠିଥିଲା । ଏପରି ବିବିଧ କର୍ମରେ କୁଶଳୀ ଓ ନିପୁଣ ବ୍ୟକ୍ତି ଭାରତରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ

# ମହତାବଙ୍କୁ ମୁଁ କାହିଁକି ମନେ ପକାଏ ?

• ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ

ମୁଁ ତାଙ୍କ ଦଳର ଲୋକ ନୁହେଁ । ବରଂ ଠିକ୍ ଓଲଟା । ମୁଁ ତାଙ୍କ ଦଳର ବିରୋଧୀ ଥିଲି । ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ମୁଁ ଜେଲ ଯାଇଛି, ଫେରାର ହୋଇଛି । ମୋ ଉପରେ 'ଦେଖିଲା ମାତ୍ରେ ଗୁଳିକର' ଆଦେଶ ଜାରୀ ହୋଇଛି ।

ସେ ଆଉ ନାହାନ୍ତି । ବଞ୍ଚିଥିଲେ ତାଙ୍କୁ ଶହେ ବର୍ଷ ହୁଅନ୍ତା । ସେ ଥିଲେ ସମ୍ପୂର୍ଣ୍ଣ ରାଜନୈତିକ ଲୋକ । ପେଶାରେ ନୁହେଁ, ବିଶ୍ୱାସରେ । ମୃତ୍ୟୁର ଉପକଣ୍ଠରେ ସେ ଆଖି ଖୋଲିଥିଲେ କିଛି ମୁହୂର୍ତ୍ତ ପାଇଁ ଏବଂ ପଚାରି ଥିଲେ "ଦିଲ୍ଲୀରୁ କିଛି ସମ୍ବାଦ ଆସିଲା କି ?" ମନେ ପଡୁଛି ବିଶ୍ୱକବି ରବୀନ୍ଦ୍ରନାଥଙ୍କ କଥା । ସେ ମଧ୍ୟ ମୃତ୍ୟୁର ଉପକଣ୍ଠରେ ଆଖି ଖୋଲିଥିଲେ ଏବଂ ପଚାରିଥିଲେ ପାଖରେ ବସିଥିବା ରାନୀ ମହାଲାନବିସ୍‌ଙ୍କୁ "ରାନୀ, ଯୁଦ୍ଧର ଖବର କି ?" ଏବଂ ସୋଭିଏଟ ସୈନ୍ୟବାହିନୀ ଜିତିବାକୁ ଆରମ୍ଭ କରିଥିବା ଜାଣି କହିଥିଲେ " ଆମି ଜାନି, ଓରା ମରତେ ପାରେନା । ପୃଥିବୀ ରକ୍ଷା ପେଏ ଗେଲେ" । ଠିକ୍ ସେଇପରି ନବକୃଷ୍ଣ ଚୌଧୁରୀ ଆଖି ଖୋଲିଥିଲେ କିଛି ସମୟ ପାଇଁ ମୃତ୍ୟୁ ପୂର୍ବରୁ ଏବଂ ପଚାରିଥିଲେ 'ସେ ଝିଅ ଦିଓଟି ଆସିଲେଣି ?'(ଦୁଇଟି ଝିଅଙ୍କୁ ନୁମା ଖରାଛୁଟି ପରେ ନ ଆସିବାକୁ କହିଥିଲେ, କ'ଣ ବିଶୃଙ୍ଖଳା କରିଥିଲେ ବୋଲି) । ଏମାନେ ହେଲେ ସମ୍ପୂର୍ଣ୍ଣ ନିବେଦିତ ମନୀଷ । ନିଜ ଘର, ପିଲାଛୁଆ, ସମ୍ପତ୍ତି କଥା ମନକୁ ଛୁଇଁ ନାହିଁ ଜୀବନରେ ଶେଷ ମୁହୂର୍ତ୍ତରେ । ଗୋଟାଏ କ'ଣ ଅଧୁରା ସେମାନଙ୍କ ମନରେ ସ୍ଥାନ ପାଇଛି ଏବଂ ମୃତ୍ୟୁ ଆସିବା ପୂର୍ବରୁ ସେଇଟା ହିଁ ଘାରିଛି ସେମାନଙ୍କୁ ।

ହରେକୃଷ୍ଣ ମହତାବଙ୍କୁ ମୁଁ ହେଜିବି ଏଇଥିପାଇଁ ଯେ ସେ ଏକ ନିଷ୍ପତ୍ତିମୂଳକ ବ୍ୟକ୍ତି ଥିଲେ । ଯାହା ନିଷ୍ପତ୍ତି କରୁଥିଲେ, ତାହା କାର୍ଯ୍ୟକାରୀ କରୁଥିଲେ । ଏଇ ନିଷ୍ପତ୍ତିମୂଳକ ସାହସ, ମନୋଭାବ କ୍ରମଶଃ ଲୋପ ପାଇଯାଉଛି । ପ୍ରତ୍ୟେକ ନାଗରିକ ଏହା ଉପଲବ୍ଧି କରୁଥିବେ । ଜଣେ ତାଙ୍କର ନିଷ୍ପତ୍ତି ସହିତ ଏକ ମତ ହୋଇ ନପାରେ କିନ୍ତୁ ସେ ଦୋହଲ ମୋହଲ ହେବାର ମଣିଷ ନ ଥିଲେ । ଆଜି ସେ ବାରବାଟୀ ଷ୍ଟାଡ଼ିୟମ ନିର୍ମାଣ ହୋଇଛି ତାହା ତାଙ୍କର ନିଷ୍ପତ୍ତି ଯୋଗୁଁ, ନଚେତ୍ ସରକାରୀ ଫାଇଲର ନଥିପତ୍ର ଭିତରେ ସେ ଜମି ପାଇବାର ନିଷ୍ପତ୍ତି ହଜିଯାଇ ଥାଆନ୍ତା । ନକ୍ସାରେ ବୃତ୍ତ କାଟି ସେ କହିଲେ "ଓ ଭୈରବାବୁ, କାମ ଆରମ୍ଭ ହେଉ କାଲିଠୁ । ସରକାରୀ ଫାଇଲର ଅର୍ଡ଼ର ପରେ ଆସିବ ।" ପାଖରେ ଠିଆ ହୋଇଥିଲେ ତତ୍‌କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ ମନି ଗୁହ ଏବଂ ଆର୍.ଡ଼ି.ସି., ଶ୍ରୀ ରାମନାଥନ । ସେ ନିଷ୍ପତ୍ତି କଲେ ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବ । ସେଇଦିନ ନିଷ୍ପତ୍ତି କାର୍ଯ୍ୟକାରୀ ହେଲା ଏବଂ ସେ ତତ୍‌କାଳୀନ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ପରଦିନଠାରୁ କାର୍ଯ୍ୟାରମ୍ଭ କରିବାକୁ କହିଲେ ।

ମହତାବବାବୁଙ୍କୁ ମୁଁ ମନେ ରଖିବି ଯେ ତାଙ୍କର ନିଷ୍ପତ୍ତିମୂଳକ କାର୍ଯ୍ୟ ଯୋଗୁ ହୀରାକୁଦ ବନ୍ଧ ନିର୍ମାଣ ସମ୍ଭବ ହେଲା ପ୍ରବଳ ପ୍ରତିରୋଧ ସତ୍ତ୍ୱେ । ସେଇଯୋଗୁଁ ସେଥିରେ କେତେକ ଗୁରୁତର ତ୍ରୁଟି ରହିଗଲା ସତ୍ୟ । ବୁଡ଼ି ଅଞ୍ଚଳର ଘର, ଗଛ, ମନ୍ଦିର ସବୁକୁ ସମତଳ ନ କରି ପାରିବା ଫଳରେ ମାଛଚାଷ, ନୌଚାଳନା ବ୍ୟାହତ ହେଲା । କିନ୍ତୁ ପାଣି ମାଡ଼ି ନ ଆସିଥିଲେ ଲୋକେ ଭିଟାମାଟି ଛାଡ଼ି ନଥାନ୍ତେ ।'

ମୁଁ ତାଙ୍କୁ ହେଜିବି ଏଇଥିପାଇଁ ସେ ହିଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାବରେ ଓଡ଼ିଶା ପୁଲିସ ପଠାଇ ନୀଳଗିରିର ମିଶ୍ରଣ କରାଇଥିଲେ ଓଡ଼ିଶା ସହିତ । ଏହା ଘଟିଥିଲା ଗଡ଼ଜାତ ମିଶ୍ରଣର ବହୁ ପୂର୍ବରୁ ଏବଂ ଏହି ମିଶ୍ରଣ, ସମ୍ପୂର୍ଣ୍ଣ ଗଡ଼ଜାତ ମିଶ୍ରଣର ଦ୍ୱାରକୁ ଉନ୍ମୁକ୍ତ କରିଥିଲା । ସର୍ଦ୍ଦାର ପଟେଲ ଗଡ଼ଜାତ ମିଶ୍ରଣ ପାଇଁ ଆସି ଓହ୍ଲାଇଲେ ଭୁବନେଶ୍ୱର ଉଡ଼ାଜାହାଜ ପଡ଼ିଆରେ ଏବଂ ମୋଟର ଯୋଗେ କାଠଯୋଡ଼ିରେ ଥିବା ଖଲାଦିନିଆ ରାସ୍ତାରେ ଆସିଲେ କଟକସ୍ଥିତ ରାଜଭବନକୁ । ସେ ଆସିବା ବାଟରେ ହରେକୃଷ୍ଣ ମହତାବ ଦଳ ଦଳ ବିକ୍ଷୋଭକାରୀଙ୍କୁ ଠିଆ କରାଇଥିଲେ ରାସ୍ତାତମାମ । ସେମାନେ ବିଭିନ୍ନ ଗଡ଼ଜାତର ପ୍ରଜାମଣ୍ଡଳମାନଙ୍କର ପତାକାଧରି ବିକ୍ଷୋଭ କରୁଥିଲେ ରାଜସାହୀର ଲୋପ ପାଇଁ । ସର୍ଦ୍ଦାର ପଟେଲ ରାଜଭବନରେ ପହଞ୍ଚିଲା ବେଳକୁ ମନସ୍ଥିର କରି ସାରିଥିଲେ ଯେ ରାଜସାହୀ ଲୋପ ହେବ ନଚେତ୍ ବିଦ୍ରୋହ ଅବଶ୍ୟମ୍ଭାବୀ ।

ମହତାବବାବୁଙ୍କୁ ମନେ ରଖିବି ଏଇଥିପାଇଁ ଯେ ସେ ଲୋକ ଚିହ୍ନିବାରେ ଥିଲେ ଓସ୍ତାଦ୍ । ବିଜୁ ପଟ୍ଟନାୟକ ଏବଂ ବୀରେନ୍ ମିତ୍ର ଥିଲେ ତାଙ୍କର ଘନିଷ୍ଠ ସହଯୋଗୀ ଏବଂ ଦୁଇହାତ । କିନ୍ତୁ ସେ ସେମାନଙ୍କ ଭିତରୁ କାହାକୁ ମନ୍ତ୍ରୀ କରି ନ ଥିଲେ । ଶାସନ ବାହାରେ ସେମାନଙ୍କର ଦକ୍ଷତା ଏବଂ ବ୍ୟବହାର ଦେଖା । ଶାସନକଳ ଭିତରେ ନୁହେଁ, ଏହା ସେ ଜାଣି, ସେମାନଙ୍କୁ ମନ୍ତ୍ରୀ କରି ନ ଥିଲେ । କାରଣ ଶାସନର ଟିକିନିଖି କାମ ପାଇଁ ସେ ଦୁହିଁଙ୍କର ଧୈର୍ଯ୍ୟ ବା ଇଚ୍ଛା ନଥିଲା । ପରବର୍ତ୍ତୀ କାଳରେ ଏହା ପ୍ରମାଣିତ ହୋଇଛି, ଏଥିରେ ସନ୍ଦେହ ନାହିଁ । ବିଜୁ ପଟ୍ଟନାୟକ ପାରାଦ୍ୱୀପ ବନ୍ଦର, ଏକ୍ସପ୍ରେସ୍ ହାଇୱେ, ମିଗ୍ କାରଖାନା, ସାର କାରଖାନା ପ୍ରଭୃତି କରିବା ପାଇଁ ସକ୍ଷମ ହୋଇ ପ୍ରବାଦ ପୁରୁଷରେ ପରିଣତ ହେଲେ କିନ୍ତୁ ଫାଇଲ ଭିତରେ ନୁହେଁ । ଫାଇଲର ନାଲି ବା ଧଳା ଫିତାକୁ କାଟି । କିନ୍ତୁ ଶାସନକଳ ଭଳିଆ ଯେ ଫାଇଲ ଭିତରେ ଅନେକ ନିଷ୍ପତ୍ତି ନ ନେଇ, ଫାଇଲର ଫିତାକୁ ବାନ୍ଧି ସେମାନେ ଅସୁବିଧାରେ ବି ପଡ଼ିଲେ । ଯାହା ଶାସନରେ ନ ଥାଇ କଳିଙ୍ଗ ଟ୍ୟୁବସ ବା କଳିଙ୍ଗ ଇଣ୍ଡଷ୍ଟ୍ରି ବା ଓଡ଼ିଶା ଟେକ୍ସଟାଇଲ ମିଲ୍ସ କରି ମଧ୍ୟ ସେ ଅସୁବିଧାର ସମ୍ମୁଖୀନ ହୋଇ ନଥିଲେ ।

ଡକ୍ଟର ହରେକୃଷ୍ଣ ମହତାବଙ୍କର ଉପସ୍ଥିତ ବୁଦ୍ଧି ଅନନ୍ୟ ସାଧାରଣ । ବେଢେଲ ଗେଟ୍‌ଙ୍କୁ ଯେଉଁ ଦିନ ହତ୍ୟା କରାଗଲା, ସେଇଦିନ ହରେକୃଷ୍ଣ ମହତାବ ଯାଉଥିଲେ ରଣପୁରକୁ ଉକ୍ତ ସଭାରେ ଭାଷଣ ଦେବାପାଇଁ । ବାଟରେ ଟାଙ୍ଗୀଠାରେ ଶୁଣିଲେ ବେଢେଲ ଗେଟ୍ ମର୍ଡ଼ର କଥା । ସେ ସାଙ୍ଗେ ସାଙ୍ଗେ ରଣପୁରବାସୀଙ୍କୁ ନିର୍ଦ୍ଦେଶ ଦେଲେ - ରଣପୁର ଛାଡ଼ି ସମସ୍ତେ ମୋଗଲବନ୍ଦୀ ଅଞ୍ଚଳକୁ ପଳାଅ । ଗଛ କାଟି ରାସ୍ତା ବନ୍ଦ କରିଦିଅ । ସାନ ସାନ ପୋଲ ସବୁ ଭାଙ୍ଗିଦିଅ । ତା ପରେ ଟାଙ୍ଗୀ ଥାନା, ଭୁବନେଶ୍ୱର ଥାନା ଏବଂ ଲାଲବାଗ ଥାନାରେ ଏଫ୍.ଆଇ.ଆର. ଦରଜ କରି ନିଜେ ସେଇ ସମୟରେ ସେଠାରେ ଉପସ୍ଥିତ ଥିବାର ପ୍ରମାଣ ସଂଗ୍ରହ କରି ତାର କପି ଆଣିଲେ । କାରଣ ସେ ଜାଣିଥିଲେ ଯେ ସେ ହତ୍ୟା ସମୟରେ ରଣପୁରରେ ଉପସ୍ଥିତ ନଥିଲେ ହେଁ ତାଙ୍କୁ ପ୍ରଥମ ହତ୍ୟାକାରୀ ବୋଲି ଅଭିଯୁକ୍ତ କରାଯିବ । ତାହା ହିଁ ହେଲା । ସରକାରୀ ଓକିଲ ତାଙ୍କୁ ହିଁ ଅଭିଯୁକ୍ତ କଲେ ଏବଂ ତାଙ୍କର ପ୍ରସିଦ୍ଧି ଯୋଗୁଁ "ବିବ୍ରତ" କରିବାରେ ସାଧାର ଅଭାବ ହେଲା ନାହିଁ ।

ସରକାରୀ ଓକିଲ ଥିଲେ ୰ ଚିନ୍ତାମଣି ଆଚାର୍ଯ୍ୟ ଏବଂ ରଣପୁରବାସୀଙ୍କ ଓକିଲ ଥିଲେ ୰ ଦୀନବନ୍ଧୁ ସାହୁ । କହିବା ବାହୁଲ୍ୟ ଯେ ସରକାରୀ ଓକିଲଙ୍କ ବୟାନ ସରିଲା ପରେ, ଯେତେବେଳେ ଦୀନବନ୍ଧୁ ବାବୁ ତାଙ୍କ ପକେଟ୍‌ରୁ ଏଫ୍.ଆଇ.ଆର୍. ସବୁ କାଢ଼ି କୋର୍ଟରେ ଉପସ୍ଥାପିତ କଲେ, ସେତେବେଳେ ସବୁ ଅଭିଯୋଗ ବ୍ୟର୍ଥ ହୋଇଗଲା ଏବଂ ମହତାବ ବାବୁଙ୍କର ଉପସ୍ଥିତ ବୁଦ୍ଧି ଯୋଗୁଁ ରଣପୁରବାସୀ ସାମରିକ ଅତ୍ୟାଚାରରୁ ରକ୍ଷା ପାଇଥିଲେ । କାରଣ ମିଲିଟାରୀ ପୋଲିସ ପହଞ୍ଚିବା ବେଳକୁ ରଣପୁର ଖାଲି ହୋଇଯାଇଥିଲା ଏବଂ ଓଡ଼ିଶା ପୁଲିସ ସମଗ୍ର ରଣପୁର ଅଞ୍ଚଳରେ ବିଛାଇ ହୋଇଯାଇଥିଲେ । ଓଡ଼ିଶା ପ୍ରଦେଶରେ ସେତେବେଳେ ଥିଲା କଂଗ୍ରେସ ଶାସନ !

ମହତାବବାବୁଙ୍କ ସାଙ୍ଗରେ କାମ କରୁଥିବା ଅନେକ ସହଯୋଗୀ ପରେ ତାଙ୍କ ଦଳର ବିରୋଧୀ ହୋଇଯାଇଛନ୍ତି । କିନ୍ତୁ ସେମାନଙ୍କର ନିଷ୍ଠା ଏବଂ ଦକ୍ଷତା ପ୍ରତି ତାଙ୍କର ସମ୍ମାନ ଥିଲା । ଶ୍ରୀ ବନମାଳୀ ଦାସ ତାଙ୍କର ସହଯୋଦ୍ଧା ଥିଲେ ପ୍ରଜାମଣ୍ଡଳ ଆନ୍ଦୋଳନରେ । କଂଗ୍ରେସ-କମ୍ୟୁନିଷ୍ଟ ମେଣ୍ଟ ପ୍ରଜାମଣ୍ଡଳ ଆନ୍ଦୋଳନ ଭାଙ୍ଗିଗଲା । ବନମାଳୀ ଦାସ କମ୍ୟୁନିଷ୍ଟ ପାର୍ଟିର ନେତା ଭାବରେ ରାଜନୈତିକ ବନ୍ଦୀ ହେଲେ । କଟକ ଜେଲରେ ତାଙ୍କର ଅବସ୍ଥାନ କାଳରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡ଼କ୍ଟର ହରେକୃଷ୍ଣ ମହତାବ ଏକ ଚିଠି ଲେଖିଥିଲେ ଜେଲ ସୁପରିଟେଣ୍ଡେଣ୍ଟଙ୍କୁ । "ବନମାଳୀ ଦାସ ମୋର ସହଯୋଦ୍ଧା, ବନ୍ଧୁ, ତେଣୁ ତାଙ୍କୁ ଜେଲଖାନା ଭିତରେ ସମସ୍ତ ସୁବିଧା ସୁଯୋଗ ଦେବ ।" କିନ୍ତୁ ସେ ବି ଜାଣିଥିଲେ ବନମାଳୀ ଦାସଙ୍କ କ୍ଷମତା କଥା । ଜେଲରୁ ସେ ଖସି ପଳାଇଥିଲେ ଜେଲର ସମେତ ୱାର୍ଡ଼ରମାନଙ୍କୁ "ଚିତ୍" କରି । ତେଣୁ ପରଧାଡ଼ିରେ ଲେଖାଥିଲା "କିନ୍ତୁ ସାବଧାନତାର ସହିତ, କାରଣ ଯେ କୌଣସି ସୁବିଧାକୁ ସେ ଅଲଗା ବ୍ୟବହାର କରିପାରନ୍ତି ।" ମହତାବବାବୁ କେଉଁଠି କିମିତି କଲେ-ତାଙ୍କର ସମ୍ମାନ, ପ୍ରତିଷ୍ଠା, ଲୋକପ୍ରିୟତା ବଢ଼ିଯିବ, ତା' ଜାଣିଥିଲେ । ଗୋଟିଏ ଦୁଇଟି ଉଦାହରଣ ଦେଲେ ଜାଣିହେବ କଥାଟାକୁ ।

୧୯୪୬-୧୯୫୧ର ବିଧାନସଭା । ମହତାବ ବାବୁ ପ୍ରଧାନମନ୍ତ୍ରୀ । ବୈଦ୍ୟନାଥ ରଥ ବିରୋଧୀଦଳରେ । ସେ ପ୍ରଧାନମନ୍ତ୍ରୀଙ୍କୁ ଆପଣ ନ କହି 'ତମେ' କହିଲେ । ଆପତ୍ତି ଉଠିଲା କଂଗ୍ରେସ ଦଳରୁ । ତମେ ସମ୍ବୋଧନଜନକ ଶବ୍ଦ ନୁହେଁ । ମହତାବବାବୁ କିନ୍ତୁ କହିଲେ, 'ତମେ' ହେଉଛି ସମ୍ବୋଧନଜନକ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଅଣାହେଲା ବିଧାନସଭାକୁ, ମହତାବ ବାବୁଙ୍କ ବିରୋଧ ସତ୍ତ୍ୱେ । 'ତମେ' ସମ୍ବୋଧନଜନକ ଶବ୍ଦ ବୋଲି ଗୃହୀତ ହେଲା ।

ପଣ୍ଡିତ ନେହେରୁ ଆସିବେ ରେଭେନ୍ସା କଲେଜକୁ । ୟୁନିଅନ ସଭାପତିଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଅଭିନନ୍ଦନ ପତ୍ର ପଢ଼ାଯିବ-ଏଇଥିପାଇଁ ବିବାଦ ଉପୁଜିଲା ଏବଂ ଅଚଳ ଅବସ୍ଥା ସୃଷ୍ଟି ହେଲା । ମହତାବ ବାବୁ ମୁଖ୍ୟମନ୍ତ୍ରୀ । ତାଙ୍କ ପର୍ଯ୍ୟନ୍ତ କଥା ଗଲା । ସେ ଦୁଇଟି ଯାକ ଚିଠା ପଢ଼ିଲେ ଏବଂ କଲେଜ ୟୁନିଅନ ଦ୍ୱାରା ପ୍ରସ୍ତୁତ ଚିଠାକୁ ଗ୍ରହଣ କଲେ । ଏଇ ଚିଠାରେ "ସମସ୍ୟା" କଥା ଲେଖା ଅଛି । ତେଣୁ "ସମସ୍ୟା" ଥିବା ଚିଠାକୁ ହିଁ ଗ୍ରହଣ କରିବା ଉଚିତ, ଏଇଥିଲା ତାଙ୍କର ମନ୍ତବ୍ୟ ।

ଭୈରବଚନ୍ଦ୍ର ମହାନ୍ତି ପାର୍ଲାମେଣ୍ଟ ସଭ୍ୟ ହେଲେ । ତାଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ସଭା ହେଲା ଓଡ଼ିଶା ଅଲିମ୍ପିକ୍ ଆସୋସିଏସନ୍ ଦ୍ୱାରା । ବକ୍ତାମାନଙ୍କ ମଧ୍ୟରେ ଥିଲେ ୰ ଡ଼କ୍ଟର ସଦାଶିବ ମିଶ୍ର । ତାଙ୍କର ଚିମିଟି ଦେବା ଅଭ୍ୟାସ ଥିଲା । ସେ କହିଲେ, "ଓଡ଼ିଆ ଜାତି, କଙ୍କଡ଼ା ଜାତି । ଭୈରବ ବାବୁଙ୍କୁ ପଛକୁ ଟଣାଯାଉଛି । ଏହା ସତ୍ତ୍ୱେ ଭୈରବବାବୁ ଉପରକୁ ଉଠିଛନ୍ତି ।" ମହତାବ ବାବୁଙ୍କ ପ୍ରତି ଏହା ଥିଲା ତାଙ୍କର ପରୋକ୍ଷ କଟାକ୍ଷ । ମହତାବ ବାବୁଙ୍କ ପାଳି ପଡ଼ିଲା ସଭାପତି ଭାବରେ । ମହତାବ ବାବୁ କହିଲେ, ଡ଼କ୍ଟର ସଦାଶିବ ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞ, ବୁଦ୍ଧିଜୀବୀ । କିନ୍ତୁ ସେ ଖେଳାଳୀ ନୁହନ୍ତି । ଖେଳାଳୀ ହେଲେ ଜାଣିଥାନ୍ତେ ଯେ ପଛକୁ ନ ଟାଣିଲେ କ'ଣ ଗୁଡ଼ି ଉପରକୁ ଉଠିପାରିବ ? ବଲକୁ ତଳକୁ ନ ମାରିଲେ ବଲ୍ କ'ଣ ଉପରକୁ ଉଠି ପାରିବ ?

ମହତାବ ବାବୁ ମାଟି ଶୁଙ୍ଘିବା ଜାଣନ୍ତି । ସେ ବା ତାଙ୍କର ସ୍ତ୍ରୀ ନିର୍ବାଚନରେ ହାରି ନାହାନ୍ତି । କେମିତି ନିର୍ବାଚନରେ ଜିତାଯାଏ, ସେ କଦର ତାଙ୍କୁ ବେଶ୍ ମାଲୁମ୍ । ମହତାବ ବାବୁ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ । ଜଣେ ବିଶିଷ୍ଟ ବ୍ୟକ୍ତି ତାଙ୍କ ପାଖରେ ଦିନେ ପହଞ୍ଚିଲେ । ମୁଁ ବସି ତାଙ୍କୁ ଓଡ଼ିଶାର ବୌଦ୍ଧ ଓ ଜୈନ ଧର୍ମ ଉପରେ ସଂଗୃହୀତ ଫଟୋରୁ କିଛି ଦେଖାଉଥାଏ । ଆଗନ୍ତୁକ ଜଣକ ଏପରି ବିଶିଷ୍ଟ ଯେ ତାଙ୍କୁ ଭେଟିବା ପାଇଁ ଅନୁମତି ନେବା ଦରକାର ନ ଥିଲା । ସେ ପହଞ୍ଚି କିଛି କହିବା ପୂର୍ବରୁ, ମହତାବ ବାବୁ ତାଙ୍କର ଉତ୍‌କ୍ଷିପ୍ତ ମନୋଭାବ ଦେଖି ନିଜ ପଟରୁ କହିବା ଆରମ୍ଭ କଲେ - ତମେ ଶହେ ପଚାଶବର୍ଷ ଆୟୁଷ ହେବ । ମୁଁ ଠିକ୍ ଏଇନା ତମକଥା ମନେ ପକାଇ ପଟ୍ଟନାୟକ ମହାଶୟଙ୍କୁ (ମୋତେ) ପଚାରୁଥିଲି ଯେ ଆମ ବନ୍ଧୁଙ୍କର ଦର୍ଶନ ଦେଖାନାହିଁ ? ପଚାରୁନାହାନ୍ତି ପଟ୍ଟନାୟକ ମହାଶୟଙ୍କୁ ! ବହିବା ବାହୁଲ୍ୟ ଯେ ମୋତେ ସେ ଆଦୌ କିଛି କହି ନାହାନ୍ତି । ତେଣୁ ମୁଁ ବାଧ ହୋଇ ଦାନ୍ତ ଦେଖାଇ ମୁଣ୍ଡ ଟୁଙ୍ଗାରିଲି । ତେଣିକି ତା' ହିଁ ବି ନାହିଁ ଯିଏ ଯାହା ବୁଝ ।

ମୋତେ ଆପଣ ଡ଼କାଇ ପଠାଇଲେ ନାହିଁ ? ସେ ଭଦ୍ରଲୋକଙ୍କ ପ୍ରଶ୍ନ । ମହତାବ ବାବୁଙ୍କର ତତ୍‌କ୍ଷଣାତ୍ ଉତ୍ତର : ସେଇ ପରା ଅସୁବିଧା ! ମୁଁ ଭାହାରି ହାତରେ ଡ଼କାଇ କଥାଟା ମାନେ ଦାୟିତ୍ୱ ବିଷୟ ପ୍ରଘଟ କରିବାକୁ ଚାହିଁଲି ନାହିଁ । କାରଣ ସେଇଟା ଗୋଟିଏ ଗୁରୁଦାୟିତ୍ୱ ଏବଂ ମୋର ସମ୍ମାନ, ଆମ ଦଳର ସମ୍ମାନ ନିର୍ଭର କରେ ତା' ଉପରେ । ଭଦ୍ରଲୋକଙ୍କ ରାଗ ଶାନ୍ତ ପଡ଼ିଲାଣି । ମହତାବ ବାବୁ କହିଲେ ଯେ ଛାଡ଼ନ୍ତୁ ଆପଣ ତ ଆସିଲେଣି, ପଟ୍ଟନାୟକ ମହାଶୟଙ୍କ ଉପସ୍ଥିତିରେ କଥାଟା ପଡ଼ିଯାଉ । କିଛି କ୍ଷତି ନାହିଁ । ସେ ତ ଆମ ନିଜ ଲୋକ(ମହତାବବାବୁଙ୍କ ଏପରି କଥାର ପ୍ରତିବାଦ କରିବା ସୌଜନ୍ୟ ଦୃଷ୍ଟିରୁ ଠିକ୍ ନୁହେଁ) । ମହତାବବାବୁ କହିବାକୁ ଆରମ୍ଭ କଲେ - ଆପଣ ତ ଗଲାଥର ଆମ ନିର୍ବାଚନରେ କର୍ପଟଦାର ଥିଲେ । ଏଥର କିନ୍ତୁ ତା' ଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ହେବ । ଆପଣ ଏଥର ପାଟି ଆଦୌ ଖୋଲିବେ ନାହିଁ । ପାଟି ଖୋଲିଲେ ଗଣ୍ଡଗୋଳ । ତେଣୁ ଆପଣଙ୍କୁ ଖୁବ୍ ସାବଧାନ ହେବାକୁ ପଡ଼ିବ । ଆପଣ ଚୁପ୍ ଚାପ ଖାଲି ବୁଲିବେ ଗୋଟିଏ ଏରିଆରୁ ଆଉ ଏରିଆକୁ । ଆମର କର୍ମୀ ଓ ନେତାମାନେ କ'ଣ କାମ କରୁଛନ୍ତି କି ନାହିଁ, ସେମାନଙ୍କ ଭିତରୁ କିଏ କିଛି ଷଡ଼ଯନ୍ତ୍ର କରୁଛି କି ନାହିଁ, କାହାର ପ୍ରଭାବ ଏଥର କ'ଣ, ଏ ସବୁ ବୁଝିବେ । ଆଉ ଆପଣଙ୍କ ଭଳି ପୋଖତ୍ ଲୋକ ଏ ଦାୟିତ୍ୱରେ ରହିଲେ ଆମେ ସବୁ ନିଶ୍ଚିନ୍ତ ରହିପାରିବୁ । ଅତଏବ ମୁଁ ନିଜେ ନିଶ୍ଚିତ ଭାବରେ ନିଶ୍ଚିନ୍ତ ରହିବି । ଆପଣଙ୍କ ଉପରେ ମୋର ଅଖଣ୍ଡ ଭରସା ।

ସେ ଲୋକ ତରଳି ଗଲେଣି । ଦି ହାତକୁ ବର୍ତ୍ତମାନ କୁଣ୍ଡାଇ କୁଣ୍ଡାଇ ଯୋଡ଼ ହସ୍ତ ହୋଇଗଲେଣି । କଣ ଆପଣ ଏ ଦାୟିତ୍ୱ ନେଇ ପାରିବେ ତ ?" ମହତାବବାବୁଙ୍କ ପ୍ରଶ୍ନର ଉତ୍ତରରେ ସେ କୃତ୍ୟ କୃତ୍ୟ ହେଲା ଭଳି କହିଲେ - ଆଜ୍ଞା, ଆପଣ ଦେଖନ୍ତୁ ନା...ମୁଁ ପ୍ରତିଦିନ ଆସି ଆପଣଙ୍କୁ ରିପୋର୍ଟ କରିବି । କହି କହି ସେ ଗଲେ ବାହାରକୁ !

ଆଶ୍ୱସ୍ତିର ଢଙ୍ଗରେ ମହତାବବାବୁ କହିଲେ ବଞ୍ଚିଗଲା ମଣିଷ ! ମୁଁ କୌତୂହଳ ମେଣ୍ଟାଇବାକୁ ପଚାରିଲି, ସେ ପରା ଆପଣଙ୍କର ନିଜର ଲୋକ । ଆପଣଙ୍କର ସେ ଥିଲେ ବଡ଼ ପ୍ରଚାରକ । ଆପଣଙ୍କୁ ଏଥର ସେ ଦାୟିତ୍ୱ ଦେଲେ ନାହିଁ କାହିଁକି ?

ମହତାବବାବୁ ଉତ୍ତର ଦେଲେ, ରାଜନୀତିରେ କେହି ଚିରସ୍ଥାୟୀ ବନ୍ଧୁ ବା ଶତ୍ରୁ ନାହାନ୍ତି । କାଲିର ଶତ୍ରୁ ଆଜିର ମିତ୍ର ହୋଇପାରେ, ଠିକ୍ ଓଲଟା ବି ହୋଇପାରେ ।

ଗଲାଥର ଏଇ ଭଦ୍ରଲୋକ ଆମର ବଡ଼ ପ୍ରଚାରକ ଥିଲେ ଏବଂ ସେଇ ସୁବିଧା ନେଇ ସେ ଏପରି କାମସବୁ କରିଛନ୍ତି ଯେ ତାଙ୍କୁ ଏଥରଟି ଖୋଲା କାମରେ ଲଗାଇବା ମାନେ ଭୋଟ ସବୁ ଗଲା । ତେଣୁ ତାଙ୍କୁ "ଗୁପ୍ତ" ଦାୟିତ୍ୱ ଦିଆଗଲା ଏବଂ ମଣିଷ ଏକ ବିରାଟ ବିପଦରୁ ମୁକ୍ତି ପାଇଲା ।

ଗୋଟାଏ କୌଣସି ନିର୍ବାଚନରେ ପ୍ରାର୍ଥୀ ତାଲିକା ପ୍ରସ୍ତୁତ ହେଉଛି । ମୋର ପାରିବାରିକ ବନ୍ଧୁ ହରିହର କରଣଙ୍କୁ କଂଗ୍ରେସ ଟିକଟ ଦେଲା ନାହିଁ । ସେ ଗୁରୁତର ଶ୍ୱାସରୋଗୀ । ସେତେବେଳକୁ ମଧ ସେ ଅସୁସ୍ଥ ଥାଆନ୍ତି । କ'ଣ କରିବେ ସ୍ଥିର କରି ପାରି ନଥାନ୍ତି । ହଠାତ୍ ମହତାବବାବୁ ମୋତେ ଫୋନ କରି ଭୁବନେଶ୍ୱର ଡ଼କାଇଲେ । ଭେଟିଲା ପରେ ପଚାରିଲେ, ପଟ୍ଟନାୟକ ମହାଶୟ, ହରିହର କରଣ ପରା ଆପଣଙ୍କର ନିବିଡ଼ ପାରିବାରିକ ବନ୍ଧୁ ! ସକାରାତ୍ମକ ଉତ୍ତର ପାଇ ସେ କହିଲେ, ଆପଣ ଟିକିଏ ଗଲେ ତାଙ୍କୁ ନେଇ ଏଠିକି ଆସିବେ । ସେ ଆମର ପ୍ରାର୍ଥୀ ହେବେ ଏବଂ ସେ ମଧ ଜିତିବେ ।

ଆପଣ କିମିତି ଜାଣିଲେ ବୋଲି ପଚାରିବାରୁ ସେ କହିଲେ, କାଲି ମୋତେ ନୟାଗଡ଼ ସହରରେ ଏକ ଫୁଟବଲ ମ୍ୟାଚ୍‌ରେ ଉପହାର ଦେବାକୁ ନିମନ୍ତ୍ରଣ କରାଯାଇଥିଲା । ସେଇଠି ଶୁଣିଲି । ସତକୁ ସତ ହରି ସେ ନିର୍ବାଚନରେ ବହୁ ଘାତ ପ୍ରତିଘାତ ସତ୍ତ୍ୱେ ଜୟଲାଭ କଲା ।

ମହତାବବାବୁ ଆଉ ନାହାନ୍ତି । ସେ ମହାପୁରୁଷ ନ ଥିଲେ । ଅବତାର ନଥିଲେ । ମାନବିକ ଦୋଷ ଦୁର୍ବଳତା, ରାଜନୈତିକ ନେତାର ପେଞ୍ଚବୁଦ୍ଧି ତାଙ୍କର ଥିଲା । କିନ୍ତୁ ଗଲାପରେ ସେ ସବୁକୁ କେବଳ ଗବେଷକମାନେ ଗବେଷଣା କରିବା ଉଚିତ, ଇତିହାସର ସମୀକ୍ଷା ପାଇଁ । କିନ୍ତୁ ଆମ ସାଧାରଣ ଲୋକଙ୍କ ପାଇଁ ମଣିଷର ମୃତ୍ୟୁ ପରେ ତା'ର ଜୀବନର ଆଲୋକିତ ଦିଗଗୁଡ଼ିକ କେବଳ ବିଚାର୍ଯ୍ୟ ହେବା ଉଚିତ । ନଚେତ୍ ତା' ହୋଇଯିବ ଏକ ହେଳନ୍ ଇନ୍ସପେକ୍ଟରର ମନୋଭାବ ।

ମହତାବବାବୁ ବମ୍ବେର ଗଭର୍ଣ୍ଣର ପଦବୀ ପୂରଣ କରି କଲିକତାବାଟ ଦେଇ ବମ୍ବେ ଯାଉଥାନ୍ତି । ବାଟରେ ବିଧାନଚନ୍ଦ୍ର ରାୟଙ୍କ ସାଙ୍ଗରେ ତାଙ୍କର ଭେଟ ହୁଏ । ସେ ହରେକୃଷ୍ଣ ମହତାବଙ୍କୁ କହିଲେ, ହରେକୃଷ୍ଣ, ତମକୁ କେତେଥର କହିଛି, ସବୁ କର କିନ୍ତୁ ପଣ୍ଡିତଙ୍କ ସାଙ୍ଗରେ ଲାଗନାହିଁ ବୋଲି । ତମେ କ'ଣ ଜାଣିନା ସେ ସୂର୍ଯ୍ୟ । ଦୂରରୁ ମାରନ୍ତି ଦୂରରେ କାହାକୁ ରହିଦିଏନା, ସମସ୍ତଙ୍କୁ ଜାଳିଦିଏ । ଯାଅ ଭଲରେ, ବମ୍ବେର ଲାଟ ହୋଇ ବେଶ୍ କିଛିଦିନ କଟାଇଦିଅ ଆରାମରେ । ମହତାବବାବୁ ସବୁବେଳେ କହନ୍ତି, ଆମ ପାର୍ଟି ହେଉଛି ନେହେରୁ ପାର୍ଟି । ନେହେରୁ, ପଟେଲଙ୍କ ମଣିଷ ପାର୍ଟି । ମହତାବବାବୁ କାହାକୁ ଛାଡ଼ିବା ଲୋକ ନୁହଁନ୍ତି । ମଧୁସୂଦନ ଦାସ ଜନ୍ମଥିଲେ ଉଦୟ ମାର୍ତ୍ତଣ୍ଡ ଭଳି ଓଡ଼ିଶାର । ମହତାବବାବୁ ହିଁ ପ୍ରଶ୍ନ ଉଠାଇଲେ ଯେ ଓଡ଼ିଶା ପ୍ରଦେଶ ଆଉ ନା ସ୍ୱାଧୀନତା ଆଗ । ମଧୁସୂଦନ ଦାସ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଭାରତୀୟ ଜାତୀୟ କଂଗ୍ରେସ ତ୍ୟାଗ କରିଥିଲେ । ମଧୁସୂଦନଙ୍କୁ ଏଇ ଇସୁ ଉପରେ ସେ ଏକାକୀ କରି ଦେଇଥିଲେ ଓଡ଼ିଶାର ରାଜନୈତିକ, ସାମାଜିକ ଆକାଶରେ । ବିଶ୍ୱନାଥ କର ଥିଲେ ଉତ୍କଳ ସାହିତ୍ୟର ସମ୍ପାଦକ, ବିଶାଳ ପ୍ରତିଭା । ତରୁଣ ମହତାବଙ୍କର ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିଲା । କେଉଁଟା ଆଗ, ଦେଶର ସ୍ୱାଧୀନତା ନା ଉତ୍କଳ ସାହିତ୍ୟ ? ଗୋପବନ୍ଧୁ ଦାସଙ୍କୁ ମଧ ସେ ବାଦେଇ ନ କରି ଛାଡ଼ିଲେ ନାହିଁ । Accounts should be like cashier's wife, beyond suspicion.

ସରୋଜିନୀ ନାଇଡୁ ୧୯୩୯-୪୦ ମସିହାରେ ଓଡ଼ିଶା ଆସିଥିଲେ । କଲେଜ ଛକରେ ଯେଉଁ ଘରେ ବର୍ତ୍ତମାନ ଓଡ଼ିଶା କୋ. ବ୍ୟାଙ୍କ ହୋଇଛି, ସେଇ ଘରେ ରହୁଥିଲେ । ମହତାବବାବୁ ସେତେବେଳେ ତରୁଣ । ମହତାବଙ୍କ ପିଠିରେ ହାତମାରି

ସରୋଜିନୀ କହିଲେ ଯେ Be careful of this product of orissa politics. ଚଣିଆ ଚିହ୍ନେ ସୁନାକୁ !

ମହତାବବାବୁଙ୍କର ସବୁ ମଣିଷ ପରି ଏକ ଦ୍ୱୈତ ବ୍ୟକ୍ତିତ୍ୱ ଥିଲା । ସମ୍ପୂର୍ଣ୍ଣ ରାଜନୈତିକ ମଣିଷ, ରାଜନୈତିକ ପଶାପାଲିର ଓସ୍ତାଦ ଖେଳାଳୀ ହରେକୃଷ୍ଣ ମହତାବଙ୍କର ଆଉ ଗୋଟିଏ ଦିଗ ଥିଲା ସଂସ୍କୃତି । ଇତିହାସ, ମଣିଷ ପ୍ରତି ଅନୁରାଗ, ଯାହା ଅନେକ ସମୟରେ ରାଜନୈତିକ ଢାଲରେ ଚାପା ପଡ଼ିଯାଉଥିଲା ।

"ଆଉ ଆପଣ କ'ଣ କରୁଛନ୍ତି ଆଜିକାଲି ?" ମହତାବବାବୁଙ୍କ ପ୍ରଶ୍ନ । "ବୌଦ୍ଧଦର୍ଶନ ଓ ଜୈନଦର୍ଶନ ଉପରେ ବିଚାର ଆଲୋଚନା"- ମୋର ଉତ୍ତର ।

"ସେମାନେ କୁଆଡ଼େ ଚାଲିଗଲେ ? ଚାଲନ୍ତୁ ସେ ଘରକୁ । ଏ ଘରେ ବୌଦ୍ଧ, ଜୈନ ଦର୍ଶନ ପାଇଁ ସ୍ଥାନ ନାହିଁ । ମହତାବବାବୁ କହିଲେ ।

ସେ ଘରେ ।

"କଣ ହେଲା ଆପଣଙ୍କର ? ଜୁହା ତରଳାଇବାକୁ ଏତେ କଷ୍ଟ କଲେ ଆଉ ତରଳିଲା ବେଳକୁ...... ?"

(ସେଇ ସମୟରେ କମ୍ୟୁନିଷ୍ଟମାନଙ୍କ ପାର୍ଟିର କଂଗ୍ରେସ ସହିତ ସମ୍ପର୍କ ବେଶ ନିବିଡ଼ ଏବଂ ସେଇ କଥାକୁ ଲକ୍ଷ୍ୟ କରି ମହତାବ କହୁଥିଲେ ଏଇ କଥା)

"ମୁଁ ଆପଣଙ୍କୁ ମୋ ମନକଥା କହିବି । ଆପଣ ବି ଆପଣଙ୍କ ମନକଥା କହିବେ । ମୁଁ ଆସିଥିଲି ଏକ ମଧ୍ୟବିତ୍ତ ପରିବାରରୁ । ପାଠ ମଧ୍ୟ ଖୁବ୍ ଭଲ ନ ହେଲେ ବି ଭଲ ପଢୁଥିଲି । ଚାହିଁଥିଲେ ଡ଼ିପୋଟିଟିଏ ହେବା, ଭଲ ଓକିଲଟିଏ ହେବା ମୋ ପାଇଁ ଖୁବ୍ ସହଜକର ଥିଲା । କିନ୍ତୁ ମୁଁ ରାଜନୀତି କରିବାକୁ ସ୍ଥିର କଲି, ସମାଜର ଗୁଣାତ୍ମକ ପରିବର୍ତ୍ତନ ପାଇଁ, ଏକ ସାମ୍ୟର, ସୁଖର ପୃଥିବୀ ଗଢ଼ିବା ପାଇଁ । ରାଜନୀତି ମୋର ପେଶା ନ ଥିଲା, ଏହା ଥିଲା ବିଶ୍ୱାସ । କିନ୍ତୁ ଯେଉଁ ମୁହୂର୍ତ୍ତରେ ଦେଖିଲି ରାଜନୀତି ଆଉ ବିଶ୍ୱାସରେ ସୀମିତ ନୁହେଁ, ଏହା ଏକ ବେଉସାରେ ପରିଣତ ହୋଇଛି ସେତେବେଳେ ଆଉ କ'ଣ କାମଥିଲା ମୋର ରାଜନୀତିରେ । ଆଉ ମୃତ୍ୟୁପରେ ପତାକା ଅର୍ଦ୍ଧନମିତ ହେଲା କି ନାହିଁ, କିଏ କେତେଥିରେ ଗଲା, ଫୁଲମାଳ ମିଳିଲା କି ନାହିଁ, କେଉଁ ପୃଷ୍ଠାରେ ମୃତ୍ୟୁ ସମ୍ବାଦ ଛପାହେଲା, ସେଥିରୁ କ'ଣ ମିଳିବ ମୋତେ ?

ଆପଣଙ୍କ କଥା ମୁଁ ପଚାରିବି ମାତ୍ର । ୧୯୨୧ର ସ୍ୱାଧୀନତା ସଂଗ୍ରାମୀଙ୍କ ସଂଖ୍ୟା ବର୍ତ୍ତମାନ ଆଙ୍ଗୁଠି ଅଗରେ ଗଣିହେବ । ଆପଣ କହିଲେ, ଅଗରପଡ଼ା ରାଜାଙ୍କ ପୁଅ ଆପଣ । କାହିଁକି ଆସିଥିଲେ ରାଜନୀତିକୁ ? ଗୋଟାଏ ମର୍ସିଡ଼େଜ ଗାଡ଼ି ପାଇଁ, ଗୋଟାଏ ଖବରକାଗଜ ପାଇଁ, ରାଜନୀତିକୁ ନ ଆସି କ'ଣ ଅଗରପଡ଼ା ରାଜାଙ୍କ ପୁଅ ଏସବୁ କରି ପାରି ନଥାନ୍ତେ ? ଆପଣଙ୍କର ମନେ ହେଉନି ଯେ ଆପଣ ଶାହାଜାହାଙ୍କ ପରି ଏଇ ଖବରକାଗଜ ଭିତରେ ବନ୍ଦୀ ବୋଲି ? ଏଇପରି ରହିଲେ ଦଶବାର ବର୍ଷ ପରେ ଯଦି ଆପଣଙ୍କର ପରଲୋକ ହୁଏ, ତା' ହେଲେ କେବଳ ଏକ ଖବର କାଗଜର ମାଲିକଙ୍କର ପରଲୋକ ହେଲା ବୋଲି ଖବରକାଗଜରେ ପ୍ରକାଶିତ ହେବ ବା ନାହିଁ । ନୀଳଗିରି, ରଣପୁର ପ୍ରଜା ଆନ୍ଦୋଳନ, ହୀରାକୁଦ ବନ୍ଧ, ଓଡ଼ିଶା ପ୍ରଦେଶ ଗଠନ, ଭାରତର ସ୍ୱାଧୀନତା ଆନ୍ଦୋଳନ....ସବୁ ତ ହଜି ଯାଉଥିବ ସ୍ମୃତି ପଟରୁ ଏବଂ ତା' ହେଲେ ଆପଣ କୁହନ୍ତୁ ଯେ ଆପଣଙ୍କର ଗୋଟାଏ କିଛି ସ୍ୱପ୍ନ ଥିଲା କି ନାହିଁ ଏବଂ ସେ ସ୍ୱପ୍ନ ଭାଙ୍ଗି ଯାଇଛି । ଆମେ ସବୁ ଦିଗଭ୍ରଷ୍ଟ ହୋଇ ବୁଲୁଛୁ ଆଉ ଏକ କକ୍ଷରେ କି ନାହିଁ ?

ପଶ୍ଚିମ ଆକାଶରେ ସୂର୍ଯ୍ୟ ବୁଡ଼ି ଯାଉଥିଲେ । ଝରକା କାଚ ଦେଇ ସୂର୍ଯ୍ୟ କିରଣ ସିଧା ପଡୁଥିଲା ମହତାବବାବୁଙ୍କ ଆଖିରେ । ଲୁହ ଭରି ଯାଉଥିଲା ତାଙ୍କର ଆଖିରେ । କଣ୍ଠ ହୋଇ ଯାଉଥିଲା ବାଷ୍ପରୁଦ୍ଧ ।

ଠିକ୍ କହିଛ । ଆମର ସବୁ ସ୍ୱପ୍ନ ଭାଙ୍ଗିଯାଇଛି । ଆମେ ସବୁ କକ୍ଷଚ୍ୟୁତ ଗ୍ରହ ପରି ବୁଲୁଛୁ କୁଆଡ଼େ କି କୁଆଡ଼େ ।

ଏଇ ସମୟରେ ନୀଳମଣି ବାବୁ, ବୀରେନ୍ଦ୍ର ମୋହନ ପଟ୍ଟନାୟକ ପଶି ଆସିଲେ ରୁମ୍‌କୁ । ମହତାବବାବୁ ଆଖି ପୋଛୁଥିଲେ ରୁମାଲରେ ।

ନୀଳମଣି ବାବୁ ପଚାରିଲେ, କ'ଣ କହିଲ କି ତମେ ମହତାବ ବାବୁଙ୍କୁ ? ମୁଁ ଉତ୍ତର ଦେବା ପୂର୍ବରୁ ମହତାବ ବାବୁ କହିଲେ, କଣ୍ଠରୁ ସଫାକରି । ଏଣିକି ତମେ ଆସିବ । ତମ ସାଙ୍ଗରେ ଆଉ ରାଜନୀତି କଥା ହେବ ନାହିଁ । ଆମେ କଥା ହେବା ଆମର ସ୍ୱପ୍ନ କଥା, ସଂସ୍କୃତି କଥା, ଆମ ଐତିହ୍ୟ କଥା । ମହତାବବାବୁଙ୍କ ସାଙ୍ଗରେ ମୋର ଆଉ କେବେ ରାଜନୀତି ବିଷୟରେ କଥା ହୋଇନାହିଁ । ହୋଇଚି ସଂସ୍କୃତି, ସାହିତ୍ୟ, ଇତିହାସ କଥା । ସେ କଥା ତ ସରିନାହିଁ ।

ମହତାବ ବାବୁ ଆଉ ନାହାନ୍ତି । କିନ୍ତୁ ମୁଁ ତାଙ୍କୁ ଦେଉଛି ସେଇ ଅର୍ଦ୍ଧ ସମ୍ପୂର୍ଣ୍ଣ କଥା, ବାକି ରହିଥିବା କଥା ସାରିବା ପାଇଁ ।

*ଟି. ୟୁନିଭର୍ସ, ମୈତ୍ରୀ ସରଣୀ, କଟକ-୧*

• • •

# ମୁଁ ତାଙ୍କୁ ଯେତିକି ଜାଣେ

• ଶ୍ରୀ ଯଦୁନାଥ ଦାଶମହାପାତ୍ର

ଆଗରପଡ଼ା ରାଜବଂଶ ସହିତ ମୋର ଥାନାନ୍ତର୍ଗତ କୁଢ଼େଇ ଗ୍ରାମର ପ୍ରଧାରାଜ ଜମିଦାର ବଂଶର ସମ୍ପର୍କ ଦୀର୍ଘଦିନର । ଦୁଇ ବଂଶର ସୁର୍ଯ୍ୟବନ୍ଧୁ ସମ୍ପର୍କ ଥିଲା । ଅର୍ଥାତ୍ ବିବାହ ବ୍ରତାଦି ଶୁଭ କର୍ମରେ ପରସ୍ପର ଘରେ ଗୁଆ ପଡୁଥିଲା । ମୋର ଜନ୍ମ ଏଇ କୁଢ଼େଇ ଜମିଦାର ବଂଶରେ । ତେଣୁ ଖୁବ୍ ପିଲାଦିନରୁ ପୂଜ୍ୟ ମହତାବ୍‌ବାବୁଙ୍କ ସମ୍ପର୍କରେ ଜାଣିଥିଲେ ମଧ୍ୟ ବ୍ୟକ୍ତିଗତ ଭାବରେ ତାଙ୍କୁ ଜାଣି ନଥିଲି । ୧୯୨୦ ମସିହାରେ ସେ ଓ ଗୋପବନ୍ଧୁ ଦାସ ପ୍ରଭୃତି ନାଗପୁର କଂଗ୍ରେସ୍ ଅଧିବେଶନରେ ଯୋଗ ଦେଇଥିଲେ ଓ ସେ ପାଠପଢ଼ା ଛାଡ଼ି ଦେଇଥିଲେ । ମହାତ୍ମାଗାନ୍ଧୀ ୧୯୨୧ ମସିହାରେ ଓଡ଼ିଶା ଆସିବାପରେ ଗୋପବନ୍ଧୁ ଓ ମହତାବ୍ ପ୍ରମୁଖ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ ଗିରଫ ହୋଇଥିଲେ । ପିଲାଟି ଦିନରୁ ମୁଁ ପିତୃହରା ହୋଇ ମୋ ବଡ଼ବାପା ଶ୍ୟାମସୁନ୍ଦର ଦାଶ ମହାପାତ୍ର (ଯେ କି ପୁରୀ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ଥିଲେ - ପୁରୀରେ ଗୋପବନ୍ଧୁ ଦାସଙ୍କ ସଂସ୍ପର୍ଶରେ ଆସି ଚାକିରିରୁ ଇସ୍ତଫା ଦେଇ ଚାଲି ଆସିଥିଲେ ଓ ସକ୍ରିୟ ଭାବେ କଂଗ୍ରେସ୍‌ରେ ସାମିଲ୍ ହୋଇଥିଲେ - ୧୯୩୫ ନିର୍ବାଚନରେ କଂଗ୍ରେସ୍ ତରଫରୁ ନିର୍ବାଚନ ଲଢ଼ି ପରାଜିତ ହୋଇଥିଲେ) ମହତାବ୍‌ବାବୁଙ୍କ ସମ୍ପର୍କରେ ଅନେକ କଥା କହୁଥିଲେ । ହାଇସ୍କୁଲ୍‌ରେ ପଢ଼ିବା ସମୟରୁ ମୁଁ ଲେଖାଲେଖି କରୁଥିଲି । ମୋର କଲେଜ ଜୀବନରେ ମହତାବ୍‌ବାବୁଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ହୋଇଥିଲା । ସେ ଯେତେବେଳେ କଟକରୁ "ପ୍ରଜାତନ୍ତ୍ର" ପ୍ରକାଶ କଲେ, ସେତେବେଳେ ରବିବାର "ପ୍ରଜାତନ୍ତ୍ର"ରେ ନିୟମିତ ଭାବେ କବିତା ଲେଖୁଥିଲି । "ଝଙ୍କାର" ପ୍ରକାଶ ପାଇବାପରେ ଏହାର ପ୍ରଥମ ବର୍ଷର ଦ୍ୱିତୀୟ ସଂଖ୍ୟାରେ ମୋ କବିତା "କୋଇଲି ଡ଼ାକିଲା କୁହୁ" ପ୍ରକାଶ ପାଇଥିଲା । ତା'ପରେ ମୁଁ ଯାଇ ତାଙ୍କୁ କଟକ ସ୍ୱରାଜ ଆଶ୍ରମରେ ଦେଖା କଲି । ସେ ମୋତେ କହିଲେ-"ଯଦୁନାଥ ! ତମ କବିତା ମୁଁ ପଢ଼ିଚି । ଲେଖ ଲେଖ ଆହୁରି ଲେଖ ।" ସେତେବେଳକୁ ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିଲେ । ତାଙ୍କର ଏଇ କଥା କେଇପଦ ମୋ ତରୁଣ ମନରେ ଅପୂର୍ବ ଉତ୍ସାହ ଖେଳାଇ ଦେଇଥିଲା । "ପ୍ରଜାତନ୍ତ୍ର" ଓ "ଝଙ୍କାର"ରେ ମୋର ବହୁ କବିତା ପ୍ରକାଶିତ ହୋଇଛି । ଏଥିପାଇଁ ମୁଁ ମହତାବ୍‌ଙ୍କ ନିକଟରେ ଆଜୀବନ ଋଣୀ । ବାଲେଶ୍ୱରରେ ସ୍ୱର୍ଗତ ଅନିରୁଦ୍ଧ ନନ୍ଦ "ପ୍ରଜାତନ୍ତ୍ର"ର ସମ୍ବାଦଦାତା ଥିଲେ । ମୁଁ କଲିକତା ବିଶ୍ୱବିଦ୍ୟାଳୟରୁ ଓକିଲାତି ପାଶ୍ କରି ବାଲେଶ୍ୱରରେ ଓକିଲାତି ଆରମ୍ଭ କଲି । ସ୍ୱର୍ଗତ ଅନିରୁଦ୍ଧ ନନ୍ଦଙ୍କ ସହ ମୋର ଘନିଷ୍ଠତା ଓ ତାଙ୍କ ସହ ମହତାବ୍ ବାବୁଙ୍କ ପାଖକୁ ବହୁଥର ଆସିଥିବା ଓ ଆଲୋଚନା କରିଥିବା ଆଜି ମୋର ସ୍ମୃତିପଟରେ ସତେଜ ଅଛି । ସେ ତତ୍‌କାଳୀନ ବମ୍ବେ ରାଜ୍ୟର ରାଜ୍ୟପାଳ ଥିବା ବେଳେ ମୁଁ ଓ ଅନିରୁଦ୍ଧ ନନ୍ଦ ବମ୍ବେ ଯାଇ ରାଜଭବନରେ ସାତଦିନ ରହିଥିଲୁ । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ନବକୃଷ୍ଣ ଚୌଧୁରୀ । ୧୯୫୬ରେ ମହତାବ୍ ପୁଣି ଓଡ଼ିଶାକୁ ଫେରି ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ନବବାବୁ ଇସ୍ତଫା ଦେଲେ । ତତ୍‌ପରବର୍ତ୍ତୀ ୧୯୫୭ ମସିହାର ଦ୍ୱିତୀୟ ସାଧାରଣ ନିର୍ବାଚନ ମହତାବ୍‌ବାବୁଙ୍କ ନେତୃତ୍ୱରେ କଂଗ୍ରେସ ଦଳ ଲଢ଼ିଲା । ସେତେବେଳକୁ ପୂର୍ବତନ ଗଡ଼ଜାତର କତିପୟ ରାଜା ବଲାଙ୍ଗୀର ପାଟଣା ରାଜ୍ୟର ପୂର୍ବତନ ଶାସକ ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ଗଣତନ୍ତ୍ର ପରିଷଦ ଗଠନ କରିଥିଲେ । ଏହି ଦଳ ମଧ୍ୟ ୧୯୫୭ ନିର୍ବାଚନରେ ଭାଗ ନେଇଥିଲା । ଏହି ନିର୍ବାଚନରେ କଂଗ୍ରେସ୍ ୫୬, ଗଣତନ୍ତ୍ର ପରିଷଦ ୫୧, ପ୍ରଜାସୋସାଲିଷ୍ଟ ପାର୍ଟି ୧୧ ଓ କମ୍ୟୁନିଷ୍ଟ ଦଳ ୯ଟି ଆସନ ଲାଭ କରିଥିଲା । ସଂଖ୍ୟାଗରିଷ୍ଠତା ନଥିଲେ ମଧ୍ୟ ନିଜର ରାଜନୈତିକ ବିଚକ୍ଷଣତା ଯୋଗୁ ମହତାବ୍‌ବାବୁ ମନ୍ତ୍ରିମଣ୍ଡଳ ଗଠନ କରି ଓଡ଼ିଶାର ଶାସନଭାର ଗ୍ରହଣ କରିଥିଲେ । ମାତ୍ର ଏହି ମନ୍ତ୍ରିମଣ୍ଡଳ ଚରମ ଅସ୍ଥିରତା ମଧ୍ୟରେ ଗତି କରିଥିଲା ଓ ୧୯୫୯ରେ ଗଣତନ୍ତ୍ର ପରିଷଦକୁ ମନ୍ତ୍ରିମଣ୍ଡଳରେ ସାମିଲ୍ କରିଥିଲା । ଏହାପରେ ମହତାବ୍‌ବାବୁଙ୍କର ପଟ୍ଟଶିଷ୍ୟ ସ୍ୱର୍ଗତ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର, ନୀଳମଣି ରାଉତରାୟ ପ୍ରମୁଖ ବିଦ୍ରୋହୀ ଗୋଷ୍ଠୀରେ ପରିଣତ ହୋଇଥିଲେ । ୧୯୬୧ ମସିହାରେ ବନମାଳୀ ପଟ୍ଟନାୟକଙ୍କୁ ହରାଇ ବିଜୁ ପଟ୍ଟନାୟକ ଓଡ଼ିଶା କଂଗ୍ରେସର ସଭାପତି ହୋଇଥିଲେ ଓ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଦେବାପାଇଁ ପରାମର୍ଶ ଦେଇଥିଲେ । ଏହା ହେଉଛି ୧୯୬୧ ମସିହା ଫେବ୍ରୁୟାରୀ ମାସ ତା ୧୪ ତାରିଖର କଥା । ସେତେବେଳେ ବିଧାନସଭାର ବଜେଟ୍ ଅଧିବେଶନ ଚାଲିଥାଏ । ଏହି ପରିସ୍ଥିତିରେ ଅର୍ଥମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ବିଧାନସଭାରେ ବଜେଟ୍ ପେଶ୍ କରିନଥିଲେ । ଫେବୃୟାରୀ ତା ୨୪ ରିଖରେ ଏହି ମନ୍ତ୍ରିମଣ୍ଡଳ ଭାଙ୍ଗିଯାଇ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା । ପରବର୍ତ୍ତୀ ଅବସ୍ଥାରେ ୧୯୬୧ ମସିହା ଜୁନମାସରେ ନିର୍ବାଚନ ହୋଇଥିଲା । ଏହି ନିର୍ବାଚନରେ କଂଗ୍ରେସର ନେତୃତ୍ୱ ନେଇଥିଲେ ବିଜୁପଟ୍ଟନାୟକ । କଂଗ୍ରେସ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା ଓ ମୁଖ୍ୟମନ୍ତ୍ରୀ ହୋଇଥିଲେ ବିଜୁପଟ୍ଟନାୟକ । ଏହାପରେ ମହତାବ୍‌ବାବୁ ନୀରବ ଦ୍ରଷ୍ଟା ହୋଇ କିଛି ବର୍ଷ ରହି ୧୯୬୬ ମସିହାରେ "ଜନକଂଗ୍ରେସ" ଗଠନ କରିଥିଲେ । ୧୯୬୧ ରୁ ୧୯୬୭ ମସିହାଯାଏ ଓଡ଼ିଶାର କଂଗ୍ରେସ ଶାସନ ମଧ୍ୟ ବହୁ ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲା । ଏହି ସମୟ ମଧ୍ୟରେ ୩ ଜଣ ମୁଖ୍ୟମନ୍ତ୍ରୀ ଓଡ଼ିଶାର ଶାସନଭାର ଗ୍ରହଣ କରିଥିଲେ । ଇତି ମଧ୍ୟରେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ଗଣତନ୍ତ୍ର ପରିଷଦ ଦଳ ରାଜଗୋପାଳଚାରୀଙ୍କ ସ୍ୱତନ୍ତ୍ର ଦଳରେ ମିଶିଯାଇଥିଲା । ୧୯୬୭ ମସିହା ନିର୍ବାଚନରେ କଂଗ୍ରେସ ଦଳ ୩୧ଟି ସ୍ଥାନ ପାଇଥିବା ବେଳେ ସ୍ୱତନ୍ତ୍ର ଦଳ ୪୯ ଓ ଜନକଂଗ୍ରେସ ଦଳ ୨୬ ଆସନପାଇ ମିଳିତ

ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ଓ ଜନକଂଗ୍ରେସ ସଭାପତି ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । କିନ୍ତୁ ମହତାବ୍‌ବାବୁଙ୍କର ଦୁର୍ଭାଗ୍ୟ ଯେ ମୁଖ୍ୟମନ୍ତ୍ରୀ ସିଂହଦେଓ ତାଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗର ତଦନ୍ତ କରିବା ପାଇଁ ମୁଧୋଲକର କମିଶନ୍ ବସାଇଥିଲେ । ମହତାବଙ୍କ ବ୍ୟତୀତ ନବକୃଷ୍ଣ ଚୌଧୁରୀ ଓ ଶାନ୍ତନୁ କୁମାର ଦାସ ଏହି ତଦନ୍ତ ପରିସରର ଅନ୍ତର୍ଭୁକ୍ତ ଥିଲେ । କମିଶନ୍ ଅନ୍ୟ ଦୁଇଜଣଙ୍କୁ ଦୋଷମୁକ୍ତ କରି ମହତାବଙ୍କ ବିରୁଦ୍ଧରେ ତିନୋଟି ଅଭିଯୋଗର ସତ୍ୟତା ଅଛି ବୋଲି ତାଙ୍କ ରିପୋର୍ଟରେ ଦର୍ଶାଇଥିଲେ । ଶ୍ରୀ ସିଂହଦେଓ ମହତାବ୍‌ଙ୍କଠାରୁ ଏହି ରିପୋର୍ଟକୁ ଲୁଚାଇ ରଖି ଏହି ତିନୋଟି ଅଭିଯୋଗର ଅଧିକ ଅନୁସନ୍ଧାନ ପାଇଁ ସରଯୂ ପ୍ରସାଦ କମିଶନ୍ ବସାଇଥିଲେ । ଏହି ସବୁ କମିଶନ୍ ରାଜନୈତିକ ବିଦ୍ୱେଷଭାବକୁ ଚରିତାର୍ଥ କରିବା ଛଡ଼ା ଆଉ କିଛି ନୁହେଁ ।

୧୯୬୯ ରାଷ୍ଟ୍ରପତି ନିର୍ବାଚନ ବେଳେ କଂଗ୍ରେସର ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ କଂଗ୍ରେସ ଦଳର ରାଷ୍ଟ୍ରପତି ପ୍ରାର୍ଥୀ ସଞ୍ଜୀବ ରେଡ୍ଡୀଙ୍କୁ ସମର୍ଥନ ନକରି ତାଙ୍କ ବିରୁଦ୍ଧରେ ଭି.ଭି. ଗିରିଙ୍କୁ ଛିଡ଼ା କରାଇ ଦିଥାଇଥିଲେ । ଏହି ସମୟରେ କଂଗ୍ରେସ ଦଳ ଶାସକ କଂଗ୍ରେସ ଓ ନିଜଲିଙ୍ଗପ୍ପା କଂଗ୍ରେସ ନାମରେ ଦୁଇଦଳରେ ବିଭକ୍ତ ହୋଇଥିଲା । ବିନାୟକ ଆଚାର୍ଯ୍ୟ, ନନ୍ଦିନୀ ଶତପଥୀ ପ୍ରମୁଖ କଂଗ୍ରେସ ଦଳକୁ ପରିଚାଳନା କଲେ । ୧୯୭୦ ମସିହା ରାଜ୍ୟସଭା ନିର୍ବାଚନରେ ବିଜୁ ପଟ୍ଟନାୟକଙ୍କୁ ପ୍ରାର୍ଥୀ କରାନଯିବାରୁ ସେ କଂଗ୍ରେସ ଦଳ ପରିତ୍ୟାଗ କରି "ଉତ୍କଳ କଂଗ୍ରେସ" ଦଳ ଗଠନ କଲେ । ଏହି ସମୟରେ ମହତାବ୍‌ବାବୁ ଜନକଂଗ୍ରେସ" ଦଳ ପରିତ୍ୟାଗ କରି "ସ୍ୱତନ୍ତ୍ର - ଜନ କଂଗ୍ରେସ" ସରକାରର ପତନ ଘଟାଇଲେ । ୧୯୬୭ ମସିହାରେ ମୁଁ ସୋର ନିର୍ବାଚନ ମଣ୍ଡଳୀରୁ ବିଧାନସଭା ପାଇଁ କଂଗ୍ରେସ ଦଳର ପ୍ରାର୍ଥୀ ଥିଲି । ସେ ସମୟଠାରୁ ୧୯୭୧ ମସିହା ପର୍ଯ୍ୟନ୍ତ ମହତାବ୍‌ବାବୁଙ୍କ ସହିତ ମୋର ସମ୍ପର୍କ ନଥିଲା । ୧୯୭୧ ମସିହାରେ ସେ ପୁନର୍ବାର କଂଗ୍ରେସ୍ ଦଳରେ ଯୋଗଦେଲେ ଓ ମୁଁ କଂଗ୍ରେସ୍ ଦଳଛାଡ଼ି ବିଜୁପଟ୍ଟନାୟକଙ୍କ "ଉତ୍କଳ କଂଗ୍ରେସ" ତରଫରୁ ସୋରରେ ପ୍ରତିଦ୍ୱନ୍ଦ୍ୱିତା କରି ଜିତିଲି ଓ ସ୍ୱତନ୍ତ୍ର - ଉତ୍କଳ କଂଗ୍ରେସ୍ ସରକାରରେ ଅର୍ଥ ଓ ସଂସ୍କୃତି ବିଭାଗର ଉପମନ୍ତ୍ରୀ ରହିଲି । ୧୯୭୨ ମସିହାରେ ଉପମନ୍ତ୍ରୀ ଥିବାବେଳେ ମହତାବ୍‌ଙ୍କଠାରୁ ନିମନ୍ତ୍ରଣ ପାଇଲି ସେ ବର୍ଷର ବିଷୁବ ମିଳନର କବିତା ପାଠୋତ୍ସବକୁ ଉଦ୍‌ଘାଟନ କରିବା ପାଇଁ । ଉଦ୍‌ଘାଟନ ଉତ୍ସବରେ ମଞ୍ଚ ଉପରେ ମହତାବ୍‌ବାବୁଙ୍କ ସହିତ ଅନ୍ତରଙ୍ଗ ଆଳାପ କରିଥିଲି । ୧୯୭୫ ମସିହାରେ ମୁଁ ଯେତେବେଳେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ଥିଲି, ସେତେବେଳେ ମହତାବ୍‌ବାବୁ ଓଡ଼ିଶା ବିଧାନ ସଭାର ସ୍ୱାଧୀନ ସଦସ୍ୟ ଥିଲେ । ମୁଖ୍ୟମନ୍ତ୍ରୀଙ୍କ ସହିତ ତାଙ୍କର ଭଲ ସମ୍ପର୍କ ନଥିଲା । ୧୯୭୫ ମସିହା ବିଷୁବ ମିଳନରେ ମୋତେ "ଝଙ୍କାର" କବିତା ପୁରସ୍କାର ଦିଆଯିବାକୁ ସ୍ଥିର କରାଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କ ଅସନ୍ତୋଷ ସତ୍ତ୍ୱେ ମୁଁ ଯାଇଥିଲି ।

ମୁଁ ଓ ଗଙ୍ଗାଧର ମହାପାତ୍ର ଅନେକ ମନ୍ତ୍ରିମଣ୍ଡଳରେ ଏକ ସଙ୍ଗେ ମନ୍ତ୍ରୀ ରହିବୁ ଓ ବହୁ ବିଷୁବ ମିଳନ ଉତ୍ସବରେ ଯୋଗ ଦେଉଛୁ । ଆମ ଦୁହିଁଙ୍କୁ ଦେଖିଲେ ମହତାବ୍‌ବାବୁ ଭାରି ଖୁସି ହୁଅନ୍ତି ।

୧୯୮୦ ମସିହା ନିର୍ବାଚନରେ ମୁଁ ୧୦୮ ଖଣ୍ଡ ଭୋଟ୍‌ରେ ହାରିଯାଇଥିଲି । ଭୁବନେଶ୍ୱର ଆସି ମହତାବ୍ ବାବୁଙ୍କୁ ସାକ୍ଷାତ କରିଥିଲି । ୧୦୮ ଖଣ୍ଡ ଭୋଟ୍‌ରେ ହାରିଯାଇଥିବାରୁ ସେ ମୋତେ ସମବେଦନା ଜଣାଇ କହିଥିଲେ-"ଦୁଃଖ କରିବାର କିଛି ନାହିଁ । ଆଉଥରେ ମାଡ଼ିଚାଲ ।"

ବାଲେଶ୍ୱର ଜିଲ୍ଲାର କୁପାରୀଠାରେ ମହତାବ୍ ବାବୁଙ୍କ ନାଁରେ ଗୋଟିଏ କଲେଜ ଅଛି । କଲେଜଟିର ନାମ "ଡକ୍ଟର ହରେକୃଷ୍ଣ ମହତାବ ମହାବିଦ୍ୟାଳୟ ।" ତାଙ୍କରି ଅନୁରୋଧରେ ମୁଁ ସେହି କଲେଜ୍ ପରିଚାଳନା ସମିତିର ସଭାପତି ଭାବରେ ଅନେକ ଦିନ ଥିଲି ।

୧୯୮୦ ମସିହାରେ ମୁଁ ସୋରରୁ ହାରିଥିଲେ ମଧ୍ୟ ପରବର୍ତ୍ତୀ ୧୯୮୫ ମସିହା ନିର୍ବାଚନରେ ବହୁ ଭୋଟରେ ଜିତିଥିଲି । ଭୋଟ ସଂଖ୍ୟା ଓ ଭୋଟ ବ୍ୟବଧାନରେ ମୁଁ ଓଡ଼ିଶାର ଦ୍ୱିତୀୟ ସ୍ଥାନରେ ଥିଲି । ମହତାବ୍‌ବାବୁ ଅନେକ ସମୟରେ ମୋତେ ଫୋନ୍ କରୁଥିଲେ ଲୋକମାନଙ୍କ ସମସ୍ୟା ସମ୍ପର୍କରେ । ତାଙ୍କ ଏକାମ୍ର ନିବାସକୁ ଯେତେବେଳେ ମୁଁ ଯାଇଛି, କିଛି ନା କିଛି ସାଧାରଣ ଲୋକଙ୍କୁ ମୁଁ ଦେଖିଛି । ମୃତ୍ୟୁ ପର୍ଯ୍ୟନ୍ତ ଲୋକ ତାଙ୍କୁ ଛାଡୁ ନଥିଲେ ।

ମହତାବ୍‌ବାବୁ ମୋତେ ଏତେ ସ୍ନେହ କରୁଥିଲେ ତାହା ମୋ ଜୀବନରେ ଅଭୁଲା । ଗୋଟିଏ ଦୃଷ୍ଟାନ୍ତ ଏଠାରେ ମୁଁ ଉଲ୍ଲେଖ କରିବାକୁ ଚାହୁଁଛି । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳରେ ମୁଁ ଥାଏ । ଦିନେ ସକାଳେ ପ୍ରଭାତ ଭ୍ରମଣ କରିବା ପାଇଁ କବାଟ ଖୋଲି ମୁଁ ଦେଖିଲି ଜଣେ ଯୁବକ ବାରଣ୍ଡାରେ ଛିଡ଼ା ହୋଇଛନ୍ତି । ମୁଁ ବାହାରିବାମାତ୍ରେ ସେ ମୁଣ୍ଡ ନୁଆଁଇ ମୋତେ ପ୍ରଣାମ କଲେ । ତାଙ୍କର ପରିଚୟ ପଚାରିବାରୁ ସେ କହିଲେ-" ମହତାବ୍ ବାବୁ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି, ମୋ ନାଁ ସୁର ରାଉତ୍‌ରାୟ " । ମୁଁ ପଚାରିଲି-"କେଉଁ କାମ ପାଇଁ ପଠାଇଛନ୍ତି ?"

ସେ କହିଲେ-"ଆମ କଟଣୀ ପାଖରେ ଦୋଳ ବେଳେ ଏକ ବଡ଼ ମେଳଣ ହୁଏ । ମହତାବ୍ କହିଛନ୍ତି ଏଥର ଆପଣ ଯାଇ ମେଳଣ ଉଦ୍‌ଘାଟନ କରିବେ । ଆପଣଙ୍କର ସମୟ ଥିବ କି ନାହିଁ ମୁଁ କହିବାରୁ ସେ କହିଲେ ତାଙ୍କୁ କହିବ, ମୁଁ କହିଚି, ସେ ସମୟ କରି ନିଶ୍ଚୟ ଯିବେ ।"

ଏହା କହି ଖଣ୍ଡିଏ ଦରଖାସ୍ତ ସେ ମୋ ହାତକୁ ବଢ଼ାଇ ଦେଲେ । ମୁଁ ଦରଖାସ୍ତଟା ନେଇ ପକେଟ୍‌ରେ ରଖିଦେଇ କହିଲି "ମୁଁ ନିଶ୍ଚୟ ଯିବି । ମହତାବ୍ ବାବୁଙ୍କୁ କହିଦେବ ।"

ସୁରବାବୁ କୃତକୃତ୍ୟ ହୋଇ ଚାଲିଗଲେ । ନିର୍ଦ୍ଧାରିତ ଦିନ ମୁଁ ଗଲି ଏବଂ ସେଠାକାର ଆୟୋଜନ ଦେଖି ବିହ୍ୱଳ ହେଲି । ସେ ଦିନର ସୁର ରାଉତରାୟ ହେଉଛନ୍ତି ଆଜିର ମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ । ଜୀବନର ସାୟାହ୍ନରେ ସେ ଯେତେବେଳେ ଏକାମ୍ର ନିବାସରେ ରୋଗଶଯ୍ୟାରେ ଥିଲେ, ସେତେବେଳେ ମୁଁ ତାଙ୍କୁ ଦେଖିବାକୁ ଯାଉଥିଲି । ମୃତ୍ୟୁର ଦୁଇଦିନ ପୂର୍ବରୁ ମୁଁ ତାଙ୍କ ରୋଗଶଯ୍ୟା ପାଖରେ ବସିଥାଏ । ସେ ମୋତେ ଚାହିଁ କହିଲେ "ଯଦୁନାଥ ! ରାଜନୀତି କରୁଛ । ଗୋଟିଏ କଥା ମନେ ରଖିଥିବ । ରାଜନୀତିରେ ସହନଶୀଳତା ହିଁ ସବୁଠୁ ବଡ଼ ଗୁଣ ।"

ଦୁଇଦିନ ପରେ ତାଙ୍କର ଅମରଆତ୍ମା ଇହଧାମରୁ ବିଦାୟ ନେଲା । ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ମନ୍ତ୍ରୀ ହିସାବରେ ଶବ ଦାୟିତ୍ୱରେ ମୁଁ ଆଗରପଡ଼ା ପର୍ଯ୍ୟନ୍ତ ଯାଇଥିଲି । ଶବାଧାର କଟକ ଓ ଭଦ୍ରକ ବାଟ ଦେଇ ଆଗରପଡ଼ା ଯାଉଥିବାବେଳେ ବାଟରେ ବହୁସ୍ଥାନରେ ଅଗଣିତ ଜନତା ଶବାଧାରରେ ପୁଷ୍ପଗୁଚ୍ଛ ଅର୍ପଣ କରୁଥିଲେ । ଅନେକଙ୍କ ଅଶ୍ରୁଳ ନୟନରୁ ଧାରଧାର ଲୋତକ ଝରୁଥିଲା । ଯୁଗସ୍ରଷ୍ଟା ମଣିଷଙ୍କର ନିର୍ଜୀବ ଶରୀରକୁ ଦେଖି କିଏ ବା କୋହ ସମ୍ଭରଣ କରି ପାରିବ ? ଶବାଧାର ପ୍ରାୟ ୫ଟା ସମୟରେ ଆଗରପଡ଼ାରେ ପହଞ୍ଚିଲା । ତୋପ ସଲାମି ଦିଆଯାଇ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ଶବକୁ ଯେତେବେଳେ ଚୁଲିରେ ଶୁଆଇ ଦିଆଗଲା, ସେଠାରେ ଉପସ୍ଥିତ ହଜାର ହଜାର ଆବାଳବୃଦ୍ଧ ବନିତା "ଭୋ ଭୋ" କରି କାନ୍ଦି ଉଠିଲେ । ଶ୍ରୀ ଭର୍ତ୍ତୃହରି ମହତାବ୍ ମୁଖାଗ୍ନି ଦେଲେ । ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଅନ୍ୟ ବହୁ ମନ୍ତ୍ରୀ ଓ ମାନ୍ୟଗଣ୍ୟ ବ୍ୟକ୍ତି ଏହି ସମୟରେ ଉପସ୍ଥିତ ଥିଲେ । ଘଣ୍ଟାଏ ଭିତରେ ସବୁ ଶେଷ । ତାଙ୍କ ମର ଶରୀର ପାଉଁଶ ହୋଇଗଲା । ନବ ଉତ୍କଳର ନିର୍ମାତା ଯୁଗ ପୁରୁଷଙ୍କର ଶୂନ୍ୟସ୍ଥାନ ଅପୂରଣୀୟ ।

ତାଙ୍କର ପ୍ରଥମ ପ୍ରଧାନମନ୍ତ୍ରିତ୍ୱ କାଳରେ ବହୁ ବିରୋଧ ସତ୍ତ୍ୱେ ସେ ହୀରାକୁଦ ବନ୍ଧ ନିର୍ମାଣର ଶୁଭାରମ୍ଭ କରିଥିଲେ । ନଦୀଘେରା କଟକରୁ ରାଜଧାନୀ ଅନ୍ୟତ୍ର କରାଯିବା ପାଇଁ ଯେଉଁସବୁ ସ୍ଥାନର ପ୍ରସ୍ତାବ ଥିଲା, ତାହା ଠିକ୍ ନୁହେଁ ବୋଲି ସେ ବିଚାର କରି ଭୁବନେଶ୍ୱରକୁ ନୂଆ ରାଜଧାନୀ କରିବାରେ ନିଷ୍ପତ୍ତି ନେଇଥିଲେ । ତା ୩୦/୯/୪୬ ରିଖରେ ସେ ଓଡ଼ିଶା ବିଧାନ ସଭାରେ ଏକ ସର୍ବ ସମ୍ମତ ପ୍ରସ୍ତାବ ଗୃହୀତ କରାଇଥିଲେ । ଗୋଟିଏ ବାକ୍ୟର ସେହି ପ୍ରସ୍ତାବଟି ନିମ୍ନ ପ୍ରକାରେ ।

"That the capital of the province be located at Bhubaneswar and steps be taken to construct the building of the Capital as early as possible"

ତା ୧୦।୧୦।୧୯୪୯ ରିଖ ଦିନ ଓଡ଼ିଶାର ରାଜଧାନୀ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହୋଇଥିଲା । ତାଙ୍କରି ପ୍ରଚେଷ୍ଟାରେ କଟକଠାରେ ଓଡ଼ିଶା ହାଇକୋର୍ଟ, ଆକାଶବାଣୀ କେନ୍ଦ୍ର, ବାରବାଟୀ ଷ୍ଟାଡ଼ିୟମ ନିର୍ମାଣ ପ୍ରଭୃତି ସମ୍ଭବ ହୋଇଥିଲା । ତାଙ୍କରି ସାହାଯ୍ୟରେ ଶିଳ୍ପଶୂନ୍ୟ ଓଡ଼ିଶାରେ କିଛି ଶିଳ୍ପ ପ୍ରତିଷ୍ଠା ମଧ୍ୟ କରାଯାଇଥିଲା । ଦେଶୀୟ ରାଜ୍ୟ ସମୂହକୁ ଓଡ଼ିଶାରେ ମିଶାଇ ଓଡ଼ିଶା ପ୍ରଦେଶର କଳେବର ବୃଦ୍ଧି କରିବା ତାଙ୍କରି ଉଦ୍ୟମର ଫଳ । ଭାରତ ସରକାରଙ୍କ ତତ୍କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ଲୌହମାନବ ସର୍ଦ୍ଦାର ପଟେଲ୍ ଓ ସେ ଯେଉଁଭଳି ଭାବେ ଏହି କାର୍ଯ୍ୟ ସମ୍ପାଦନ କରିଥିଲେ, ତାହା ଚିରଦିନ ଇତିହାସ ପୃଷ୍ଠାରେ ସମୁଜ୍ଜ୍ୱଳ ରହିବ ।

ବାରବାଟୀ ଷ୍ଟେଡ଼ିୟମ୍ ଓଡ଼ିଶା ଅଲିମ୍ପିକ୍ ଏସୋସିଏସନର ଅଧୀନରେ ରହିଥିଲା ଓ ଏବେ ବି ରହିଛି । ମହତାବ୍ ବାବୁ ଥିଲେ ଓଡ଼ିଶା ଅଲିମ୍ପିକ୍ ଏସୋସିଏସନର ଆଜୀବନ ସଭାପତି । ତାଙ୍କ ମୃତ୍ୟୁପରେ ଏହାର ଉପ ସଭାପତି ଶ୍ରୀ ବସନ୍ତ କୁମାର ବିଶ୍ୱାଳ କିଛି ଦିନ ପାଇଁ ଅସ୍ଥାୟୀ ଭାବରେ ସଭାପତି ଦାୟିତ୍ୱ ତୁଲାଉଥିଲେ । ଏହା ବିରୁଦ୍ଧରେ କିଛି ସଭ୍ୟ ମାନ୍ୟବର ହାଇକୋର୍ଟରେ ମୋକଦ୍ଦମା ଦାଏର୍ କରିଥିଲେ ଓ ଏହାପରେ ମାନ୍ୟବର ହାଇକୋର୍ଟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅଲିମ୍ପିକ୍ ଏସୋସିଏସନ୍ କର୍ମକର୍ତ୍ତା ନିର୍ବାଚନ ହୋଇଥିଲା । ସଭାପତି ପାଇଁ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଓ ମୋ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା । ଏହି ନିର୍ବାଚନରେ ଶ୍ରୀ ବିଶ୍ୱାଳଙ୍କୁ ହରାଇ ମୁଁ ଜୟଯୁକ୍ତ ହୋଇଥିଲି ଓ ଆଜୀବନ ସଭାପତି ଥିବା ମହତାବଙ୍କ ଦେହାନ୍ତ ପରେ ମୁଁ ହିଁ ବିଧିବଦ୍ଧଭାବେ ସଭାପତି ନିର୍ବାଚିତ ହୋଇ ୪ ବର୍ଷ ଏହାର ସଭାପତି ଥିଲି । ସ୍ୱର୍ଗପୁରରେ ଥାଇ ସେ ମୋତେ ଆଶୀର୍ବାଦ କରି ନଥିଲେ ଏହା ସମ୍ଭବ ହୋଇନଥା'ନ୍ତା ।

ମୃତ୍ୟୁ ପର୍ଯ୍ୟନ୍ତ କର୍ମଠ ଥିବା ମହତାବ୍ ବାବୁଙ୍କ ଜୀବନ ଅନେକ ସମୟରେ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇଥିଲେ ବି ବହୁକ୍ଷେତ୍ରରେ ସଫଳତାର ସ୍ୱାକ୍ଷର ବହନ କରିଛି । ମାନବତାର ପ୍ରତୀକ, ସଫଳ ରାଜନୀତିଜ୍ଞ, ଐତିହାସିକ ଓ ସାହିତ୍ୟିକ ମହତାବ୍ ମୋ ନିକଟରେ ଆଜି ବି ଜୀବନ୍ତ, ଆଜି ବି ଅମ୍ଳାନ ।

୨୧୨/୭ ବିମାନଘାଟୀ ଅଞ୍ଚଳ, ଭୁବନେଶ୍ୱର-୨୦

• • •

## ଭାରତର ବରପୁତ୍ର

ପ୍ରଦେଶ ଓ ଦେଶପାଇଁ ବହୁବିଧ ସେବାର ପ୍ରତିଦାନ ଦେବା ଅସମ୍ଭବ । ଡକ୍ଟର ମହତାବ ଉଦୟର ସେବାରେ ଏକନିଷ୍ଠ ଉତ୍ସାହ ଓ ଅନୁଗତ ରହି କାର୍ଯ୍ୟ କରିଛନ୍ତି । ଇତିହାସ ତାଙ୍କୁ ନବୀନ ଓଡ଼ିଶାର ସ୍ରଷ୍ଟା ରୂପେ ସ୍ମରଣ କରୁଥିବା ବେଳେ ଦେଶ ତାଙ୍କୁ ତାର ଗୋଟିଏ ସାହସୀ ଓ କର୍ତ୍ତବ୍ୟ ପରାୟଣ ପୁତ୍ର ରୂପେ ସ୍ନେହ କରୁଥିବ ।

ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ

# ମହତାବଜୀ : ଏକ ପ୍ରଣମ୍ୟ ସ୍ମୃତି

ଶ୍ରୀ ରବି ସିଂ

ସେ ମୋ ପାଖରେ ଡକ୍ଟର ହରେକୃଷ୍ଣ ମହତାବ ନୁହଁନ୍ତି, 'ପ୍ରିୟ ମହତାବଜୀ' । ସେ ଆଜି ନାହାନ୍ତି । କିନ୍ତୁ ଦୀର୍ଘ ତିନି ଦଶକରୁ ଊର୍ଦ୍ଧ୍ୱକାଳ ଧରି ତାଙ୍କ ସହିତ ମୋର ଆତ୍ମିକ, ସାହିତ୍ୟିକ, କହିବାକୁ ଗଲେ ପାରିବାରିକ ସମ୍ପର୍କ ଦୃଷ୍ଟିରୁ ସେ ମୋ ଭିତରେ ମୋ ଅନ୍ତରର ଅଭ୍ୟନ୍ତରରେ ଜୀବିତ ରହିଛନ୍ତି ନାନା ଭାବରେ– ରହିବେ ମୋର ସ୍ମୃତିକୋଷଗୁଡ଼ିକ କର୍ମକ୍ଷମ ଥିବା ପର୍ଯ୍ୟନ୍ତ ।

ମହତାବଜୀ ଥିଲେ ମୋର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ପିତା ସ୍ୱର୍ଗତ ରାମଚନ୍ଦ୍ର ସିଂଙ୍କ ସହକର୍ମୀ । ଏହି ଘଟଣାର ଭିତ୍ତିଭୂମି ଉପରେ, ତାଙ୍କ ସହିତ ମୋର ସମ୍ପର୍କ କ୍ରମବର୍ଦ୍ଧିତ ହୋଇ ପରିଣତି ଲାଭ କରିଥିଲା ।

ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମୋର କ୍ରମ ନବଉତ୍ଥାନ ଥିଲା ମହତାବଜୀଙ୍କ ପକ୍ଷରେ କେବଳ ଆନନ୍ଦର ବିଷୟ ନୁହେଁ, ପ୍ରଶାନ୍ତିକର । ସାହିତ୍ୟ ସଂସ୍କୃତିର ବହୁ ବିସ୍ଫୋରକ ସମସ୍ୟା ତଥା ଭାଷା ଆନ୍ଦୋଳନର ଅଗ୍ରଭାଗରେ, ଦୁର୍ଭାଗ୍ୟବଶତଃ ହେଉ ବା ସୌଭାଗ୍ୟବଶତଃ ହେଉ, ମୋତେ ରହିବାକୁ ହୋଇଥିଲା । ସେତେବେଳେ ସାହିତ୍ୟ ସଂସ୍କୃତି କ୍ଷେତ୍ରକୁ ନିଜର ହସ୍ତମୁଦି ମାହାଲ କରି ବସିଥିବା 'ପଣ୍ଡିତ'ମାନଙ୍କ ଅସୂୟା ଆଉ ଅଭିଶାପ ଥିଲା ମୋର ପାଥେୟ । ପୁଣି ସେ ସମୟଟି ଥିଲା ଓଡ଼ିଆ ସାହିତ୍ୟରେ ନବାଗତମାନଙ୍କ ନବ ଉତ୍ଥାନର ପର୍ବ । ସେତେବେଳେ 'ରବିବାର ପ୍ରଜାତନ୍ତ୍ର', ବିଷୁବ ମଣ୍ଡପରେ ମୋ ସମେତ ମୋର ଅନୁଗାମୀମାନଙ୍କୁ ସ୍ୱାଗତ ଜଣାଇବା ପାଇଁ ସତେଯେପରି ଗଭୀର ଆନ୍ତରିକତାର ସହିତ ଦଣ୍ଡାୟମାନ ହୋଇ ରହିଥିଲେ ସେ । ତାଙ୍କର ଭୂମିକା ମୋ ସମେତ ବହୁ ପ୍ରତିଭାର ବିକାଶକୁ ଅକୁଣ୍ଠ ସହାୟତା ପ୍ରଦାନ କରି ଆଜି ପ୍ରତିଷ୍ଠିତ କରିଛି ।

ମହତାବଜୀଙ୍କ ରାଜନୀତି ବା ରାଜନୀତିକ ଜୀବନ ସହିତ ମୋର କୌଣସି ସମ୍ପର୍କ ନଥିଲା । ଯେପରି ସମ୍ପର୍କ ପ୍ରତିଷ୍ଠା ପାଇଁ ମୁଁ ଏବଂ ସେ କେବେହେଲେ ଚେଷ୍ଟା କରିନାହୁଁ । କରିନାହୁଁ ବୋଲି ତ ଏକ ଆବେଗିକ ନୈକଟ୍ୟର ସୂତ୍ରପାତ ଘଟି ଲଗାତର ଭାବରେ ତାହା ସମୃଦ୍ଧ, ବଳଶାଳୀ ଏବଂ ଆତ୍ମିକ ହୋଇ ଉଠିଥିଲା । ମହତାବଜୀଙ୍କ ସମ୍ପର୍କରେ ମୋତେ ଯଦି କେବେ ସ୍ମୃତିକଥା ଲେଖିବାକୁ ପଡ଼େ, ତାହା ହେବ ଏକ ବିରାଟ ଗ୍ରନ୍ଥ । ବହୁ ଅମ୍ଳ ମଧୁର ଆତ୍ମିକ ସ୍ମୃତି ଛନ୍ଦିବନ୍ଦିତ, ସାହିତ୍ୟ, ସଂସ୍କୃତି ରାଜନୀତି ଘଟଣାର ଘନଘଟାରେ ଭାରାକ୍ରାନ୍ତ ।

ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଦିନଠାରୁ ମହତାବଜୀଙ୍କ ଜୀବନର ଅନ୍ତିମ ଦିନ ପର୍ଯ୍ୟନ୍ତ ମୋର ସମ୍ପର୍କ ତାଙ୍କ ସହିତ ଥିଲା ଅତୁଟ ଏବଂ ଗଭୀର ଆତ୍ମିକ । ମୋର ଜୀବନରେ ସେ ନାନାଭାବରେ ଦେଖା ଦେଇଛନ୍ତି । କେତେବେଳେ ସେ ମୋର ପିତାମହ, କେତେବେଳେ ପିତୃତୁଲ୍ୟ, କେତେବେଳେ ବନ୍ଧୁ, କେତେବେଳେ ମୋ ପରିବାରର ସତେ ଯେପରି ଜଣେ ଅଭିଜ୍ଞ କୁଳବୃଦ୍ଧ । ମୋର ଜନ ସମ୍ପର୍କ କେତେ ବ୍ୟାପକ, ମୋର ଜୀବନର ସରଣୀ କେତେ ଡିପ ଡାଲୁ ଖାଲଖମାରେ ପରିପୂର୍ଣ୍ଣ ଏବଂ ଜଟିଳ, ସେକଥା ସେ ଭଲଭାବରେ ଅବଗତ ଥିବାରୁ ଏବଂ ମୋର କାବ୍ୟ କବିତାରେ ସାମାଜିକ ବ୍ୟଙ୍ଗ, ତିର୍ଯ୍ୟକତା ଏବଂ ରାଜନୈତିକ ସାଟାୟାର ସବୁକୁ ସେ ଉଦାରତାର ସହ ଉପଭୋଗ କରୁଥିଲେ, ତା'ର ପ୍ରମାଣ ତାଙ୍କର ଅନେକ ଚିଠି ।

ମନେପଡୁଛି, ଥରେ ଗୋଟିଏ ରାଜନୈତିକ ସାଟାରିକାଲ କବିତାରେ ମୁଁ ତାଙ୍କୁ 'ମହାମୁଷଳୀ' ବୋଲି ଉଲ୍ଲେଖ କରିଥିବାର ଗୋଟିଏ ଚିଠି ସେ ମୋତେ ଲେଖିଥିଲେ । ଚିଠିଟିରେ କେତେକ ବ୍ୟକ୍ତିଗତ କଥା ଛଡ଼ା ଲେଖାଥିଲା "ଆଚ୍ଛା ରବି ! ତମର ସେ କବିତାରେ ଯୋଉ ମହାମୁଷଳୀ ଶବ୍ଦଟି ବ୍ୟବହାର କରିଛ, ବଳରାମଙ୍କ ବ୍ୟତୀତ ଆଉ କାହାକୁ 'ମୁଷଳୀ' କୁହାଯାଏ ଜାଣିଥିଲେ ମତେ ଆସି କହିବ, ନହେଲେ ଚିଠିରେ ଲେଖିବ ।"

ଚିଠି କିନ୍ତୁ ଲେଖିବାକୁ ପଡ଼ି ନଥିଲା । ତାଙ୍କ ଚିଠି ପାଇବାର ପରଦିନ ଅପରାହ୍ନରେ ମୁଁ ଯାଇ 'ପ୍ରଜାତନ୍ତ୍ର' ପରିସରରେ ପହଞ୍ଚିଥିଲି । ସେତେବେଳେ ମହତାବଜୀଙ୍କ ଭୁବନେଶ୍ୱରରୁ ପ୍ରଜାତନ୍ତ୍ରକୁ ଆସିବାର ସମୟ । ବାହାରେ ଠିଆ ହୋଇଥିଲେ ମୋର ଅଗ୍ରଜ ସାହିତ୍ୟିକ ବନ୍ଧୁ ତଥା 'ପ୍ରଜାତନ୍ତ୍ର'ର ତତ୍କାଳୀନ ସମ୍ପାଦକ ଜାନକୀ ବଲ୍ଲଭ ପଟ୍ଟନାୟକ । ପାଖରେ ଠିଆ ହୋଇଥିଲେ ମୋର ଅତୀତର ବରିଷ୍ଠ ସାମ୍ବାଦିକ ସହକର୍ମୀ ଶ୍ରୀଯୁକ୍ତ ରଘୁନାଥ ପାଠୀଶାସ୍ତ୍ରୀ । ସେମାନଙ୍କ ସହିତ କଥାବାର୍ତ୍ତା ହେବା ଭିତରେ ମହତାବଜୀଙ୍କ ନାଲି ଗାଡ଼ି ଆସି ପହଞ୍ଚିଲା । ସେ ଗାଡ଼ିରୁ ଓହ୍ଲାଇବା ସଂଗେ ସଂଗେ ମୁଁ ତାଙ୍କୁ ପ୍ରଣିପାତ କଲି । ଆଉ ସେ ହଠାତ୍ ମତେ ପଚାରିଲେ, "କିଓ ରବି, ସେ ଶବ୍ଦର ଆଉ କିଛି ଅର୍ଥ ପାଇଲ ?

ମୁଁ କହିଲି, ମୁଷଳୀ ଶବ୍ଦର ଆଉ ଏକ ଅର୍ଥ ହେଲା ଘିଅମଙ୍ଗା ବା ଝିଟିପିଟି ।

ମହତାବଜୀ ଶିଡ଼ିରେ ଛାତ ଉପରକୁ ଉଠୁ ଉଠୁ ମୁଁ ତାଙ୍କ ପଛେ ପଛେ ଯିବା ଭିତରେ ସେ ମତେ ପୂର୍ବରୁ ଏକ ଘଟଣାକୁ ସ୍ମରଣ କରାଇ ଦେଇ ଚଉକୀରେ ବସୁ ବସୁ ନିଜ ପାଇଁ ଆଉ ମୋ ପାଇଁ କଫି ଆଣିବାକୁ କହି ମୋତେ କହିଲେ, "ସେ ଶବ୍ଦଗୁଡ଼ିକୁ କୋଉଠି ବ୍ୟବହାର କଲଣି ନା ନାହିଁ ?

ଘଟଣାଟି ହେଲା : ଥରେ ବିଷୁବ ମଣ୍ଡପରେ 'ବନାନୀ' ଶବ୍ଦ ଉପରେ ଗୋଟାଏ ଝଡ଼ ସୃଷ୍ଟି ହୋଇଥିଲା । ଅବିଶ୍ରାନ୍ତ ବକ୍ତୃତା ଚାଲିଛି । ସେତେବେଳେ ସ୍ୱର୍ଗତ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଯାହାଙ୍କ ସହିତ ମୋର ଅଡା-ନାଡିର ସମ୍ପର୍କ, ସେ ବସିଥିଲେ ମୋର ଡାହାଣ ପାଖ ଚଉକୀରେ ଆଉ ବାଆଁ ପାଖ ଚଉକୀରେ ବସିଥିଲେ ପୂଜ୍ୟ ମହତାବଜୀ । ଜଣେ

କିଏ ବକ୍ତା ନିଜ ଭାଷଣରେ 'ବନାନୀ' ଶବ୍ଦ ଉଚ୍ଚାରଣ କରିବାରୁ ଡକ୍ଟର ମହାନ୍ତି ତାଙ୍କର ମୁଦ୍ରିତ ନୟନଦ୍ୱୟ ବିସ୍ଫାରିତ କରି କ୍ରୁଦ୍ଧ ସ୍ୱରରେ କହିଥିଲେ, 'ବନାନୀ' ଶବ୍ଦ ଭୁଲ୍ ।

ମୁଁ ତ ନାଡି । ମୁଁ ସାଙ୍ଗେ ସାଙ୍ଗେ କହିଲି, "ଅଜା, ବନାନୀ ଶବ୍ଦ ଯଦି ଭୁଲ୍, ତା' ହେଲେ ଜଙ୍ଗଲାନୀ ନହେଲେ ଫରେଷ୍ଟାନୀ ହଉ ।"

"ଯାଃ ବଗୁଲିଆ, ସବୁ କଥାକୁ ଥଟ୍ଟା କରିବା ତୋ' କାମ ।" କହିଥିଲେ ଡକ୍ଟର ମହାନ୍ତି ।

ମହତାବଜୀ ସେତେବେଳେ ଏପରି ହୋ-ହୋ ହୋଇ ହସିଥିଲେ ଯେ, ସେପରି ହସିବା ତାଙ୍କ ସହିତ ମୋର ସୁଦୀର୍ଘ ନୈକଟ୍ୟ ଭିତରେ ମୁଁ କେବେହେଲେ ଦେଖିନାହିଁ । ମୋ ଉଦ୍ଦେଶ୍ୟରେ ମହତାବଜୀ କହି ଉଠିଲେ, "ରବି, ତମକୁ ଆଉ ପାରିହବନି ।" ମୁଁ କହିଲି, "ଆଜ୍ଞା । ମୂଲ୍ୟବୋଧ ବଦଳିଛି । ଯଦି 'ବନାନୀ' ଶବ୍ଦ ଭୁଲ୍, ତାହେଲେ 'ପଦାଙ୍କ' ଶବ୍ଦ ମଧ୍ୟ ଭୁଲ୍ । କାରଣ ଆଜିକାଲି ପାଦରେ ଚାଲିଚାଲି ଖୁବ୍ କମ୍ ଲୋକ ଯା'ଆସ କରୁଛନ୍ତି । ପଦାଙ୍କ ଜାଗାରେ 'ଯୋତାଙ୍କ' ବା ଚପଲାଙ୍କ ନହେବ କାହିଁକି ? ଠିକ୍ ସେହିପରି 'ହୃଦୟେଶ୍ୱରୀ' ଜାଗାରେ, 'ହୃତପିଣ୍ଡେଶ୍ୱରୀ', 'ହୃମାକେଶ୍ୱରୀ' ହେଲେ କ୍ଷତି କ'ଣ ?

ମହତାବଜୀ ଆଉ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ସେଦିନ ହସି ହସି ବେଦମ ହୋଇଥିଲେ ।

ସେହି ଘଟଣାର ସ୍ମୃତିକୁ ସିଡ଼ିରେ ଉଠୁ ଉଠୁ ମୋର ମନେପକେଇ ଦେଇଥିଲେ ପୂଜ୍ୟ ମହତାବଜୀ । ମୁଁ କହିଲି; "ଚାରି ଛ'ଟା ବ୍ୟଙ୍ଗ କବିତା ମୁଁ ଏଥି ଭିତରେ ଲେଖିଛି । ସେଇଥିରେ ସେ ଶବ୍ଦସବୁ ଅଛି । ଛାପା ହେଲେ ଦେଖିବେ ।"

ମହତାବଜୀଙ୍କ ସହିତ ମୋର ଦୂରତ୍ୱ ସୃଷ୍ଟି କରିବା ପାଇଁ କେତେକ ଖଳ ତଥା କବି ଲେଖକ ବହୁବାର ଚେଷ୍ଟା କରି ଗାଡ଼ି ଫେଲ୍ ହୋଇଥିଲେ । ସେ ସେମାନଙ୍କୁ ଥରେ ଖୋଲାଖୋଲି କହିଥିଲେ, "ରବି ସମ୍ପର୍କରେ ତମେ ଜାଣ କ'ଣ ? ଗୋଟାଏ ଦିନରେ ତା'ର ବିକାଶ ଘଟିନାହିଁ । ତା ପଛରେ ଅଛି ଏକ ସୁଦୀର୍ଘ ସଂଗ୍ରାମର ଐତିହ୍ୟ । ତା'ଛଡ଼ା ବ୍ରାହ୍ମଣ୍ୟ ସଂସ୍କୃତିର ବିପରୀତ ଦିଗରେ ତା'ର ଏକକ ଯାତ୍ରା ଏବଂ ଅଧ୍ୟବସାୟ ଯେପରି ଅଛି, ତା'ର ଚତୁଃସୀମା ତୁମେ ସବୁ ସ୍ପର୍ଶ କରି ପାରିବ ନାହିଁ । ତେଣୁ ତା' ସମ୍ପର୍କରେ କୌଣସି ବିରୂପ କଥା ମୋ ନିକଟରେ କହନାହିଁ ।"

ମହତାବଜୀଙ୍କ ସହିତ ବହୁ ସାଂସ୍କୃତିକ ତଥା ସାରସ୍ୱତ ମଞ୍ଚରେ ଯାତିଆଳାରର ସୌଭାଗ୍ୟ ମତେ ମିଳିଥିଲା । ଅଗରପଡ଼ାଠାରୁ ତାଙ୍କ ଭଦ୍ରକ ବାସଭବନ, ଏକାମ୍ରନିବାସ, ପ୍ରଜାତନ୍ତ୍ର ପରିସର ଏସବୁ ମୋ ସ୍ମୃତିରେ ଅମଳିନ । ଅନେକ ଘଟଣା ଅଛି, ଯାହାକି ପୁସ୍ତକ ଆକାରରେ ଲେଖିବା ସିନା ସମ୍ଭବ , ସମ୍ବାଦପତ୍ର ପୃଷ୍ଠାରେ ତାହା ଲେଖିବା ସମ୍ଭବ ନୁହେଁ । ଅନେକ ଜାଣନ୍ତି ନାହିଁ, ନକ୍ସଲପନ୍ଥୀ ଆନ୍ଦୋଳନ ସମୟରେ ହିଂସା ଅହିଂସା ନେଇ ଯେଉଁ ତୁମୁଳ ବିତର୍କର ଝଡ଼ ଓଡ଼ିଶାର ବୁଦ୍ଧିଜୀବି ମହଲରେ ସୃଷ୍ଟି ହୋଇଥିଲା, ତା'ର ପ୍ରବକ୍ତା ଥିଲେ ନବକୃଷ୍ଣ ଚୌଧୁରୀ, ଆଉ ସେଥିରେ ପରବର୍ତ୍ତୀ ସମୟରେ ଅଂଶ ଗ୍ରହଣ କରିଥିଲେ ପୂଜ୍ୟ ମହତାବଜୀ । ସେତେବେଳେ କଲେଜ ସ୍ତରରେ ନାନା କ୍ଷେତ୍ରରେ ମୋର ଭାରତ ସ୍ଥିତାବସ୍ଥା ବିରୋଧରେ ଜନଚେତନାକୁ ଜାଗ୍ରତ କରିବା ପାଇଁ ଯେଉଁ ଉଦ୍ୟମ ଲଗାତର ଭାବରେ ଚାଲିଥିଲା, ସେତେବେଳର 'ପ୍ରଜାତନ୍ତ୍ର'ର ପୃଷ୍ଠା ଖୋଲାଇଲେ, ତା'ର ପ୍ରକାଶିତ ରୂପ ପାଠକ ଦେଖିବାକୁ ପାଇବେ ।

ମନେପଡୁଛି, ଲେନିନ୍ ଶତବାର୍ଷିକୀ ଉପଲକ୍ଷେ, ସି.ପି.ଆଇ.ଏମ୍.ଏଲ୍‌ର ମୁଖପତ୍ର 'ଦେଶବ୍ରତୀ'ର ସ୍ୱତନ୍ତ୍ର ସଂଖ୍ୟାରେ ଏକ ଆଖିଦୃଶିଆ ସମ୍ବାଦ ପ୍ରକାଶିତ ହୋଇଥିଲା । ସେଥିରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ମହତାବଜୀଙ୍କର ଭୂ-ସମ୍ପତ୍ତି କେତେ ଅଛି, ସେ ସମ୍ପର୍କରେ ମୁଁ ପଢ଼ିଥିଲା ବେଳକୁ ମହତାବଜୀ ଏକୁଟିଆ ବସିବସି କ'ଣ ଗୋଟେ ପଢୁଥିଲେ । ମତେ ଦେଖିଦେଇ ପଢ଼ା ବନ୍ଦ କରି ସବୁ ଖବର ଅନ୍ତର ପଚାରିବା ଭିତରେ, ନକ୍ସଲ ଆନ୍ଦୋଳନର ଅଗ୍ରଗତି, ଓଡ଼ିଶାରେ ତା'ର ପ୍ରଚାର ଓ ପ୍ରସାର କେତେଦୂର ଗଲାଣି, ପଚାରିଲେ । ଆଲୋଚନା ଭିତରେ ତାଙ୍କୁ ମୁଁ 'ଦେଶବ୍ରତୀ'ର ସେହି ସଂଖ୍ୟାଟି ଦେବାରୁ ସେ ମତେ କହିଲେ, "ରବି, ତମେ ତାଙ୍କୁ ଖବର ଦିଅ, ମୋର ଭୂସମ୍ପତ୍ତି ସମ୍ପର୍କରେ ଯେଉଁ ତଥ୍ୟ ପ୍ରକାଶ ପାଇଛି; ତାହା ସତ୍ୟ ନୁହେଁ । ଆଉ ଖଣ୍ଡେ 'ଦେଶବ୍ରତୀ' ମତେ ଦିଅ, ମୁଁ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ଦେବି ।" ମୁଁ ଅଧଘଣ୍ଟାଏ ସେଦିନ ତାଙ୍କ ପାଖରେ ଥିଲି । ରହିବା ଭିତରେ ହିଂସା ଅହିଂସାର ବିତର୍କ ନେଇ ସେ 'ଗାଁ ମଜଲିସ୍' ସ୍ତମ୍ଭରେ ଏଣିକି କ୍ରମାଗତ ଆଲୋକପାତ କରିବେ, ଏହି ପ୍ରତିଶ୍ରୁତି ମତେ ଦେଇଥିଲେ ଓ ତାହା ପାଳନ ମଧ୍ୟ କରିଥିଲେ । ପରେ ପାଠକେ ବିସ୍ମିତ ହୋଇଥିଲେ 'ଗାଁ ମଜଲିସ୍' ସ୍ତମ୍ଭରେ ସେଇ ଉଦ୍ଧରଣ ଦେଖି ।

ନକ୍ସଲପନ୍ଥୀ ଆନ୍ଦୋଳନ ବେଳେ, ମୋ'ର ବାସଗୃହ ପୋଲିସ୍ କର୍ତ୍ତୃକ ଖାନତଲାସ, ମୋ ନାମରେ ଭାଣ୍ଡି ଭାଣ୍ଡି ମକଦ୍ଦମା, ଗୁଣ୍ଡା ଆକ୍ରମଣ, ହତ୍ୟା ଯୋଜନା ଏସବୁରେ ମହତାବଜୀ ଆନ୍ତରିକ ଭାବରେ ମ୍ରିୟମାଣ ହୋଇ, ସେତେବେଳେ ପୋଲିସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଏକ ଚିଠି ଲେଖି ତା'ର କପି ମତେ ଦେଇଥିଲେ । ଭାରତୀୟ କମ୍ୟୁନିଷ୍ଟ ବିପ୍ଳବୀମାନଙ୍କ ସହିତ ମୋର ଘନିଷ୍ଠ ଯୋଗସୂତ୍ରକୁ ପୋଲିସ କୌଣସିମତେ ଆଦାଲତରେ ସାବ୍ୟସ୍ତ କରିପାରି ନଥିଲା । ବହୁ ତୁଙ୍ଗ କମ୍ୟୁନିଷ୍ଟ ବିପ୍ଳବୀ ସେତେବେଳେ ମୋର ତତ୍କାଳୀନ କଟକ ରାଜାବଗିଚା ଲେବର କଲୋନୀସ୍ଥିତ ବାସଭବନ ସି/୪ କ୍ୱାର୍ଟରରେ ଆତ୍ମଗୋପନ କଲାବେଳେ ସେମାନଙ୍କର ନିରାପତ୍ତା, ଗମନାଗମନର ବ୍ୟବସ୍ଥା ଥିଲା ମୋ ପକ୍ଷରେ ଚିନ୍ତା ଓ ଦୁର୍ଭାବନାର ମୁଖ୍ୟ କାରଣ । ସବୁଠାରୁ ଆର୍ଥିକ ସମସ୍ୟା ଥିଲା ଆଉ ଏକ କାରଣ । ବହୁବାର ମହତାବଜୀ ସେମାନଙ୍କର ସୁରକ୍ଷା, ଗମନାଗମନ ପାଇଁ ପ୍ରଚୁର ଆର୍ଥିକ ସହାୟତା କରିନଥିଲେ ବହୁ ଅଘଟଣ ଘଟିଥାନ୍ତା । ଏକଥା ପୂଜ୍ୟ ନବକୃଷ୍ଣ ଚୌଧୁରୀଙ୍କ ବ୍ୟତୀତ ଅନ୍ୟକେହି ଜାଣିନଥିଲେ ।

ମହତାବଜୀ..... ସିଏ ତ ମୋ ସ୍ମୃତିର ଅବଲୁପ୍ତ ଚନ୍ଦ୍ରାଘର । ପ୍ରଚୁର ଘଟଣାର ଘନଘଟା ଏବଂ ସ୍ମୃତି ରଞ୍ଜିତ ରହିଛି ମୋ ଚିତ୍ତରେ ତାଙ୍କୁ ନେଇ କେନ୍ଦ୍ରକରି ।

ଅନେକେ ଜାଣନ୍ତି ନାହିଁ ମହତାବଜୀଙ୍କ ବ୍ୟତୀତ ତାଙ୍କର ସୁଯୋଗ୍ୟା ଧର୍ମପତ୍ନୀ, ମୋର ପୂଜ୍ୟା ମାତୃ ପ୍ରତିମ ସୁଭଦ୍ରା ମହତାବଙ୍କ ସହିତ ମୋର ସମ୍ପର୍କ । ସ୍ୱାଧୀନତା ପରବର୍ତ୍ତୀ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ବେଳେ

ବାରବାଟୀ ଦୁର୍ଗମଧ୍ୟସ୍ଥ ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଓ ପରିଚୟ । ସେହିଦିନଠାରୁ ଜୀବନ ପାଖରୁ ବିଦାୟ ନେବା ପର୍ଯ୍ୟନ୍ତ ମୁଁ ଥିଲି ତାଙ୍କର ଅତ୍ୟନ୍ତ ଆଦରର, ଶ୍ରଦ୍ଧାର, ମମତାର ପାତ୍ର । ୧୯୫୫ ମସିହା ସେପ୍ଟେମ୍ବର ମାସରେ ପରବର୍ତ୍ତୀ ଗୋଆ ମୁକ୍ତି ଆନ୍ଦୋଳନରେ ଯୋଗଦେଇ ଯୋଗରେ ଆହତ ଅବସ୍ଥାରେ ସମଗ୍ର ଦେହ ବ୍ୟାଣ୍ଡେଜ୍ ପରିବୃତ୍ତ ହୋଇ ମୁଁ ଯେତେବେଳେ ବେଲଗାଓଁରୁ ପୁନା ନଗରୀର 'କେଶରୀ' କାର୍ଯ୍ୟାଳୟରେ ଆସି ପହଞ୍ଚେ, ସେତେବେଳେ ମହତାବଜୀ ବମ୍ବେର ରାଜ୍ୟପାଳ । ସେଦିନ ସେ ପୁନାରେ ନଥିଲେ, ଯାଇଥିଲେ ରତ୍ନଗିରି ଗସ୍ତରେ । ମୋର ଆହତ ଅବସ୍ଥାର ଆଲୋକଚିତ୍ର ସେଦିନ ଦୁଇ ତିନୋଟି ମରାଠୀ ଦୈନିକରେ ପ୍ରକାଶିତ ହୋଇଥିଲା । ପୁନାର ରାଜଭବନରେ ଶ୍ରୀମତୀ ମହତାବ ବୋଧହୁଏ ଏ ସମ୍ବାଦ ପଢ଼ି ଦେଇ 'କେଶରୀ' କାର୍ଯ୍ୟାଳୟକୁ ଟେଲିଫୋନ୍ କରିଆରେ ମୋର ଖବର ବୁଝି, ଅଧଘଣ୍ଟାଏ ଭିତରେ ଗୋଟିଏ କାର ପଠାଇ ମୋତେ ରାଜଭବନକୁ ନେଇଥିଲେ । ତାଙ୍କୁ ଦେଖି ଦେଖି ମୁଁ ତାଙ୍କର ପାଦଧୂଳି ନେଇ ମୁଣ୍ଡରେ ମାରିବା ବେଳେ ସେ ବାଷ୍ପାକୁଳ କଣ୍ଠରେ କହିଥିଲେ, ''ହେଇରେ ରବି, ତୁ କେବେ ଆସି ପହଞ୍ଚିଲୁ । କେବେ ଏପରି ଅବସ୍ଥା ହେଲା, ମୁଁ ଜାଣିନାହିଁ । ଆଜି ସକାଳେ କାଗଜରେ ଆଖି ବୁଲାଉ ବୁଲାଉ ଫଟୋ ତଳେ ତୋ' ନାଁ ଦେଖି ମୁଁ ବ୍ୟସ୍ତ ହୋଇ ପଡ଼ିଲି । ମହତାବ ବାବୁ ନାହାଁନ୍ତି । ତୁ କେବେ କଟକ ଫେରିବୁ ବୋଲି ଭାବୁଛୁ ?''

ମୁଁ ସେହିଦିନ ସନ୍ଧ୍ୟାରେ କଟକ ଫେରିବି ବୋଲି ଇଚ୍ଛା ପ୍ରକାଶ କରନ୍ତେ ସେ ମୋ ପାଇଁ ଫଳ, ବିସ୍କୁଟ ବ୍ୟବସ୍ଥା ସହ ପାଞ୍ଚଶହଟଙ୍କା ଦେଇ ମୋ ସହିତ ରାଜଭବନର ତିନିଜଣ ଲୋକଙ୍କୁ କଲ୍ୟାଣ ଷ୍ଟେସନ ପର୍ଯ୍ୟନ୍ତ ପଠାଇଥିଲେ ମୋତେ ବିଦାୟ ଦେବାପାଇଁ ।

କଟକରେ ପହଞ୍ଚିବା ପରେ ତାଙ୍କଠାରୁ ତିନୋଟି ଚିଠି ପାଇଥିଲି, ମହତାବଜୀଙ୍କ ଠାରୁ ଦୁଇଟି । ସୁସ୍ଥ ହେବା ପର୍ଯ୍ୟନ୍ତ କ୍ରମାଗତ ଆର୍ଥିକ ସାହାଯ୍ୟ ବମ୍ବେ ରାଜଭବନରୁ ଆସୁଥାଏ ।

ଶ୍ରୀମତୀ ମହତାବଙ୍କ ସହିତ ତା'ପର ସମ୍ପର୍କ ତ ଆହୁରି ଘନୀଭୂତ, ଆହୁରି ନିବିଡ଼ । ନାନା ସମୟରେ ମୁଁ ଯେତେବେଳେ, ଶ୍ରୀମତୀ ମହତାବଙ୍କ ପାଖରେ ଯାଇ ଉଦୟ ହୁଏ, ତାଙ୍କର ପ୍ରଥମ ପ୍ରଶ୍ନ ଖାଇଛୁ ? କେତେ ଶତ ବାର ତାଙ୍କ ହାତ ଯେ ମୋ ମୁଣ୍ଡରେ ସସ୍ନେହରେ ଆଶୀର୍ବାଦପୂର୍ବକ ବୁଲିଛି, ତା'ର ହିସାବ ମୁଁ ରଖିନି । ସେ ଯେଉଁଦିନ ଜୀବନ ପାଖରୁ ବିଦାୟ ନେଲେ, ସେଦିନ ମୁଁ ମୋର ମହାର୍ଘ ଆତ୍ମିକ ଅବଲମ୍ବନକୁ ହରାଇଥିଲି ।

ମହତାବ ପରିବାର ସହିତ ମୋର ଆହୁରି ବହୁ ସ୍ମୃତି ଅଛି ।

ଆଜି ମହତାବଜୀ ନାହାନ୍ତି । ପ୍ରଜାତନ୍ତ୍ର ପରିସର ମୋ ଆଗରେ ଏକ ଶୂନ୍ୟ ପରିସର । ଛାତ ଉପରେ ଆଉ 'କ୍ଲବ' ବସୁନାହିଁ । ଜମୁ ନାହାଁନ୍ତି ନାନା ଧରଣର ଲୋକ । 'ଗାଁ ମଜଲିସ୍'ର ଗୁଞ୍ଜରଣ ଆଉ ଶୁଭୁନାହିଁ । ସବୁ ଇତିହାସ ହୋଇ ଯାଇଛି । ମୁଁ ପୂର୍ବବତ୍ ସେଇ ନିଃସଙ୍ଗ ପଦାତିକ । ପାଦ ଥକି ଆସିଲାଣି । ଚାରି ଦିଗରେ ଘନୀଭୂତ ଏକାକୀତ୍ୱ । ତା'ରି ଭିତରେ ନଭେମ୍ବର ଏକୋଇଶର ସ୍ମୃତି-ଯାହା ମୋର ଚିରକାଳ ପ୍ରଣମ୍ୟ ।

*ଉପ-ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର-୧୪*

• • •

## ଲୋକସମ୍ପର୍କ : ଲୋକମତ ପ୍ରତି ସମ୍ମାନ

ଡ଼ଃ ମହତାବ ଶାସନ ଦାୟିତ୍ୱରେ ଥିଲାବେଳେ କେବଳ ନିଜ ଦଳ ଭିତରେ ଆବଦ୍ଧ ରହୁନଥିଲେ କିମ୍ବା ଦଳର ବନ୍ଦୀ ଭାବରେ ନିଜକୁ ସଙ୍କୁଚିତ କରୁନଥିଲେ । ତାଙ୍କ ଦଳ ବାହାରେ ଦେଶରେ ଯେ ଲୋକ ଅଛନ୍ତି, କୌଣସି ସମସ୍ୟା ବିଷୟରେ ସେମାନେ ସଚେତନ ଥାଇ ପାରନ୍ତି ଏବଂ ସେମାନଙ୍କର କିଛି ମତାମତ ଓ ପରାମର୍ଶ ଥାଇପାରେ, ଏହାକୁ ସେ କଥାରେ ଓ କାର୍ଯ୍ୟରେ ସ୍ୱୀକାର କରୁଥିଲେ । ସେଥିପାଇଁ ବିଭିନ୍ନ ସ୍ତରର ଲୋକଙ୍କ ସହିତ ସମ୍ପର୍କ ରଖୁଥିଲେ ଏବଂ ନାନା ପ୍ରଶ୍ନର ବାସ୍ତବ ଦିଗରୁ ଆଲୋଚନା କରୁଥିଲେ । ସେଥିରୁ ବୋଧହୁଏ ଜାଣି ହେଉଥିଲା ଲୋକ ସମର୍ଥନ କେଉଁ ବିଷୟରେ କେତେ ହୋଇପାରେ । ଦଳ ବାହାର ଲୋକଙ୍କ ପ୍ରତି ଅବଜ୍ଞା ଦୃଷ୍ଟି ଓ ଅସମ୍ମାନ ବିଚାର ତାଙ୍କର ନଥିବାରୁ ଶାସନ ମୁଖ୍ୟତ୍ୱର ବାହାରେ ମଧ ସେ ବୁଦ୍ଧିଜୀବୀ ଶ୍ରେଣୀର ଶ୍ରଦ୍ଧା ଓ ସୌଜନ୍ୟ ଆକର୍ଷଣ କରିପାରୁଥିଲେ ।

ଜଷ୍ଟିସ୍ ହରିହର ମହାପାତ୍ର

# 'ଗାଁ ମଜ୍‌ଲିସ୍‌' ଓ ଡକ୍ଟର ହରେକୃଷ୍ଣ ମହତାବ

• ଶ୍ରୀ ସୌରୀବନ୍ଧୁ କର

ଡକ୍ଟର ହରେକୃଷ୍ଣ ମହତାବଙ୍କର ସଂଘର୍ଷମୟ ଜୀବନ, ମାନବ ଜାତିକୁ ଏକତ୍ର କରି ସ୍ୱାଧୀନତା ସଂଗ୍ରାମ ଆଡ଼କୁ ଅଭିମୁଖ କରାଇବା ଓ ଜାତି ଗଠନରେ ମଣିଷମାନଙ୍କୁ ତିଆରି କରି ରାଷ୍ଟ୍ର ଗଠନରେ ନିଜର ସ୍ୱକୀୟ ଭୂମିକା ନିଭାଇବା କେବଳ ଐତିହାସିକ ଦସ୍ତାବିଜ ନୁହେଁ ବରଂ ଜ୍ୱଳନ୍ତ ଅନୁଷ୍ଠାନର ପ୍ରତୀକ ହୋଇଯାଇଛି । ସେହି ତ୍ୟାଗପୂତ ଜୀବନର ଅଲିଭା ଭାସ୍ୱର ହେଉଛି 'ପ୍ରଜାତନ୍ତ୍ର' ଦୈନିକ ସମ୍ବାଦପତ୍ରର ପ୍ରତିଷ୍ଠା ଓ ନିଜର ସାରସ୍ୱତ ତପସାଧନାର ପ୍ରାକ୍ ସାମ୍ବାଦିକ ଭୂମିକାର ଦର୍ଶିକ ଆଭା ହେଉଛି 'ଗାଁ ମଜ୍‌ଲିସ୍‌' ।

'ଗାଁ ମଜ୍‌ଲିସ୍‌' କୁ ଛାଡ଼ି ଡକ୍ଟର ମହତାବଙ୍କର ବ୍ୟକ୍ତିତ୍ୱକୁ ଆକଳନ କରିବା କେବଳ ଧୃଷ୍ଟତା ନୁହେଁ ବରଂ ସତ୍ୟର ଅପଳାପ । ଗାଁ ମଜ୍‌ଲିସ୍‌ ସମ୍ବାଦ ନୁହେଁ କିନ୍ତୁ ସେଥିରେ ଜନଚେତନାର ଉଦ୍‌ବେଳିତ ଭାବନାର ପ୍ରକାଶ ଘଟିଛି । 'ଗାଁ ମଜ୍‌ଲିସ୍‌'ର ନାମକରଣ କାହିଁକି ଏ ସମ୍ପର୍କରେ ଡକ୍ଟର ମହତାବ ଲେଖିଥିଲେ, " ରାଜନୈତିକ ହେଉ, ଅର୍ଥନୈତିକ ହେଉ ବା ଯେ କୌଣସି ବିଷୟରେ ହେଉ, ସବୁ ଆଲୋଚନାରେ ସାଧାରଣ ଲୋକେ ଅଂଶ ଗ୍ରହଣ କରନ୍ତୁ, ସେହି ଉଦ୍ଦେଶ୍ୟରେ 'ଗାଁ ମଜ୍‌ଲିସ୍‌'ର ସୃଷ୍ଟି, ଆଜକୁ ପ୍ରାୟ ତେଇଶି ବର୍ଷ ହେଲା । ଗ୍ରାମର ସାଧାରଣ ଲୋକଙ୍କ ଭିତରେ ବସି କୌଣସି ବିଷୟରେ ଆଲୋଚନା କରାହେଉଛି । ଏପରି ମନେକରି ଏହି ସ୍ତମ୍ଭରେ ବିଭିନ୍ନ ବିଷୟରେ ଆଲୋଚନା କରାଯାଇଥାଏ । କଲେଜ ବା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ନକରିଥିଲେ ମଧ୍ୟ ସବୁ ବିଷୟ ବୁଝିବା ଓ ସବୁ ବିଷୟରେ ମତଗଠନ କରିବାର ଶକ୍ତି ଗ୍ରାମବାସୀଙ୍କର ଅଛି । ସେହି ଶକ୍ତିର ଜାଗରଣ 'ଗାଁ ମଜ୍‌ଲିସ୍‌'ର ଉଦ୍ଦେଶ୍ୟ ।" ବାଣୀବିହାରର ଜଣେ ଛାତ୍ରଙ୍କ ପ୍ରଶ୍ନର ଉତ୍ତରରେ ଡକ୍ଟର ମହତାବ ୧୯୭୧ ଜାନୁଆରୀ ପ୍ରଥମ ସପ୍ତାହ ' ଗାଁ ମଜ୍‌ଲିସ୍‌' ସ୍ତମ୍ଭ 'ଗଣତନ୍ତ୍ର ବା ଗଡ୍ଡଳିକାତନ୍ତ୍ର'ରେ ଉଲ୍ଲେଖ କରିଛନ୍ତି ।

'ଗାଁ ମଜଲିସ୍ ଓଡ଼ିଆ ସାହିତ୍ୟରେ ଏକ ନୂତନ ପରିକଳ୍ପନା, ଏହା କେବଳ ନିରୋଳା ସାହିତ୍ୟ ନୁହେଁ ।

ଛାତ୍ର ଜୀବନରୁ ଡକ୍ଟର ମହତାବଙ୍କ ସ୍ୱପ୍ନ ଅନେକ । ତାହାକୁ ସେ କାର୍ଯ୍ୟକାରୀ କରିବା ପାଇଁ ଚେଷ୍ଟା କରିଛନ୍ତି । ସେ ଜୀବନର ପ୍ରାକ୍ କାଳରୁ ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ପ୍ରଭାବିତ ଓ ଅନୁପ୍ରାଣିତ ହୋଇଛନ୍ତି । ଏହି ପ୍ରଭାବ ଦ୍ୱାରା ସେ ସ୍ୱାଧୀନତା ରୂପକ ଯଜ୍ଞକୁଣ୍ଡରେ ନିଜକୁ ଆହୂତି ଦେଇଛନ୍ତି । ସେ ଏ ସମ୍ପର୍କରେ ଲେଖିଛନ୍ତି, " ଏହି ଛାତ୍ରାବସ୍ଥାରେ ମୁଁ ଯେତେବେଳେ ଥର୍ଡ଼ କ୍ଲାସରେ ପଢୁଥିଲି, ଉତ୍ତର ସବ୍‌ଡିଭିଜନ୍‌ର କେତେକ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଲା । ଅନ୍ନଛତ୍ର ଖୋଲିବା ପାଇଁ ରାମକୃଷ୍ଣ ମିଶନର ସ୍ୱାମୀ ପୂର୍ଣ୍ଣାନନ୍ଦ ଆମ ଅଞ୍ଚଳକୁ ଯାଇ ଆମ ଘରେ କେତେ ମାସ ରହିଲେ । ସେ ମୋତେ ପ୍ରଥମେ ପଢ଼ିବା ପାଇଁ " କମିଟେସନ ଅଫ୍ କ୍ରାଇଷ୍ଟ" ପୁସ୍ତିକା ଖଣ୍ଡେ ଦେଇଥିଲେ । ସ୍ୱାମୀ ବିବେକାନନ୍ଦ ଓ ରାମକୃଷ୍ଣଙ୍କର ଅନେକ ବଙ୍ଗଳା ବହି ପଢ଼ିବା ପାଇଁ ଦେଇଥିଲେ । ତାଙ୍କ ସମ୍ପର୍କରେ ଆସି ମୁଁ ସ୍ୱାମୀ ବିବେକାନନ୍ଦ ଓ ରାମକୃଷ୍ଣଙ୍କ ପ୍ରତି ଆକୃଷ୍ଟ ହେଲି । ଦରିଦ୍ରର ସେବା, ଅଦମ୍ୟ ସାହସ, ରଜୋଗୁଣର ତାଣ୍ଡବ, ଉଦ୍ଦୀପନା ଏସବୁ ସେତେବେଳେ ମୋ ମନକୁ ଏପରି ଆଘାତ କରିଥିଲା ଯେ ମୋର ମନେହୁଏ ବର୍ତ୍ତମାନ ସୁଦ୍ଧା ଯେପରି ମୁଁ ସେହି ପ୍ରେରଣା ଫଳରେ ଚାଲିଛି ।" ଡକ୍ଟର ମହତାବ ସ୍ୱାମୀ ବିବେକାନନ୍ଦଙ୍କ ଲେଖା ପଢ଼ି ପ୍ରଭାବିତ ହୋଇ ସାଧାରଣ ସେବାରେ ନିଜକୁ ବ୍ରତୀ କରିବାକୁ ସଂକଳ୍ପ କଲେ । ଏହି ପ୍ରଭାବହିଁ ତାଙ୍କୁ ପରବର୍ତ୍ତୀ ସମୟରେ ପ୍ରଜାତନ୍ତ୍ର ପ୍ରଚାର ସମିତିର ପରିକଳ୍ପନା କରିବାକୁ ପ୍ରଚୋଦନା ଦେଇଥିଲା । କାରଣ ସ୍ୱାମୀଜୀ ଚିକାଗୋ ଧର୍ମ ମହାସଭାକୁ ଯିବା ପୂର୍ବରୁ ଓ ସେଠାରେ ଥାଇ ମାନ୍ଦ୍ରାଜର ଶିଷ୍ୟମାନଙ୍କୁ ଏକ ପତ୍ରିକା ପ୍ରକାଶ କରିବା ଉପରେ ଗୁରୁତ୍ୱ ଦେଇଥିଲେ । ଯାହା ଫଳରେ ଅଦ୍ୟାବଧି "ପ୍ରବୁଦ୍ଧ ଭାରତ" ପ୍ରକାଶିତ ହୋଇ ଚାଲିଛି ।

୧୯୨୩ ମସିହାରେ କଟକ ସ୍ୱରାଜ୍ୟ ଆଶ୍ରମରୁ କରିଥିବା ପରିକଳ୍ପନା ଯେ ଜାତିର ସଂଗଠନ ପାଇଁ ସୁଦୃଢ଼ ସାଂସ୍କୃତିକ ଭିତ୍ତି ଆବଶ୍ୟକ, ଏହାର ଅବିବାଦିତ ରୂପ ହେଲା ପ୍ରଜାତନ୍ତ୍ର, ଝଙ୍କାର, ବିଷୁବ ମିଳନ ଇତ୍ୟାଦି । 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ପରିଚାଳନା ପାଇଁ ଡକ୍ଟର ମହତାବ ଯେଉଁ କେତେଗୁଡ଼ିଏ ନୀତି ନିର୍ଦ୍ଧାରଣ କରିଥିଲେ, ତାହା ସଂଗଠନର ସ୍ଥିତି, ସ୍ଥାୟିତ୍ୱ ଓ ସ୍ଥିରତାର ପ୍ରମାଣ ଦିଏ ।

ପ୍ରଥମ ନୀତି ହେଉଛି ଏହି ଯେ ' ପ୍ରଜାତନ୍ତ୍ର ପ୍ରଚାର ସମିତି'ର କୌଣସି କାର୍ଯ୍ୟ ଦଳଗତ ରାଜନୀତି ଦ୍ୱାରା ପରିଚାଳିତ ହେବ ନାହିଁ । ଦ୍ୱିତୀୟରେ ଅନୁଷ୍ଠାନଟି ତ୍ୟାଗ ମନୋବୃତ୍ତି ଉପରେ ପ୍ରତିଷ୍ଠିତ ହେବ । ତୃତୀୟ ନୀତି ହେଉଛି ଭବିଷ୍ୟତ ଦୃଷ୍ଟି । ଏହି ଲକ୍ଷ୍ୟକୁ ସାକାର ରୂପ ଦେବାର ପ୍ରଚେଷ୍ଟା ଡକ୍ଟର ମହତାବ ପ୍ରଜାତନ୍ତ୍ର ପ୍ରଚାର ସମିତି ମାଧ୍ୟମରେ କରିଛନ୍ତି, ଯେପରି ସ୍ୱାମୀ ବିବେକାନନ୍ଦ ରାମକୃଷ୍ଣ ମଠ ଓ ମିଶନ ଗଠନ କଲାବେଳେ ନୀତି ନିର୍ଦ୍ଧାରଣ କରିଥିଲେ ।

ଡକ୍ଟର ମହତାବଙ୍କ ଭାଷାରେ, " ଏହି କେତୋଟି ମୂଳ ନୀତିକୁ ଆଶ୍ରୟକରି, ଲାଭକ୍ଷତି କିଛି ବିଚାର ନକରି ଯେତେ ଶ୍ରେଣୀ ଓ ଯେତେ ବିଭାଗ ସମ୍ଭବ ହୋଇପାରୁଛି, ସବୁଥିରେ ଜୀବନ ସ୍ପନ୍ଦନ ପ୍ରସାର କରିବା ପାଇଁ ଆମେମାନେ ଚେଷ୍ଟା କରୁଛୁ । ସାନ ପିଲାମାନଙ୍କ ପାଇଁ ମୀନାବଜାର, ନାରୀମାନଙ୍କ ପାଇଁ ନାରୀଜଗତ, ବିଜ୍ଞାନ ଚର୍ଚ୍ଚା ପାଇଁ ଜ୍ଞାନବିଜ୍ଞାନ, ଗ୍ରାମର ଲୋକମାନଙ୍କ ପାଇଁ ଗାଁ ମଜ୍‌ଲିସ୍‌, ସାହିତ୍ୟର ସାଧନା ପାଇଁ ରବିବାର ପ୍ରଜାତନ୍ତ୍ର, ଏହି କେତୋଟି ବିଭାଗ ଆମେମାନେ ବର୍ତ୍ତମାନ ଖୋଲିଛୁ । ସାଂସ୍କୃତିକ ସଂଗଠନର ଯେଉଁ ମନ୍ଦିର ଆମେମାନେ

ନିର୍ମାଣ କରିଛୁ, ତାର ଚୂଡ଼ା ହେଉଛି 'ସଂସ୍କାର' । ଭିତ୍ତି ଉପରେ ଚୂଡ଼ା ଯେପରି ନିର୍ଭର କରେ, ଚୂଡ଼ାର ସ୍ଥିତି ଉପରେ ମନ୍ଦିରର ସ୍ଥାୟିତ୍ୱ ମଧ ନିର୍ଭର କରେ । ଏଣୁ ଏ ସମସ୍ତ କାର୍ଯ୍ୟ ଅଲକ୍ଷିତ ଭାବରେ ପରସ୍ପର ସହିତ ସଂପୃକ୍ତ ।''

ଡକ୍ଟର ମହତାବଙ୍କର ଏହି ଅନୁଷ୍ଠାନଟି ସଂଘର୍ଷରୁ ଜନ୍ମ ଏବଂ ସଂଘର୍ଷ ମଧରେ ଚାଲିଛି ଏବଂ ଏହାର ଜୀବନଟି ସଂଘର୍ଷରେ ପରିବର୍ଦ୍ଧିତ ହୋଇଛି । ତାଙ୍କର ଉପରୋକ୍ତ ଚିନ୍ତାରକୁ ନେଇ ଗାଁ ମଜ୍‌ଲିସ୍‌କୁ ଅନୁଧ୍ୟାନ ଓ ପର୍ଯ୍ୟାଲୋଚନା କରାଯାଇ ପାରେ ।

ପ୍ରଜାତନ୍ତ୍ରର ନିଜସ୍ୱ ମହକ ହେଉଛି ଗାଁ ମଜ୍‌ଲିସ୍ । ଏହି ମହକ ପାଠକଙ୍କୁ ବିମୋହିତ କରିଛି, ନୂତନ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିଛି । ଜନଚେତନା ଜାଗ୍ରତ କରି ଜନ ଉଦ୍‌ବେଳନ କରିବାର ମାଧ୍ୟମ ହୋଇଛି । ଗାନ୍ଧିଜୀଙ୍କ ଚିନ୍ତାଧାରା ଦରିଦ୍ର ଗ୍ରାମବାସୀଙ୍କୁ ଶୋଷଣରୁ ରକ୍ଷା କରିବାକୁ ଏବଂ ଗ୍ରାମ୍ୟ ସମାଜର ପୁନର୍ଜାଗରଣ ଘଟାଇବାକୁ ସକ୍ଷମ ହୋଇଛି ।

ଗାଁ ମଜ୍‌ଲିସ୍ ଥିଲା ଗରିବ ଲୋକମାନଙ୍କର ନିଜ ନିଜର ଦୁଃଖର କାହାଣୀ କହିବାର ମାଧ୍ୟମ । କାରଣ ଡଃ ମହତାବଙ୍କ ପାଖକୁ ଦୈନିକ ବହୁ ଲୋକ ନିଜର ଅଭାବ ଅଭିଯୋଗ ନେଇ ଆସୁଥିଲେ ଓ ତାଙ୍କର ଦୁଃଖ ଜଣାଉଥିଲେ । ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସମସ୍ୟାଗୁଡ଼ିକର ନିଛକ ପ୍ରତିଫଳନ ଗାଁ ମଜ୍‌ଲିସ୍‌ରେ ଘଟୁଥିଲା । 'ଗାଁ ମଜ୍‌ଲିସ୍'ର ଲେଖା ବିଧାନସଭା ପ୍ରକୋଷ୍ଠରୁ ଅମଲାତାନ୍ତ୍ରିକ କୋଠରୀ ପର୍ଯ୍ୟନ୍ତ ସୃଷ୍ଟି କରୁଥିଲା ଝଡ଼ । ଏହା କେବଳ ସମସ୍ୟାକୁ ପ୍ରତୀତ କରୁନଥିଲା, ସମାଧାନର ବାଟ ମଧ ନିର୍ଦ୍ଧାରଣ କରୁଥିଲା । ତାଙ୍କ ମତର ଯୁକ୍ତିଯୁକ୍ତତାକୁ ହୁଏତ ତତ୍‌କ୍ଷଣାତ ଗ୍ରହଣ କରିବା ସମ୍ଭବ ହେଉନଥିଲା, କିନ୍ତୁ ସେହି ଯୁକ୍ତି ତଥ୍ୟସମ୍ମତ ଥିବାରୁ ଗ୍ରହଣ ନକରିବାର ଅବକାଶ ମଧ ନଥିଲା ।

ଡକ୍ଟର ମହତାବଙ୍କର ଅଧ୍ୟୟନ, ଅଭିଜ୍ଞତା ଓ ଅନୁଭୂତି ଥିଲା ବ୍ୟାପକ । ଗୋପବନ୍ଧୁଙ୍କ ପରେ ଯଦି କେହି ରାଜନୈତିକ ନେତା ସମଗ୍ର ଓଡ଼ିଶାର ଜନମାନସକୁ ଚିହ୍ନିଥିଲା, ଜାଣିଥିଲା ଓ ହୃଦୟଙ୍ଗମ କରିଥିଲା, ତେବେ ସେ ହେଉଛନ୍ତି ଡକ୍ଟର ମହତାବ । ପ୍ରଜାତନ୍ତ୍ରରେ ପ୍ରକାଶିତ ତା ୧୩-୧୨-୮୬ ହେଉଛି ଡକ୍ଟର ମହତାବଙ୍କର ଶେଷ ଗାଁ ମଜ୍‌ଲିସ୍' ଯେଉଁଥିରେ ସେ ଯୋଜନା ସଂପର୍କରେ ଚିନ୍ତାର ପ୍ରକାଶ କରିଛନ୍ତି । ସେ ସେଥିରେ କହୁଛନ୍ତି, ''ସାଧାରଣ ଜ୍ଞାନରୁ ଜଣାଯାଉଛି, ସରକାର ସ୍ୱଦେଶୀ ନୀତିକୁ ପରିତ୍ୟାଗ କରିଥିବାରୁ ଏପରି ବିପରୀତ ସ୍ଥିତି ଉପୁଜିଛି । ସୂତା ଲୁଗା ସାଙ୍ଗକୁ ପଲିଷ୍ଟର ବସ୍ତ୍ର-ଯୋଜନା ପ୍ରତ୍ୟେକ ବ୍ଲକରେ ଚାଲିଛି । ତୁଳାରୁ ଉତ୍ପନ୍ନ ଲୁଗାର ଗୁରୁତ୍ୱ ତଦନୁପାତରେ ହ୍ରାସ ପାଇଛି । ପ୍ଲାଷ୍ଟିକ୍ ବ୍ୟାଗ୍ ପ୍ରସାର ଫଳରେ ଝୋଟର ଗୁରୁତ୍ୱ ହ୍ରାସ ପାଇଛି ।'' ଏହାର ପରିସମାପ୍ତିରେ ସେ ଯାହା ଉଲ୍ଲେଖ କରିଛନ୍ତି ତାହା ତାଙ୍କ ପରିପକ୍ୱ ଅଭିଜ୍ଞତା ଓ ଅନୁଭୂତିକୁ ହିଁ ସୂଚାଏ । ସେ ଲେଖୁଛନ୍ତି, '' ରାଜନୈତିକ ସ୍ତରରେ ବିଭ୍ରାଟ ଚାଲିଥିଲେ ମଧ ଅଫିସର ସ୍ତରରେ ଯଦି ସାମାନ୍ୟ ଦେଶପ୍ରୀତି ଓ ଜନତା ପ୍ରତି ସହାନୁଭୂତି ଥାଆନ୍ତା, ତାହାହେଲେ ଏହି ଦୁର୍ଦ୍ଦଶା ହୁଅନ୍ତା ନାହିଁ ।''

ଯଦି ଗାଁ ମଜ୍‌ଲିସ୍‌ର ବିଷୟବସ୍ତୁଗୁଡ଼ିକୁ ସଂଖ୍ୟାଭାବରେ ଗଣନା କରିବା, ତେବେ ସେହି ସଂଖ୍ୟା ପ୍ରାୟ ପାଞ୍ଚ ଶହରୁ ଅଧିକ ହେବ ଏବଂ ଏହା ଭିନ୍ନ ଭିନ୍ନ ବିଷୟବସ୍ତୁ ଉପରେ ଲେଖାଯାଇଛି ।

ଛାତ୍ରାବସ୍ଥାରେ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ, ଯୌବନରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଜାତୀୟ ଆନ୍ଦୋଳନରେ ସାମିଲ ଏବଂ ଜୀବନର ମଧ୍ୟାହ୍ନରେ ଦେଶ ଗଠନର ଦାୟିତ୍ୱ ନେଇ ନେତୃତ୍ୱ ଦେବା ହେତୁ ସେ ବୁଝିଥିଲେ ଗରିବ, ଦଳିତ, ନିଷ୍ପେଷିତ, ନିର୍ଯ୍ୟାତିତ, ନିଃସହାୟ ଓ ନିରକ୍ଷର ଲୋକମାନଙ୍କର ସର୍ବବିଧ ଉନ୍ନତି ନହେଲେ, ଏ ଦେଶର ପ୍ରଗତି ଅସମ୍ଭବ ଏବଂ ତାହାହିଁ ଥିଲା ଗାଁ ମଜ୍‌ଲିସ୍‌ର ଆଭିମୁଖ୍ୟ ।

କେବଳ ସେତିକି ନୁହେଁ, ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ଭାବରେ ସେ ଗାଁ ମଜ୍‌ଲିସ୍‌ରେ ବ୍ୟକ୍ତିକୈନ୍ଦ୍ରିକ ଓ ସ୍ୱାର୍ଥକୈନ୍ଦ୍ରିକ ଶାସନ ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ୧୯୭୫ ମସିହା ଜରୁରୀକାଳୀନ ପରିସ୍ଥିତିର ପ୍ରକୃତ ସ୍ୱରୂପ କ'ଣ, ତାର ଚିତ୍ର ଗାଁ ମଜ୍‌ଲିସ୍ ଲେଖାରେ ପ୍ରକାଶ ପାଇଥିଲା । ଜରୁରୀ ଅବସ୍ଥାର ପ୍ରାକ୍ ଅବସ୍ଥା ଏବଂ ଏହାର ସୂତ୍ରପାତ କିପରି ହେଲା ତାହା ମଧ ୨୬-୬-୭୫ ଗାଁ ମଜ୍‌ଲିସ୍‌ରେ ସେ ଲେଖିଥିଲେ । ଯଦିଓ ଜରୁରୀକାଳୀନ ସ୍ଥିତି ସଂପର୍କରେ ସେ ଉଲ୍ଲେଖ କରିଥିଲେ କିନ୍ତୁ ସେଥିରେ କାହାପ୍ରତି ଆକ୍ଷେପ ନଥିଲା ତଥାପି ମହତାବଙ୍କୁ ରାଜନୈତିକ ବନ୍ଦୀଭାବେ କାରାଗାରକୁ ନେଇ ରଖାଗଲା ।

ଡକ୍ଟର ମହତାବ ଗାଁ ମଜ୍‌ଲିସ୍‌ରେ ମାନବିକ ଅଧିକାରବୋଧ ଉପରେ ଗୁରୁତ୍ୱ ଦେଇଛନ୍ତି । ମାନବିକ ଅଧିକାର ବହୁଗୁଣରେ ଓ ବହୁଭାବରେ ବିସ୍ତୃତ ଓ ବ୍ୟାପ୍ତ । ଗାଁ ମଜ୍‌ଲିସ୍‌ର ତା ୨୭.୫.୬୪ ରେ ସେ କୋରାପୁଟରେ ପୂର୍ବବଙ୍ଗରୁ ପଳାଇ ଆସିଥିବା ଶରଣାର୍ଥୀଙ୍କ ଉପରେ ଗୁଳି, ତା ୨୬.୫.୬୬ରେ ରାୟଗଡ଼ା ଗୁଳିଚାଳନାକୁ ବିରୋଧ, ତା ୯.୨.୬୯ରେ ତେଲେଙ୍ଗାନା ହିଂସାକାଣ୍ଡ, ତା ୨୬.୭.୭୦ରେ ଜନତାର ମତ ଖୁବ୍ ଜୋର୍‌ରେ ପ୍ରକାଶ ନପାଇଲେ କୌଣସି ରାଜନୈତିକ ଦଳ ହାତରେ ଜନତାର ସ୍ୱାର୍ଥ ନିରାପଦ ନୁହେଁ ବୋଲି ମତବ୍ୟକ୍ତ କରିଛନ୍ତି । ତା ୨୪.୧.୭୭ରେ ସମସ୍ତେ କାରାମୁକ୍ତ ହୁଅନ୍ତୁ, ତା ୨୬.୧.୭୭ରେ ମାନବିକ ଅଧିକାରଠାରୁ କର୍ତ୍ତବ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ, ତା ୯.୨.୮୨ରେ 'ହତ୍ୟାର ଶିକାର ହରିଜନ'ରେ ହିଂସା, ପୋଲିସରାଜ ଓ ରାଜନୈତିକ ହିଂସାକାଣ୍ଡ ଉପରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ।

ଗାଁ ମଜ୍‌ଲିସ୍ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ସେ ସ୍ୱର ଅତ୍ୟନ୍ତ ତୀବ୍ର, କଟାକ୍ଷ ଓ ରୂଢ଼ିବାଦୀ ସମାଜ ବ୍ୟବସ୍ଥା ଉପରେ ପ୍ରଚଣ୍ଡ କପୋଟାଘାତ । ତା ୯.୧୦.୮୫ ଗାଁ ମଜ୍‌ଲିସ୍‌ରେ ଡକ୍ଟର ମହତାବ କଟକଚଣ୍ଡୀଙ୍କ ନିକଟରେ ଛାଗବଳି ସଂପର୍କରେ ''ଛାଗମାନଙ୍କ ବିପତ୍ତି'' ଶୀର୍ଷକରେ ଲେଖିଥିଲେ ଏହା କେବଳ କଟକ ସହର ନୁହେଁ, ସାରା ଓଡ଼ିଶାର ସଭ୍ୟତାକୁ ପରିହାସ । ''କଟକଚଣ୍ଡୀଙ୍କ ଠାରେ ବଳିପ୍ରଥା ବନ୍ଦ ବିରୁଦ୍ଧରେ ଜନ ଆନ୍ଦୋଳନ ହେବା ଉଚିତ'' ବୋଲି ତାଙ୍କର ଆହ୍ୱାନ ଫଳରେ କଟକ ଚଣ୍ଡୀ ମନ୍ଦିର ଟ୍ରଷ୍ଟ ବଳିବନ୍ଦ ରଖିବା ସ୍ଥିର କରିଥିଲେ । ସାମାଜିକ କୁସଂସ୍କାର ପ୍ରଗତିର ଅନ୍ତରାୟ, ଏକଥା ଡକ୍ଟର

ମହତାବ ମର୍ମେମର୍ମେ ଉପଲବ୍ଧି କରିଥିଲେ । ବହୁ ସମୟରେ ବିଭିନ୍ନ ଲେଖକଙ୍କ ଦ୍ୱାରା ଲେଖା ଯାଉଥିବା ପ୍ରବନ୍ଧର ପ୍ରତିକ୍ରିୟା ସ୍ୱରୂପ ଡକ୍ଟର ମହତାବ ତାଙ୍କର ନିଜସ୍ୱ ମତ ଗାଁ ମଜ୍‌ଲିସ୍‌ରେ ଦେଉଥିଲେ । ଏହି ମତ ଉପସ୍ଥାପିତ କରିବାବେଳେ ସେ ଶାସ୍ତ୍ରର ଅସାରତତ୍ତ୍ୱକୁ ଗ୍ରହଣ ନକରି ସାରତତ୍ତ୍ୱକୁ ଗ୍ରହଣ କରିବାକୁ କହୁଥିଲେ । ସେ ଜଗନ୍ନାଥ ମନ୍ଦିରରେ ଗୋପନରେ ଚାଲିଥିବା ଜୀବବଳି ପ୍ରଥା ସଂପର୍କରେ ମତଦେଇ ଲେଖିଥିଲେ, " ଜଗନ୍ନାଥଙ୍କ ସମ୍ବନ୍ଧରେ ଏତିକି ସେବକମାନେ ଜାଣନ୍ତୁ, ମୂର୍ତ୍ତି ଜୀବନ୍ତ ରହନ୍ତି ସେବକମାନଙ୍କ ଧର୍ମନିଷ୍ଠାଯୋଗେ, ସେବକମାନେ ଧର୍ମଛଡ଼ା ହେଲେ ମୂର୍ତ୍ତି କେବଳ ମୂର୍ତ୍ତି ହୋଇ ରହନ୍ତି । ପରମାତ୍ମାଙ୍କ ସତ୍ତା ତାଙ୍କ ମଧ୍ୟରୁ ଅନ୍ତର୍ହିତ ହୁଏ । ଧର୍ମସ୍ଥାନରେ ସାହସର ସହିତ ବଳିପ୍ରଥା ବନ୍ଦ କରି ମନ୍ଦିରକୁ, ପୁରୁଷୋତ୍ତମଙ୍କୁ ଆବାହନ କରନ୍ତୁ ।"

ଗାଁ ମଜ୍‌ଲିସ୍ କେବଳ ଦୋଷତ୍ରୁଟି ଦେଖାଇ ନାହିଁ, ସମାଲୋଚନା କରିନାହିଁ ବରଂ ସରକାରଙ୍କୁ ବହୁ ଗଠନମୂଳକ ପ୍ରସ୍ତାବ ଦେଇଛି । ଭୁବନେଶ୍ୱରରେ ମ୍ୟାନହୋଲର ଲୁହା ଘୋଡ଼ଣୀ ଚୋରି ହେଉଥିବାର ଲକ୍ଷ୍ୟ କରି ସେ ସିମେଣ୍ଟ ଘୋଡ଼ଣୀ ବ୍ୟବହାର କରିବାର ପ୍ରସ୍ତାବ ଗାଁ ମଜ୍‌ଲିସ୍‌ରେ ଦେଇଥିଲେ । ଏହା ସେତେବେଳେ କାର୍ଯ୍ୟକାରୀ ହୋଇଥିଲା ।

ଡକ୍ଟର ମହତାବ ହେଉଛନ୍ତି ନବଉତ୍କଳର ନିର୍ମାତା । ବସ୍ତୁତଃ ତାଙ୍କର ଦୂରଦୃଷ୍ଟି ଓ ଉଦ୍ୟମ ଫଳରେ ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ହୋଇଛି, ଭୁବନେଶ୍ୱର ନୂଆ ରାଜଧାନୀ ନିର୍ମାଣ କରାଯାଇଛି, ହୀରାକୁଦ ଜଳଭଣ୍ଡାର ନିର୍ମାଣ ହୋଇଛି । ସେ ଗାଁ ମଜ୍‌ଲିସ୍‌ରେ ବିଭିନ୍ନ ରାଜନୈତିକ ସମୀକ୍ଷା ବିଷୟମାନ ଲେଖିଛନ୍ତି । "ଗଣତନ୍ତ୍ର ବା ଗଡ଼ତନ୍ତ୍ର" ଶୀର୍ଷକ ଗାଁ ମଜ୍‌ଲିସ୍‌ରେ ଓଡ଼ିଶାର ବର୍ତ୍ତମାନ ରାଜନୈତିକ ପରିସ୍ଥିତି ସଂପର୍କରେ ଉଲ୍ଲେଖ କରି କହିଛନ୍ତି, "ରାଜତ୍ୱ ଗଲାପରେ ରାଜା ଗଣତନ୍ତ୍ର ପରିବର୍ତ୍ତେ ତାଙ୍କର ସେହି ପୂର୍ବ ଗଡ଼ତନ୍ତ୍ର ଚାଳୁ କରନ୍ତି ଏପରି ମଧ୍ୟ ଲୋକ ଅଛନ୍ତି । ଏ ଶ୍ରେଣୀର ବ୍ୟକ୍ତି ସମାଜର ଶତ୍ରୁ । ଏ ଶ୍ରେଣୀର ଲୋକଙ୍କୁ ନେଇ ସାମାଜିକ ଦୃଷ୍ଟିକୋଣରୁ ରାଜନୀତି ପରିଚାଳନା କରିବା ବିପଜ୍ଜନକ । ପଶ୍ଚିମାଞ୍ଚଳର ଲୋକେ ଯାହା ଭାବନ୍ତୁ ପଛକେ, ସେମାନେ ସାଧାରଣ ଶ୍ରେଣୀର ପ୍ରତିନିଧି ନିର୍ବାଚନ କରି ନପାରିଲେ ରାଜ ମନୋନୀତ ପ୍ରତିନିଧିଙ୍କୁ ନେଇ ଶାସନରେ ପୂରାଇବାର ପରିଣାମ ହେବ ଗଣତନ୍ତ୍ର ପ୍ରତି ବିପଦ ।+++ ସ୍ୱତନ୍ତ୍ର ଦଳ ଅନ୍ୟତ୍ର ଯାହା ହୋଇଥାଉ ପଛକେ, ଓଡ଼ିଶାରେ ଏହା ଏକ ରାଜମନୋନୀତଦଳ ଓ ଏହା ଜନତା ପକ୍ଷରେ ଅସ୍ପୃଶ୍ୟ । ଅନ୍ୟ ଦଳମାନେ ପରସ୍ପର ସହିତ ସହଯୋଗ କରି ରାଜ ମନୋନୀତ ଦଳର ମୂଳୋତ୍ପାଟନ କରନ୍ତୁ ।"

ଗାଁ ମଜ୍‌ଲିସ୍‌ର ଦୃଷ୍ଟି, ଦର୍ଶନ ଓ ବିଚାରକୁ ବିଶ୍ଳେଷଣ କଲେ ଏଥିରେ ଡକ୍ଟର ମହତାବଙ୍କର ସ୍ୱାଭିମାନ, ସ୍ୱାବଲମ୍ବନ ଓ ସ୍ୱଦେଶ ପ୍ରୀତିର ଭାବ ସୁସ୍ପଷ୍ଟ । ଶିକ୍ଷିତ ଓ ଅଶିକ୍ଷିତ ଲୋକମାନଙ୍କର ବୋଧଗମ୍ୟ ଭାଷାରେ ଏଥିରେ ରାଜନୀତିକ, ସାମାଜିକ, ପ୍ରଶାସନିକ ଓ ଧାର୍ମିକ ବିଚାର ପ୍ରକଟ କରାଯାଇ ଜନଚେତନା ଜାଗ୍ରତ କରାଯାଇଛି । ଏହାକୁ ମାଧ୍ୟମ କରି ଡକ୍ଟର ମହତାବ ଜନଚେତନାର ଜାଗ୍ରତ ପ୍ରହରୀ ହୋଇପାରିଛନ୍ତି ।

ଗାଁ ମଜ୍‌ଲିସ୍ ସମ୍ପର୍କରେ ଡକ୍ଟର ମହତାବ ଯାହା ଲେଖି ଯାଇଛନ୍ତି, ତାହା ଏବେ ମଧ୍ୟ ଘଟୁଛି କିନ୍ତୁ ମହତାବଙ୍କ ପରି ବଳିଷ୍ଠ, ନିର୍ଭୀକ ରାଷ୍ଟ୍ରନୀତିଜ୍ଞ ନାହାନ୍ତି । ଅସି ଠାରୁ ମସି ଅଧିକ ଶକ୍ତିଶାଳୀ, ଏହା ସେ ପ୍ରମାଣ କରିବା ସହିତ, ତାଙ୍କର 'ଗାଁ ମଜ୍‌ଲିସ୍' ତାଙ୍କୁ କାଳଜୟୀ ସ୍ରଷ୍ଟାପୁରୁଷ ଆସନରେ ଅଧିଷ୍ଠିତ କରିପାରିଛି । ସେ ଅଗ୍ରଗାମୀ ଚେତନା ସମଗ୍ର ମାନବଜାତିର । ସେହିଁ କେବଳ କହିପାରନ୍ତି, "ଉଚ୍ଚଚିନ୍ତା, ମହତ୍‌କାର୍ଯ୍ୟର ପରିକଳ୍ପନା ଓ ସନ୍ନିଧାନ ପ୍ରତିବେଶୀଙ୍କ ସହ ସମକକ୍ଷ ବୋଲି ଆତ୍ମବିଶ୍ୱାସ ଏହାହିଁ ଓଡ଼ିଶାର ଯୁବପ୍ରାଣକୁ ଆଶାନ୍ୱିତ ଓ ଉତ୍ସାହିତ କରିବାର କଥା ।+++ ଶରୀର, ମନ ଓ ଧନ ମୋର ଯାହା କିଛି ମୁଁ ଏ ଅନୁଷ୍ଠାନ ପଛରେ ଖଟାଇଛି, ଏଥିରେ ମୋର ବ୍ୟକ୍ତିଗତ ସ୍ୱାର୍ଥ ତିଳେ ହେଲେ କେଉଁଠି ନାହିଁ ।"

ନିଜ ସ୍ୱାର୍ଥରୁ ବହୁ ଊର୍ଦ୍ଧ୍ୱକୁ ଉଠି ସାହିତ୍ୟିକ ଓ ସାମଗ୍ରିକ ବିକାଶ ପାଇଁ ଡକ୍ଟର ମହତାବଙ୍କର ଭାବ, ଚିନ୍ତା ଓ କାର୍ଯ୍ୟର ମହାନ୍ ପରାକାଷ୍ଠାର "ଗାଁ ମଜ୍‌ଲିସ୍" ତାଙ୍କ ବ୍ୟକ୍ତିତ୍ୱର କାଳ୍ପନିକ ଜାଗତିକ ।

ପ୍ଲଟ୍ ନଂ.୫୦୧୨/୫/୫୩, ଗୌତମ ନଗର,
ଭୁବନେଶ୍ୱର-୭୫୧୦୦୫

• • •

## ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ

ସ୍ୱାଧୀନତା ପାଇଁ ତାଙ୍କର ଦୃଢ଼ ନିଷ୍ଠା, ଅକ୍ଲାନ୍ତ ପରିଶ୍ରମ ଏବଂ ସ୍ୱାଧୀନତା ପ୍ରାପ୍ତି ପରେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ନିରବଚ୍ଛିନ୍ନ ଉଦ୍ୟମ ତାଙ୍କୁ ଏ ଜାତି ପାଖରେ ଚିର ସ୍ମରଣୀୟ କରି ରଖିବ । ଓଡ଼ିଶାର ଆବାଳ-ବୃଦ୍ଧ-ବନିତାଙ୍କ ପାଖରେ ତାଙ୍କର ନିବିଡ଼ ପରିଚୟ ହିଁ ତାଙ୍କରି ଅସାଧାରଣ ଲୋକପ୍ରିୟତାର ନିଦର୍ଶନ । କେବଳ ରାଜନୈତିକ ନେତା ହିସାବରେ ନୁହନ୍ତି, ନିଜର ବହୁମୁଖୀ ପ୍ରତିଭା ଦ୍ୱାରା ସେ ଆଧୁନିକ ଓଡ଼ିଶାର ପ୍ରତିଷ୍ଠାତା ଭାବରେ ପରିଚିତ ହୋଇ ପାରିଛନ୍ତି । ତାଙ୍କର ଯୁଚ ସୁଲଭ କର୍ମ ପ୍ରବଣତା, ଦୃଢ଼ତା ତଥା ନିର୍ଭୀକତା ତାଙ୍କୁ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ ଭାବରେ ପ୍ରତିଷ୍ଠିତ କରି ପାରିଛି ।

୰ ନୀଳାମ୍ବର ଦାସ

# କାରା-ଜୀବନର କାହାଣୀ

ଶ୍ରୀ ମହେଶ୍ୱର ମୂଳିଆ

ଡକ୍ଟର ମହତାବ ସ୍ୱାଧୀନତା ସଂଗ୍ରାମ କାଳରେ ୧୯୨୧ ରୁ ୧୯୪୨ ମସିହା ମଧ୍ୟରେ ସାତଥର ଜେଲ ଯାଇଥିଲେ । ପ୍ରାୟ ଆଠବର୍ଷ ବନ୍ଦୀ-ଜୀବନ ଅତିବାହିତ କରିଥିଲେ । କାରାଗାରର ନିଭୃତ କୋଠରୀ ଭିତରେ ହିଁ ତାଙ୍କର ଅନନ୍ୟ ସାରସ୍ୱତ ପ୍ରତିଭାର ଅଫୁରନ୍ତ ବିକାଶ ଘଟିଥିଲା । ସେଇଠୁ ପାଇଥିଲେ ସେ ସଫଳ ଜୀବନର ମାର୍ଗ, ସାଧନା ଓ ସଂଗ୍ରାମର ସନ୍ଦେଶ । କଂସର କାରାଗୃହରେ ଶ୍ରୀକୃଷ୍ଣଙ୍କ ଆବିର୍ଭାବ ଭଳି ବ୍ରିଟିଶ ଜେଲ ଭିତରେ ହିଁ ପ୍ରବୁଦ୍ଧ ପ୍ରତିଭା ପୁରୁଷ ମହତାବଙ୍କ ସୃଷ୍ଟି ।

୧୯୨୧ ମସିହାରେ ୧୫ ଦିନ ପାଇଁ ତାଙ୍କର ଜେଲଜୀବନର ଆରମ୍ଭ । ୧୯୨୨ରେ ଏକବର୍ଷ, ୧୯୩୦ରେ ୧୮ ମାସ, ୧୯୩୨ରେ ୬ମାସ କରି ଦୁଇଥର, ୧୯୪୦ରେ ଏକବର୍ଷ ଏବଂ ଶେଷରେ ୧୯୪୨ ମସିହାରେ ସର୍ବାଧିକ ତିନିବର୍ଷ କାଳ ଜେଲଦଣ୍ଡ ଭୋଗିଥିଲେ । ଏଥି ମଧ୍ୟରେ ୧୯୨୨, ୧୯୩୦ ଓ ୧୯୪୨ ମସିହାର ଜେଲ ଦଣ୍ଡ ତାଙ୍କ ଜୀବନର ସବୁଠୁ ଘଟଣାବହୁଳ ଓ ମହତ୍ୱପୂର୍ଣ୍ଣ ।

ଡକ୍ଟର ମହତାବଙ୍କ ସହକର୍ମୀ ଭୈରବ ଚରଣ ମହାପାତ୍ର ୧୯୨୨ରେ ମହତାବଙ୍କ ଜେଲଯାତ୍ରାର ସ୍ମୃତିଚାରଣ କରି ଲେଖିଛନ୍ତି- "ମହତାବଙ୍କୁ କଟକ ଜେଲରୁ ରେଲଯୋଗେ ଭାଗଲପୁର ଜେଲକୁ ନିଆଗଲାବେଳେ ବାଲେଶ୍ୱର ରେଲଷ୍ଟେସନରେ ତାଙ୍କୁ ଯେପରି ଅବସ୍ଥାରେ ଦେଖିଥିଲି, ସେ କଥା ମନେ ପକାଇ ଆଖିରେ ଲୁହ ଆସିଯାଉଛି । ସେ ତୃତୀୟ ଶ୍ରେଣୀର ବନ୍ଦୀ । ତେଣୁ ସେ ଚୋରିଆ ହାଫ ପାଣ୍ଟ ଓ ହାପ କୁର୍ତ୍ତା ପିନ୍ଧିଥିଲେ । ବେକରେ ଥିଲା ଲୁହାରେ କାଟିଥିବା ଏକ କାଠର ଫଳକ, ଯେଉଁଥିରେ ଖଲାସ ହେବାର ତାରିଖ ଓ କଏଦୀ ନମ୍ବର ଲେଖା ଥାଏ । ସେ ବାଲେଶ୍ୱର ଷ୍ଟେସନରେ ମୁହଁ ହାତ ଧୋଇବାକୁ ପ୍ଲାଟଫର୍ମରେ ଓହ୍ଲାଇଲେ । ଆମେମାନେ ସେ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଥିଲୁ । କଟକ ଜେଲରେ ସେ ନଡ଼ିଆ କତା ବଳିବା ଫଳରେ ତାଙ୍କ ହାତ ପାପୁଲି ଛିଣ୍ଡି ଯାଇଥାଏ ଓ ବିନ୍ଧି ହୋଇଯାଇଥାଏ ।

ଏକବର୍ଷ ଜେଲଦଣ୍ଡ ପାଇବାପରେ ସେ ବାଲେଶ୍ୱର ଜେଲରେ ଦୁଇତିନିଦିନ ସାଧାରଣ କଏଦୀ ଭାବରେ ରହିଲେ । ସେଠାରୁ କଟକ ଜେଲକୁ ବଦଳି ହେଲେ । ହାତରେ ହାତକଡ଼ି ଓ ଗୋଡ଼ରେ ବେଡ଼ି ପକାଇ ତାଙ୍କୁ ଷ୍ଟେସନକୁ ନିଆଯାଇଥିଲା ।

କଟକ ଜେଲରେ ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରି ଡକ୍ଟର ମହତାବ ଆତ୍ମଜୀବନୀରେ ଲେଖିଛନ୍ତି- "ଦୁଇଖଣ୍ଡ କମ୍ପିଆ, ଯାହା ମୋର କଟିର ଅଧେ ପର୍ଯ୍ୟନ୍ତ ଆସୁଥିଲା, ଦୁଇଖଣ୍ଡ ହାତ ନଥିବା ଜାମା ଓ ଖଣ୍ଡେ ଛୋଟ କନା ମିଳିଥାଏ ଗାମୁଛା କରିବା ପାଇଁ । ଆଉ ଖଣ୍ଡେ ଟୋପି । ତିନିକୋଣିଆ ଏକରଡ଼ ମୋଟା କାଠ ଖଣ୍ଡିକରେ କଏଦୀ ନମ୍ବର, କେତେମାସ ସଜା, ଜେଲ ହେବା ତାରିଖ ତା ଉପରେ ଗରମ ଲୁହାରେ ଦଗା ହୋଇଥାଏ । ସେ ପଟକା ଲୁହାଛଡ଼ରେ ଗୁନ୍ଥାହୋଇ ମାଳ ପରି ବେକରେ ପଛପାଖରେ ଏପରି ଆଣ୍ଟି ଦିଆ ହୋଇଥାଏ ଯେ, ସେ କାଠମାଳ ଆଉ ବାହାରି ପାରିବ ନାହିଁ ।

ଦୁଇଖଣ୍ଡ ଲୁହା ଥାଳି, ଖଣ୍ଡେ ବଡ଼ ଆଉ ଖଣ୍ଡେ ଟିକିଏ ସାନ ମିଳିଥାଏ । ଖଣ୍ଡିକରେ ଖାଇବାପାଇଁ ଓ ଆଉ ଖଣ୍ଡିକରେ ପାଣି ପିଇବା ପାଇଁ ବା ଲୋଟା ପରି ବ୍ୟବହାର କରିବା ପାଇଁ । ସେଇଥିରେ ପାଣି ନେଇ ଝାଡ଼ାଫେରି ଯିବାକୁ ହୁଏ । ମୋତେ ଅନ୍ତତଃ ଘଣ୍ଟାଏ ଏହା ପଛରେ ଦିନ୍ ଲାଗିବାକୁ ପଡୁଥିଲା, ଏହାକୁ ସାଫ୍ ରଖିବା ପାଇଁ । ଝାଡ଼ା ଫେରିବା ପାଇଁ ପାଇଖାନାର ବନ୍ଦୋବସ୍ତ ଏପରି ଯେ ସମସ୍ତେ ଏକ ସାଙ୍ଗରେ ଏକା ସମୟରେ ଝାଡ଼ା ଫେରିଯିବେ, ପରଦାର ବ୍ୟବସ୍ଥା ନାହିଁ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଦେଖି ପାରୁଥିବେ ।

ଖାଇବାକୁ ମିଳୁଥିଲା ଭାତ, ଡାଲି, ଶାଗ ଓ ତେନ୍ତୁଳି । ଭାତରେ ଏତେ ଗୋଡ଼ି ଯେ ବୋବାଇ ଖାଇବାକୁ ଭି ନ ଥିଲା । ଭାତକୁ ପ୍ରଥମେ ପାଣିରେ ଧୋଇନେଇ ତାପରେ ମୁଁ ଖାଉଥିଲି । ଜେଲଖାନାରେ ରୋଟି ମିଳିବା ସେତେବେଳେ ଏକ ମହା ଅନୁଗ୍ରହର ବିଷୟ ଥିଲା ।

କଟକ ଜେଲରେ ବେଶୀଦିନ ମୁଁ ରହିଲି ନାହିଁ । ମାସେ ଖଣ୍ଡେ ରହିବା ପରେ ମୋତେ ଭାଗଲପୁର ସେଣ୍ଟ୍ରାଲ ଜେଲକୁ ବଦଳି କରାହେଲା । ମୋତେ ମୋର ସ୍ୱାସ୍ଥ୍ୟ ଅନୁସାରେ କଠିନ କାମ ଦିଆହେଲା । ମୋ ସାଙ୍ଗକୁ ଜଣେ ମଧ୍ୟମ କାମ କରିବାବାଲା ଓ ଆଉ ଜଣେ ହାଲୁକା କାମ କରିବାବାଲା, ଏପରି ତିନିଜଣଙ୍କ ପାଇଁ ଦୈନିକ ୭୫ ସେର ଧାନ କୁଟିବା ପାଇଁ ଆଦେଶ ହେଲା । ୯ଘଣ୍ଟା ଅତି କଠିନ ପରିଶ୍ରମ କରି ମଧ୍ୟ ୪୦ ସେର ସୁଦ୍ଧା ଧାନ ଆମେ ଢିଙ୍କିରେ କୁଟି ପାରିଲୁ ନାହିଁ । ଦୁଇ ତିନିଦିନ କାମ ହେବାରୁ ପ୍ରଥମେ ୪ ଦିନ ପାଇଁ ରାତି ହାତକଡ଼ି ଦଣ୍ଡ ହୁକୁମ ହେଲା । ଅର୍ଥାତ୍ ସନ୍ଧ୍ୟାବେଳେ ହାତକଡ଼ି ପକାଇ ଦିଆହୁଏ ଓ ସକାଳୁ ପୁଣି ଖୋଲି ନିଆହୁଏ । ରାତି ସାରା ମଶା ଖାଇଯାଉଥାନ୍ତି । ତାକୁ ସହ୍ୟ କରି ହାତକଡ଼ି ପିନ୍ଧି ପଡ଼ିରହିଥାଏ । ଏ ଦଣ୍ଡ ଶେଷ ହେବା ବେଳକୁ ମଧ୍ୟ ମୁଁ ପୁରା କାମ କରିପାରୁ ନାହିଁ । ତେଣୁ ତାପରେ ମାସକ ପାଇଁ ଗୋଡ଼ରେ ଲୁହା ଝଞ୍ଜିର ବେଡ଼ି ପଡ଼ିବାର ଦଣ୍ଡ ହେଲା । ଏସବୁ ଦଣ୍ଡ ସାଙ୍ଗେ ସାଙ୍ଗେ ପ୍ରତି ସୋମବାର ଦିନ ସରକାର ସଲାମ ଆଦେଶ ଅମାନ୍ୟ ପାଇଁ ଠେଲା ପେଲା, ମାରଧର ଚାଲିଥାଏ । ଗୋଡ଼ରେ ବେଡ଼ି ପିନ୍ଧି ଚୌଡ଼ିବାରେ ଅଭ୍ୟାସ ସେତେବେଳେ କରୁଥିଲି । ଏହି ସମୟରେ ମୁଁ ଆଉ ଏକ କାମରେ ମନ ନିୟୋଗ କରିଥିଲି ସେ ହେଉଛି ପ୍ରାଣାୟମ ସାଧନା । ଶେଷରେ ମୁଁ ଜେଲରଙ୍କୁ କହିଲି ଯେ, ଢିଙ୍କି କାମ ପରିବର୍ତ୍ତେ ଚକି ପେଷା କାମ ମୋତେ ଦିଆ ହେଉ । କାରଣ ଢିଙ୍କିରେ ତିନିଜଣ ମିଶି କାମ କରୁଥାନ୍ତି । ଅନ୍ୟ ଦୁଇ ଜଣ ହେଲା କଲେ ମୁଁ ମଧ୍ୟ ଦାୟୀ ହୋଇ ଯାଉଥାଏ । ଚକିରେ ମୁଁ ଏକାଏକା କାମ କରିବି । ଜେଲର୍ ଏଥିରେ ରାଜି ହୋଇ ମୋ ଟିକଟରେ ଢିଙ୍କିକାମ ପରିବର୍ତ୍ତେ ୨୦ ସେର

ମହମ-ପେଷା କାମ ଦେଇଥିଲେ । ମୁଁ ଖୁସି ହୋଇ ପ୍ରଥମେ ଦିନେ ଦୁଇଦିନ କାମ ପରିବର୍ତ୍ତନର ଆନନ୍ଦ ଅନୁଭବ କଲି, ମାତ୍ର ଏଥିରେ ମଧ୍ୟ ମୁଁ ୧୦/୧୨ ସେରରୁ ବେଶୀ ପେଷି ପାରିଲି ନାହିଁ । ମୋତେ ବଡ଼ ଲାଜ ବୋଧ ହେଉଥାଏ । ଏ କାମ ନ କରିପାରିବାରୁ ଦଣ୍ଡ ବଢ଼ି ଅର୍ଥାତ୍ ମୁହାଁଛଡ଼ ଦୁଇଖଣ୍ଡରେ ଗୋଡ଼ରେ ବେଡ଼ି ପଡ଼ିଲା-ଏକମାସ ପାଇଁ । ସେତେବେଳେ ଜେଲ୍ ଭିତରେ ବହି, ଖବରକାଗଜ ନାହିଁ । କେବଳ ଗୀତା, ଭାଗବତ ଓ ଅନ୍ୟ ଧର୍ମ ପୁସ୍ତକ ବ୍ୟତୀତ ଆଉ କିଛି ମିଳୁ ନଥିଲା । ସାନ୍ତାଳ ପରଗଣାର ଜଣେ ଧନୀ ବ୍ୟବସାୟୀ ଯେ ଆମ ସାଙ୍ଗରେ ଥିଲେ, ସେ କୌଣସି ସୂତ୍ରରେ ଦୁଇ ଚାରିଜଣ ୱାର୍ଡ଼ରଙ୍କୁ ହାତକରି ଲୁଚାଇ ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଖବରକାଗଜ ଅଣାଉଥିଲେ ଓ ବାହାର ସହିତ ଚିଠିପତ୍ର ସମ୍ବନ୍ଧ ରଖୁଥିଲେ ।

ଆମକୁ ସକାଳଓଳି ଭାତ, ଡ଼ାଲି, ଶାଗ ଓ ଉପରଓଳି ରୋଟି, ଡ଼ାଲି, ଶାଗ ଦିଆ ହେଉଥାଏ । ସକାଳୁ ଖାଇବାପାଇଁ ଭାତରେ ହଳଦୀ ପକାଇ ଖିଚିଡ଼ି କରି ଦିଆହେଉଥାଏ । ମାତ୍ର ଏକରକମର ଖାଇବା ସବୁଦିନେ ପସନ୍ଦ ହେଉ ନଥାଏ । ନାନାପ୍ରକାର ଜିନିଷ ଖାଇବାପାଇଁ ଇଚ୍ଛା ହେଉଥାଏ । ବାହାରେ କେଉଁଦିନ କେଉଁଠି ଭଲ ଖିଆ ହୋଇଥିଲା, ସେ ସବୁ ମନେପଡ଼େ,ବିଶେଷତଃ ମିଠା ଓ ତେଲିଆ ଜିନିଷ ଖାଇବାପାଇଁ ଇଚ୍ଛା ହେଉଥାଏ । ସାନ୍ତାଳପରଗଣାର ବ୍ୟବସାୟୀ ୱାର୍ଡ଼ର ଜରିଆରେ ବାହାରୁ ମିଠାଇ କିଛି କିଛି ମଗାଉ ଥିଲେ । ସେ ପୁଣି ଆସୁଥିଲା ୱାର୍ଡ଼ରର ପଗଡ଼ି ତଳେ-ଅର୍ଥାତ୍ ୨/୪ଟା ମାତ୍ର । ତାକୁ ମହାପ୍ରସାଦ ପରି ଟିକିଏ ଟିକିଏ ସମସ୍ତେ ଖାଉଥିଲେ । ଯେ ନ ପାଉଥିଲା, ସେ ରାଗି ଅସ୍ଥିର ହେଉଥିଲା । ଥରେ ଦୁଇଥର ଏହାକୁ ଖାଇବାପାଇଁ ମୁଁ ବ୍ୟାକୁଳ ହୋଇଥିଲି-ମାତ୍ର ନିଜକୁ ନିଜେ ଲଜ୍ଜିତ ମନେ କରି ଆଉ କିଛି ଖାଇବାର ଇଚ୍ଛା ପୋଷଣ କରି ନଥିଲି ।

ସେତେବେଳେ ମୋ ପାଖରେ ତିନିଖଣ୍ଡ ମାତ୍ର ବହି ଥାଏ-ଖଣ୍ଡିଏ 'ତିଳକ ଗୀତା', ଖଣ୍ଡିଏ 'ବାଇବେଲ' ଓ ଆଉ ଖଣ୍ଡିଏ ରବୀନ୍ଦ୍ରନାଥଙ୍କ 'ଶାନ୍ତି ନିକେତନ' । 'ତିଳକ ଗୀତା'କୁ ମୁଁ ଭଲ କରି ପଢ଼ିଥିଲି । ସେଥିରୁ ପ୍ରକୃତ ଆଶ୍ୱାସନା ପାଉଥିଲି । ରବୀନ୍ଦ୍ରନାଥଙ୍କ ଲେଖା ଓ ତାଙ୍କର ଧର୍ମାଲୋଚନା ମୋତେ ଶାନ୍ତି ଦେଉଥିଲା । ମୁଁ ଏହି ଅଫିସ୍‌ରେ କାମ କରି ହିସାବପତ୍ର ରଖିବା, ଟାଇପ୍ କରିବା ଇତ୍ୟାଦି ବହୁପ୍ରକାର କାମ ଶିଖିଥିଲି । ମାସେଖଣ୍ଡେ କାମ କରିବାପରେ ଏକାଉଣ୍ଟାଣ୍ଟ ସୁରେନ୍ ବାବୁଙ୍କର ମୁଁ ଖୁବ୍ ବିଶ୍ୱାସଭାଜନ ହୋଇଗଲି । ସେ ପୁରାପୁରି ମୋ ଉପରେ ନିର୍ଭର କରିବାରେ ଲାଗିଲେ । ଏଣେ ସୁପରିଣ୍ଟେଣ୍ଡେଣ୍ଟଙ୍କ ମତିଗତିର ପରିବର୍ତ୍ତନ ହୋଇଯାଉଥିଲା । ରାତିରେ ପଢ଼ିବାପାଇଁ ଲଣ୍ଠନ ଗୋଟିଏ ମୋତେ ଦେଲେ । ଆଉ ମଧ୍ୟ ଲେଖିବାପାଇଁ କାଗଜ, କଲମ ଓ କାଳି ଇତ୍ୟାଦି ମୋତେ ଦେଲେ । ମୁଁ 'ଅଜବ ଦୁନିଆ' ନାମକ ଏକ ଉପନ୍ୟାସ ଏହି ଜେଲରେ ଲେଖିଥିଲି । ଏ ଉପନ୍ୟାସ ଛଡ଼ା ଇଂରେଜୀରେ 'Free Thinking' ବୋଲି ଖଣ୍ଡେ ବହି ଲେଖିଥିଲି ।

୧୯୩୦ ମସିହାରେ ଡ଼କ୍ଟର ମହତାବ ହଜାରୀବାଗ ଜେଲରେ ଗୋପବନ୍ଧୁ ଚୌଧୁରୀ, ସୀମାନ୍ତ ଗାନ୍ଧୀ, ଅବଦୁଲ ଗଫୁର ଖାଁ ଓ ତାଙ୍କ ବଡ଼ଭାଇ ଖାଁ ସାହେବଙ୍କ ସହ ଥିଲେ । ଜେଲ ଭିତରୁ ବାହାରକୁ ପଠାଉଥିବା ତାଙ୍କର ଏକ ଗୁପ୍ତ ଚିଠି ଧରାପଡ଼ି ଯିବାରୁ ତାଙ୍କୁ ପାଟନା କ୍ୟାମ୍ପ ଜେଲକୁ ବଦଳି କରାଯାଇଥିଲା ।

ପାଟଣା କ୍ୟାମ୍ପ ଜେଲର ସହବନ୍ଦୀ ୰ ବିନୋଦ କାନୁନ୍‌ଗୋ ସେଦିନର ସ୍ମୃତିରେ ଚାରଣ କରି ଲେଖିଛନ୍ତି-"ଦିନେ ପାଟନା କ୍ୟାମ୍ପ ଜେଲ ଭିତରେ ଖବର ଖେଳିଗଲା ଯେ ହରେକୃଷ୍ଣ ମହତାବ ଆସି ଜେଲ ଫାଟକ ପାଖରେ ପହଞ୍ଚିଲେଣି । ତାଙ୍କୁ 'ଗ' ଶ୍ରେଣୀ ବନ୍ଦୀ ରୂପେ ବଦଳି କରି ଦିଆଯାଇଛି । ମହତାବବାବୁ ଜେଲ ଭିତରକୁ ଆସିଲେ । ହଜାର ହଜାର ବନ୍ଦୀ ତାଙ୍କୁ ଘେରିଗଲେ । ମହତାବ ଜିନ୍ଦାବାଦ୍ ବୋଲି ସମସ୍ତଙ୍କ ମୁହଁରେ ଧ୍ୱନି । ବିନୋଦାନନ୍ଦ ଝା, ଗଙ୍ଗାଶରଣ ସିଂହ ତାଙ୍କୁ କୁଣ୍ଢାଇ ପକାଇଲେ ।

ଜେଲରେ ଚାଲିଲା ନୂତନ ଜୀବନ । ସବୁ ଛାତ୍ର ଯୁବକ ବନ୍ଦୀ ଭଲ ଭାବରେ ପାଠ ପଢ଼ିବେ । ମହତାବବାବୁ ବ୍ୟବସ୍ଥିତ ଢ଼ଙ୍ଗରେ କଥାଟାକୁ ଚଳାଇଦେଲେ । ତର୍କସଭା, କବିତା ପ୍ରତିଯୋଗିତା, ପ୍ରବନ୍ଧ ପ୍ରତିଯୋଗିତା, ଭାଷଣ ପ୍ରତିଯୋଗିତା ଚାଲିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଗୋକୁଳାନନ୍ଦ ମହାନ୍ତି, ମହତାବ ପ୍ରଥାନ୍ତି ଅନ୍ୟମାନଙ୍କର ଗୁରୁ । ହିନ୍ଦୀ, ବଙ୍ଗଳା, ଓଡ଼ିଆ ସମସ୍ତେ ଯେମିତି ଭଲ ଭାବରେ ଜାଣିବେ, ତାହାର ବ୍ୟବସ୍ଥା ହେଲା । ବନ୍ଦୀଜୀବନ ଯେମିତି ଆନନ୍ଦମୟ ହେବ, ସେଥିପାଇଁ ନୂତନ ବ୍ୟବସ୍ଥାର ଚିନ୍ତା ମହତାବ କଲେ । ସେ ଗୋଟିଏ ନାଟକ ସ୍ୱରାଜ ପଥେ ଲେଖିଦେଲେ । ଆମେ ସବୁ ପାର୍ଟ ନେଲୁ । ଜେଲ ଭିତରେ ଯେଉଁସବୁ କମ୍ବଳ, ଚଦର ଇତ୍ୟାଦି ଥିଲା, ସେଥିରେ ସିନ କରାଗଲା । ବାହାରୁ ଜେଲର ଓ ୱାର୍ଡ଼ରଙ୍କୁ କହି କିଛି ଶାଢ଼ୀ, ଚଦର ଓ ଲୁଗା ମଗାଗଲା । ପେଣ୍ଡାଲ ତିଆରି ହୋଇ ଥିଏଟର ହେଲା । ୫୦୦ ଦର୍ଶକ । ପ୍ରବଳ ଉତ୍ସାହ ।

ଜିଲ୍ଲା ଜିଲ୍ଲା ଭିତରେ କବାଡ଼ି ପ୍ରତିଯୋଗିତା, ଚୋରୁ ଚୋରାଖେଳ ଇତ୍ୟାଦି ଖୁବ୍ ମଜାଳର ସହିତ ହେଉଥାଏ । ଚାରିଶହ ପାଞ୍ଚଶହ ଯୁବକ ଏକତ୍ରିତ ହୁଅନ୍ତି । ମାକ୍‌ସିମ ଗର୍କିଙ୍କ 'ମା' ଉପନ୍ୟାସ, ନେପୋଲିୟନଙ୍କ ଜୀବନୀ ଦିନ ଦିନ ଧରି ପଢ଼ା ହୁଏ । ସେହି ଜେଲରେ ଆମେ ସବୁ ରୋଗୀସେବା ଶିଖିଲୁ ।"

ପାଟଣା କ୍ୟାମ୍ପ ଜେଲର ସହବନ୍ଦୀ ବୈକୁଣ୍ଠନାଥ ମହାନ୍ତି ଲେଖିଛନ୍ତି "ପ୍ରତି ୱାର୍ଡ଼ରେ ୫୦ ଜଣ ବନ୍ଦୀ ରହୁଥାନ୍ତି । କଟକ ଜେଲପରି ସିମେଣ୍ଟ ଖଟ ସେଠାରେ ନଥିଲା । ସମସ୍ତେ ତଳେ ଶୋଉଥାନ୍ତି । ବାଉମାସୀ ତଳୁର ଖଣ୍ଡେ ଚଟ, ଖଣ୍ଡେ କମ୍ବଳ, ଖଣ୍ଡେ ଛୋଟ ବିଛଣା ଚଦର । ପିନ୍ଧିବାକୁ ଦୁଇଖଣ୍ଡି ହାଫ୍ ପ୍ୟାଣ୍ଟ, ଦୁଇଖଣ୍ଡି ଫତେଇ, ଖଣ୍ଡେ ଗାମୁଛା, ଖାଇବା ଲାଗି ଲୁହାର ଦୁଇଟି ବାଟି । ମାଜିବାକୁ ବହୁତ ପରିଶ୍ରମ ପଡ଼େ । ଘର ଉପରେ ଟିଣ ଓ ଖପରଲି ଢ଼ଙ୍କା । ଘରର ଚାରିପଟେ ଦସ୍ତାର ଜାଲ୍ଲ । ଅସହ୍ୟ ଗରମରେ ମୁଣ୍ଡ ଫାଟି ଯିବ, ତଣ୍ଟି ଶୁଖିଯିବ । ଶୀତଦିନେ ହାଡ଼ଭଙ୍ଗା ଶୀତ । ବେଡ଼ି ଉପରେ କୋରଡ଼ା ଭଳି ସକାଳେ ଖୁଦ ଖେଚେଡ଼ି କିମ୍ବା ରହମ ଦଳିଆ, ବାରଟା ବେଳେ ଫାଳିଏ ଭାତ, ଢ଼ାବୁଏ ଡ଼ାଲି, ଚାମୁଚେ ତରକାରୀ ଏବଂ ଟିକିଏ ତେନ୍ତୁଳି ଖଟା । ବଡ଼ମାନଙ୍କୁ ଯାହା, ଛୋଟମାନଙ୍କୁ ତାହା । ତଥାପି ସମୟ ଖୁସିରେ କଟିଯାଉଥିଲା । ପାଞ୍ଚ ହଜାର ବନ୍ଦୀ ଗୋଟିଏ ପରିବାର ଭଳି ରହୁଥିଲୁ । ତାଙ୍କ ଅଗୋଚରରେ ଚାଲିଲା ସମସ୍ତଙ୍କର ଆଲୋଚନା-ମହତାବବାବୁ କଣ ସତରେ ଏ ପ୍ରତିକୂଳ ପରିବେଶରେ ନିଜକୁ ମିଶାଇ ନେଇପାରିବେ ? ଯାହା ଲାଗି ଏତେ ଚିନ୍ତା, ଏତେ ଚର୍ଚ୍ଚା, ସେ କିନ୍ତୁ ନିର୍ଲିପ୍ତ, ନିର୍ବିକାର । ଅଳ୍ପଦିନରେ ସମସ୍ତଙ୍କ ସହ ମିଶିଗଲେ । ସମସ୍ତେ

ଯାହା ଖାଉଲେ, ସେ ମଧ ସେଇଆ ଖାଇଲେ । ନିଜ ହାତରେ ବାଟି ମାଜିଲେ, ଲୁଗା ସଫା କଲେ, ଲୋକେ ସାହାଯ୍ୟ ଲାଗି ଆଗେଇ ଆସିଲେ ନମ୍ରତାର ସହ ବାରଣ କଲେ । ଜେଲକୁ ଆଗଘେଡ଼ାର ଘରୋଇ ପରିବେଶ ଭଳି ଗ୍ରହଣ କରିନେଲେ । ମହତାବବାବୁ ଆସିବାପରେ ସେ ସ୍ଥାନ କର୍ମଚଞ୍ଚଳ ହୋଇ ଉଠିଲା । ସମସ୍ତଙ୍କଠାରେ ନୂତନ ପ୍ରେରଣା, ନୂତନ ଜୀବନର ସଂଚାର ହେଲା । କ୍ଲାସ ଚାଲିଲା, ଖେଳ କସରତ, ପ୍ରାଣାୟାମ ନିୟମିତ ହେଲା । ଜାତୀୟ ସଙ୍ଗୀତ ଶିକ୍ଷା ଦିଆଗଲା । ମହତାବ ବାବୁଙ୍କ ପ୍ରେରଣାରେ ଆମେ ଓଡ଼ିଆମାନେ ଭଣ୍ଡିସିଆ(ରୋଷାଇଘର) ଦାୟିତ୍ୱ ନେଲୁ । ହିସାବ କରି ଖାଦ୍ୟ ଆଣିବା ଫଳରେ ଯଥେଷ୍ଟ ଖାଦ୍ୟ ବଳିଲା । ଓଡ଼ିଆ ରାନ୍ଧଣା ଖାଇ ସମସ୍ତେ ଖୁସି ।"

୧୯୪୨ ମସିହାରେ ଅହମ୍ମଦନଗର ଫୋର୍ଟ ଜେଲର ଅଭିଜ୍ଞତା ବର୍ଣ୍ଣନା କରି ଡ଼କ୍ଟର ମହତାବ ତାଙ୍କ ଆତ୍ମଜୀବନୀ 'ସାଧନାପଥେ'ରେ ଲେଖିଛନ୍ତି-

"ବର୍ତ୍ତମାନ ମୁଁ ଅହମ୍ମଦନଗର ଫୋର୍ଟର ବନ୍ଦୀ । ଜେଲର, ୱାର୍ଡ଼ର ଓ ଆମେ ସମସ୍ତେ କିଲ୍ଲାର ଗୋରାସୈନ୍ୟମାନଙ୍କ ଦ୍ୱାରା ପରିବୃତ ହୋଇ ରହିଥାଉ । କୌଣସି ପ୍ରକାର ବାହାର ସହିତ ସମ୍ପର୍କ ଯେପରି ଆମର ନରହେ, ଆମେ କେଉଁଠି ଅଛୁ ତା ମଧ ବାହାର ଲୋକେ ଯେପରି ନଜାଣିବେ, ସେଥିପାଇଁ ସମସ୍ତ ବ୍ୟବସ୍ଥା କରା ହୋଇଥିଲା ।

୧୯୪୨ ମସିହା ଅଗଷ୍ଟ ମାସଠାରୁ ୧୯୪୫ ମସିହା ଅପ୍ରେଲ ମାସ ପର୍ଯ୍ୟନ୍ତ ମୁଁ ଅହମ୍ମଦନଗର ଫୋର୍ଟରେ ଆବଦ୍ଧ ଥିଲି । ମୋର ମନେହୁଏ ଏହି ସମୟଟି ଜୀବନରେ ସବୁଠାରୁ ଉତ୍କୃଷ୍ଟ ସମୟ । ପଣ୍ଡିତ ଜବାହରଲାଲ, ସର୍ଦ୍ଦାର ପଟେଲ ଓ ମୌଲନା ଆଜାଦ ପ୍ରଭୃତିଙ୍କୁ ମଧ ସେହିପରି ମନେ ହୋଇଥିଲା । କୌଣସି ସୁନିୟନ୍ତ୍ରିତ ବିଦ୍ୟାଳୟରେ ଯେପରି ଛାତ୍ରମାନେ ସଂଯମ ଓ ସାଧନା ଭିତର ଦେଇ ଗତି କରି ଭବିଷ୍ୟତ ପାଇଁ ପ୍ରସ୍ତୁତ ହୁଅନ୍ତି, ଅନ୍ତତଃ ମୁଁ ନିଜକୁ ନିଜେ ସେହିପରି କରିଥିଲି ।....ତିନିବର୍ଷ କାଳ ନିରବଚ୍ଛିନ୍ନ ଭାବରେ ନିର୍ଦ୍ଦିଷ୍ଟ କାର୍ଯ୍ୟନିର୍ଘଣ୍ଟ ଅନୁସାରେ ମିନିଟ ହିସାବ କରି ଚଳିବାଠାରୁ ଆରମ୍ଭ କରି, ଲେଖାପଢ଼ା, ଖେଳ କସରତ ଓ ମାଟି ହାଣିବା ପ୍ରଭୃତି ବଗିଚା କାମ ନିୟମିତ ରୂପେ କରିବା ଫଳରେ ନିଜ ଭିତରେ ଥିବା ଶକ୍ତି ବିକାଶ ଲାଭ କରିଥିଲା । ଏହା ଆମ୍ଭେମାନେ ଅନୁଭବ କରିଥିଲୁ । ଆମମାନଙ୍କ କାର୍ଯ୍ୟନିର୍ଦ୍ଦିଷ୍ଟ ଏହିପରି ଥିଲା ସକାଳ ସାତଟା ପନ୍ଦର ମିନିଟରେ ସକାଳ ଜଳଖିଆ, ତତ୍‌ପୂର୍ବରୁ ନିତ୍ୟ କର୍ମ ଶେଷ କରିବାକୁ ହେବ । ଏହି ନିତ୍ୟକର୍ମ ମଧରେ ଆସନ ଓ ପ୍ରାଣାୟମ ମୋ ପକ୍ଷରେ ମୁଁ ବାଧ୍ୟତାମୂଳକ କରିଥିଲି । ଏଗାରଟା ବେଳେ ମଧାହ୍ନ ଭୋଜନ । ଏହା ମଧରେ ଲେଖା ପଢ଼ାରେ ନିଯୁକ୍ତ ହେଉଥିଲୁ । ପୁଣି ସାଢ଼େ ଚାରିଟାବେଳେ ସାନ୍ଧ୍ୟ ଜଳଯୋଗ । ଇତିମଧରେ ରାତିମତ ଘଣ୍ଟାଏ କରି ତାସଖେଳ ମଧ ଥିଲା । ସାଢ଼େ ଚାରିଟାଠାରୁ ସାଢ଼େ ପାଞ୍ଚଟା ପର୍ଯ୍ୟନ୍ତ କଠିନ ବଗିଚା କାମ । ସାଢ଼େ ପାଞ୍ଚଟା ଠାରୁ ସାଢ଼େ ଛଅଟା ପର୍ଯ୍ୟନ୍ତ ରାତିମତ ବ୍ୟାଡ଼ମିଣ୍ଟନ ଖେଳ । ପୁଣି ସାଢ଼େ ଆଠଟା ବେଳେ ରାତ୍ରଭୋଜନ । ତାପରେ ସାଢ଼େ ଦଶଟା ପର୍ଯ୍ୟନ୍ତ କ୍ଲବରେ ଯୋଗଦାନ । ଏହିପରି ନିୟମ ଅନୁସାରେ ଚଳିବା ଫଳରେ ଏତେ ବିଷୟ ଅଧ୍ୟୟନ କରିବା ଓ ଏତେ ବିଷୟ ଲେଖିବା ସମ୍ଭବ ହୋଇଥିଲା ଯେ ଆଜି ସୁଦ୍ଧା ସେହିପରି ନିୟମାନୁସାରେ ଚଳି ବହୁ କାର୍ଯ୍ୟପାଇଁ ସହଜରେ ସମୟ ପାଇବାର ଅଭ୍ୟାସ ହୋଇଯାଇଛି । ସେଠାରେ ଆମେ ଯେଉଁମାନେ ଥିଲୁ, ସେମାନଙ୍କ ମଧରୁ ମୁଁ ଥିଲି ସବୁଠାରୁ ବୟସରେ ସାନ । ତେଣୁ ସମସ୍ତେ ସ୍ୱଭାବତଃ କିଛି ନା କିଛି କାମ ମୋତେ ବରାଦ କରୁଥିଲେ । ଈଶ୍ୱରଙ୍କ ଇଚ୍ଛାରୁ ମୁଁ ସମସ୍ତଙ୍କର ସ୍ନେହଭାଜନ ହୋଇପାରିଥିଲି ।

ଥରେ ବ୍ୟାଡ଼ମିଣ୍ଟନ ଖେଳରେ ମୁଁ ଜବାହରଲାଲଙ୍କ ପକ୍ଷରେ ଖେଳୁଥିଲି । ଅନ୍ୟ ପକ୍ଷରେ କୃପାଳିନୀ ଓ ଶଙ୍କର ଦେଓ ଥିଲେ । ସ୍ଵାମୀ ମଧ୍ୟସ୍ଥ ଡ଼ାକ୍ତର ପଟ୍ଟାଭି ଥିଲେ । ଆମ୍ଭେମାନେ ହାରିଗଲୁ । ଖେଳଟା ଏପରି ଜିଦ୍‌ରେ ହେଉଥିଲା ଯେ ଏ ହାରିଯିବାଟା ଜବାହରଲାଲଙ୍କ ମନକୁ ଲାଗିଲା ଓ ସେ ହଠାତ୍ ରାଗି ଯାଇ ହାରିବାର ଦାୟିତ୍ୱ ଯାକ ମୋ ଉପରେ ଲଦି ଦେଲେ । ସ୍ୱଭାବତଃ ମୁଁ ସେଥିରେ ବାଧା ଦେଲି । ଏହିପରି କଥାଟା ବଢ଼ିଗଲା । ଫଳରେ ମୁଁ ଆଉ ବ୍ୟାଡ଼ମିଣ୍ଟନ ଖେଳିଲି ନାହିଁ । କିଛି ଦିନ ପରେ ଜହରଲାଲ ପୁଣି ନିଜେ ଆସି ମୋତେ ଟାଣି ନେଇ ଖେଳରେ ଛିଡ଼ା କରାଇଲେ ।

ଏହି ତିନି ବର୍ଷ ମଧରେ ମୁଁ ଦୁଇ ବର୍ଷ ନିୟମିତ ଭାବରେ ସଂସ୍କୃତ ପଢ଼ିଛି । ଆଚାର୍ଯ୍ୟ ନରେନ୍ଦ୍ରଦେବ ସେଠି ଥିବାରୁ ସଂସ୍କୃତ ଅଧ୍ୟୟନରେ ସୁବିଧା ହୋଇଥିଲା । ସେ ଜଣେ ଭାରତବିଖ୍ୟାତ ପଣ୍ଡିତ । ବହୁ ବିଷୟରେ ପରିଚିତ ଲେଖକମାନଙ୍କର ବହିମାନ ପଢ଼ିବାକୁ ସୁବିଧା ମିଳିଥିଲା । ପ୍ରତ୍ୟେକ ନିଜେ ନିଜେ କିଛି କିଣି ଅନ୍ୟ ପାଠାଗାରମାନଙ୍କର ପୁସ୍ତକ ମଗାଇବା ଫଳରେ ସେଠି ଏକ ବଡ଼ ପୁସ୍ତକାଗାର ଧୀରେ ଧୀରେ ଗଠିତ ହୋଇଗଲା । ପଣ୍ଡିତ ଜହରଲାଲ ଗ୍ରନ୍ଥାଗାର ହିସାବରେ ବହୁ ପୁସ୍ତକ ପୃଥିବୀର ନାନା ଦେଶରୁ ଉପହାର ସ୍ୱରୂପ ପାଉଥିଲେ । ତିନୋଟି କାବ୍ୟ, ତିନୋଟି ଉପନ୍ୟାସ ଓ ବହୁ ଛୋଟ ଛୋଟ କବିତା ଲେଖିବା ଛଡ଼ା, ଓଡ଼ିଶା ଇତିହାସ ଲେଖିବାର ସୁଯୋଗ ମୁଁ ଏହିଠାରେ ପାଇଥିଲି । ଓଡ଼ିଶା ଇତିହାସ ଲେଖିବା ପାଇଁ ମୁଁ ପ୍ରାୟ ଅଢ଼େଇବର୍ଷ ଲାଗିଥିଲି । ରାତିରେ ସେଥିପାଇଁ ନିୟମିତ ଚାରିଘଣ୍ଟା କାମ କରିବାକୁ ପଡୁଥିଲା । ଲେଖାପଢ଼ା ଛଡ଼ା ଗୋଟିଏ ଦପ୍ତରିଖାନା ମୁଁ ଖୋଲିଥିଲି । ବହୁ ସଂଖ୍ୟାରେ ବହିସବୁ କାରବାର ହେବା ଫଳରେ ବହି ସିଲାଇ ଓ ମରାମତିର ଆବଶ୍ୟକ ପଡ଼ିଲା । ପିଲାଦିନେ ଯାହା କିଛି ମୁଁ ଏଥିରୁ ଶିଖିଥିଲି, ତାହା ଏଇଠି ବଡ଼ କାମରେ ଆସିଲା । ତା' ଛଡ଼ା ଦପ୍ତରିଖାନାରେ କ୍ୟାଲେଣ୍ଡର ପ୍ରଭୃତି ତିଆରି କରିବା କାମ ମୁଁ ଆରମ୍ଭ କରିଥିଲି । ଏଥିପାଇଁ ପ୍ରତି ରବିବାର ଦିନ ଘଣ୍ଟାଏ କରି ସମୟ ଦେଉଥିଲି ।

୧୯୨୨ ମସିହାରେ ପ୍ରଥମେ ଯେତେବେଳେ ମୋତେ ଜେଲଦଣ୍ଡ ହୋଇଥିଲା, ସେ ସମୟରେ ଭାଗଲପୁର ଜେଲରେ ଭଲ ଭାବରେ କିରାଣୀ କାମ ଶିଖିଥିଲି । ସେ କାରାକ୍ଳେଶ ବର୍ତ୍ତମାନ କଳ୍ପନାତୀତ । ୧୯୪୨ ମସିହା କାରାଦଣ୍ଡରେ ନିଜର ସାଧନା ପାଇଁ ଯେତିକି ସୁବିଧା ମିଳିଥିଲା, ତା'ର ପୂର୍ଣ୍ଣ ଉପଯୋଗ ମୁଁ କରିଛି ବୋଲି ମୋର ମନେହୁଏ । ଦୀର୍ଘ ସମୟସାପେକ୍ଷ ବହୁ କାର୍ଯ୍ୟ ଜେଲ ଭିତରେ କରିବାକୁ ହାତକୁ ନେଇ ସାରିଥିଲି । ଓଡ଼ିଶା ଇତିହାସ ପରେ ଇଂରେଜୀ ଓଡ଼ିଆ ଅଭିଧାନଟିଏ ଲେଖିବା ଆରମ୍ଭ କରିଥିଲି । ଆହୁରି ମଧ ଭାରତ ଇତିହାସ ଲେଖିବା ପାଇଁ ଅଧ୍ୟୟନ ଆରମ୍ଭ କରିଥିଲି । ଏହି ଦୁଇଟି କାର୍ଯ୍ୟରେ ଆହୁରି ତିନି ଚାରି ବର୍ଷ କଟିଯିବ ବୋଲି ଭାବିଥିଲି । ମନରେ ବିଷାଦ ଜାତ ହେଲା, ଏତେ ଗୁଡ଼ାଏ କାମ ରହିଗଲା, ଆଉ ହୋଇପାରିବ କି ନା ସନ୍ଦେହ ।"

ଟାଇପ୍ ୫ଏ-୧୨/୨, ୟୁନିଟ୍-୨, ଭୁବନେଶ୍ୱର

# ଭିନ୍ନ ଭିନ୍ନ ଦୃଷ୍ଟିରେ ମହତାବ

ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର

ଓଡ଼ିଶାର ବରପୁତ୍ର ସ୍ୱର୍ଗୀୟ ହରେକୃଷ୍ଣ ମହତାବଙ୍କ ବହୁମୁଖୀ ପ୍ରତିଭା ସମ୍ପର୍କରେ ବହୁ ଦିଗରୁ ଆଲୋଚନା କରାଯାଇଛି ଓ ଅନେକ ଆଲୋଚନା ଚାଲିଛି । ତଥାପି ଜଣାଯାଉଛି ଯେପରି ଆହୁରି ଅନେକ ଅଛୁଆ ରହିଯାଇଛି ।

ତାଙ୍କ ସଂସ୍ପର୍ଶରେ ଆସିଥିବା ସାହିତ୍ୟିକ, ରାଜନୀତିଜ୍ଞ ଓ ସାମ୍ବାଦିକମାନେ ତାଙ୍କର ବ୍ୟକ୍ତିତ୍ୱ ଓ କୃତିତ୍ୱ ଉପରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋକପାତ କରିଯାଇଛନ୍ତି । ତାଙ୍କର ବହୁମୁଖୀ ଜୀବନଧାରାରୁ ଓଡ଼ିଶାର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଇତିହାସର ନୂତନ ଦିଗନ୍ତ ଆବିଷ୍କୃତ ହୋଇ ପାରିଛି ।

ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ନିଜସ୍ୱ ହାସ୍ୟରସ ଶୈଳୀରେ ଯେଉଁ ପଦ୍ୟ ନାଟିକା ପ୍ରାକ୍‌ସ୍ୱାଧୀନତା କାଳରେ ରଚନା କରିଥିଲେ, ତହିଁରୁ ମହତାବଙ୍କ ସମ୍ପର୍କରେ ଅନେକ ତଥ୍ୟ ଉଦ୍‌ଘାଟିତ ହେଉଛି । ଆଜିର ରେଡ଼ିଓ, ଟି.ଭି. ବା ସିନେମା ପରି ପ୍ରାକ୍ ସ୍ୱାଧୀନତା କାଳରେ ସବୁଠାରୁ ଶକ୍ତିଶାଳୀ ଗଣମାଧ୍ୟମ ଥିଲା ସେତେବେଳର ସାହିତ୍ୟ । ସେ ଦୃଷ୍ଟିରୁ ମହତାବଙ୍କ ରାଜନୀତିକ ଜୀବନର ମୂଲ୍ୟାୟନ ତତ୍କାଳୀନ ସାହିତ୍ୟରୁ ହିଁ କରି ହେବ । କାନ୍ତକବି ତାଙ୍କର ବହୁଚର୍ଚ୍ଚିତ ହାସ୍ୟରସାତ୍ମକ ରାଜନୀତିକ ନାଟିକା ପଞ୍ଚାମୃତରେ ମହତାବଙ୍କ ଉଦ୍ଦେଶ୍ୟରେ 'ବପୁ'ର ସଂଳାପ ମାଧ୍ୟମରେ ଲେଖିଥିଲେ-

ବପୁ-ଆଉ ଆସିଛନ୍ତି, ନାଥ, ଖଳବୁଦ୍ଧି

ଭରଦ୍ୱାଜ ପୁରେ ଯେହୁ ମଣ୍ଡଳ ଈଶ୍ୱର

ଯାହାଙ୍କର ତୀକ୍ଷଣ ବୁଦ୍ଧି ବଳେ

ହାରିଲେ ଅରାତି,

ପାଇ ମହାତାପ

ଯାହାଙ୍କ କୌଶଳେ ପୁଣି

ସୃଷ୍ଟି ଏଇ ମହାସଂହତିର (ପୃଷ୍ଠା-୩୨-କାନ୍ତ ସାହିତ୍ୟ ମାଳା ପ୍ରଥମ ଖଣ୍ଡ)

କାନ୍ତକବିଙ୍କର ପିତା ସ୍ୱର୍ଗୀୟ ଭାଗବତ ପ୍ରସାଦ ମହାପାତ୍ର ହରେକୃଷ୍ଣ ମହତାବଙ୍କୁ ତତ୍କାଳୀନ ବିହାର-ଓଡ଼ିଶା ବିଧାନ ସଭାର ନିର୍ବାଚନ ମୋକଦ୍ଦମାରେ ହରାଇ ଜୟଯୁକ୍ତ ହୋଇଥିଲେ । ସେ ବିଷୟରେ କାନ୍ତକବି ଏଠାରେ ପରୋକ୍ଷରେ ସୂଚନା ଦେବା ସଙ୍ଗେ ସଙ୍ଗେ କାନ୍ତକବି ତାଙ୍କର ଅନୁଜ ସୀତାକାନ୍ତ ମହାପାତ୍ରଙ୍କୁ ଏହି ନାଟିକାରେ ଖଳବୁଦ୍ଧି ରୂପେ ଚିତ୍ରଣ କରିଥିଲେ ।

ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା କାନ୍ତକବି ଛଦ୍ମନାମରେ ଲେଖିଥିବା ଏହି ହାସ୍ୟରସାତ୍ମକ ରାଜନୈତିକ ନାଟିକାରେ ମହତାବଙ୍କୁ ସମାଲୋଚନା କରିଥିଲେ ମଧ୍ୟ ମହତାବଙ୍କ ଅନୁରୋଧକ୍ରମେ ତାହାକୁ ସେ ସମୟରେ ବାଲେଶ୍ୱରରୁ ପ୍ରକାଶ ପାଉଥିବା 'ପ୍ରଜାତନ୍ତ୍ର'ରେ ୧୯୨୭ ବା ୧୯୨୮ ମଧ୍ୟରେ ପ୍ରକାଶ କରିଥିଲେ । ନିଜ ସମ୍ବାଦପତ୍ର ବା ନିଜ ପତ୍ରିକାରେ ନିଜ ବିରୋଧରେ ହୋଇଥିବା ସମାଲୋଚନା ବା ବିଦ୍ରୂପକୁ ପ୍ରକାଶ କରାଇବା ମହତାବଙ୍କର ଅନ୍ୟତମ ବିଶିଷ୍ଟ ଗୁଣ । ଏବର ପତ୍ରପତ୍ରିକା ବା ସମ୍ବାଦପତ୍ରରେ ଏପରି ଦୃଷ୍ଟାନ୍ତ ନାହିଁ କହିଲେ ଚଳେ । ଏହି 'ପଞ୍ଚାମୃତ' ନାଟିକା ସମ୍ପର୍କରେ କାନ୍ତକବିଙ୍କର କନିଷ୍ଠ ପୁତ୍ର, ସାହିତ୍ୟିକ ଶ୍ରୀ ଗୌରଚନ୍ଦ୍ର ମହାପାତ୍ର 'କାନ୍ତକବି ଓ ମହତାବ' ଶୀର୍ଷକ ଏକ ଆଲୋଚନାରେ ଲେଖିଛନ୍ତି-'ପୁଣି ଯେତେବେଳେ ବାଲେଶ୍ୱରରୁ ପ୍ରଜାତନ୍ତ୍ର ପ୍ରକାଶିତ ହେଉଥିଲା, ସେଥିରେ ଲକ୍ଷ୍ମୀକାନ୍ତଙ୍କର 'ପଞ୍ଚାମୃତ' ନାଟିକା ସ୍ଥାନ ପାଇଥିଲା । ବ୍ୟଙ୍ଗ, ବିଦ୍ରୂପ ଓ ବକ୍ରୋକ୍ତିପୂର୍ଣ୍ଣ ଏହି ନାଟିକାଟି ସେତେବେଳେ ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲା । ଏହି 'ପଞ୍ଚାମୃତ'ର ଲେଖକ କିଏ, ଏହି କଥାର ଆଲୋଚନା ସେତେବେଳେ ସମସ୍ତଙ୍କ ମନରେ ବିସ୍ମୟ ଆଣି ଦେଉଥିଲା । ଲକ୍ଷ୍ମୀକାନ୍ତଙ୍କୁ ସେହି ନାଟିକାର ରଚୟିତା ବୋଲି କେହି କେହି ସ୍ୱପ୍ନରେ ସନ୍ଦେହ କରୁ ନଥିଲେ । ପ୍ରଥମତଃ ଲକ୍ଷ୍ମୀକାନ୍ତ ଥିଲେ ଭିନ୍ନ ଗୋଷ୍ଠୀର ଲୋକ । ଦ୍ୱିତୀୟରେ 'ପଞ୍ଚାମୃତ'ରେ ଲକ୍ଷ୍ମୀକାନ୍ତଙ୍କର ଦୁଇଭାଇ ସୀତାକାନ୍ତ ଓ କମଳାକାନ୍ତ ମଧ୍ୟ ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ହୋଇଥିଲେ । ସେତେବେଳେ ସମ୍ଭବତଃ ମହତାବ ଓ ଲକ୍ଷ୍ମୀକାନ୍ତ ବ୍ୟତୀତ 'ପଞ୍ଚାମୃତ'ର ଲେଖକ କିଏ ବୋଲି ଅନ୍ୟ କେହି ଜାଣି ନଥିଲେ । ଏହି ନାଟିକାରେ ବ୍ରିଟିଶ ସମର୍ଥକମାନଙ୍କୁ କଠୋର ସମାଲୋଚନା କରାଯାଇଥିଲା.... ।"

ବ୍ରିଟିଶ ଶାସନ କାଳରେ କାନ୍ତକବିଙ୍କର 'ନବ ରାମାୟଣ' ଶୀର୍ଷକ ଅନ୍ୟ ଏକ ରାଜନୀତିକ ଓ ହାସ୍ୟ ରସାତ୍ମକ ନାଟିକା ମଧ୍ୟ ଖୁବ୍ ଲୋକପ୍ରିୟ ହୋଇଥିଲା । ସେହି ନାଟିକାରେ କାନ୍ତକବି 'ଶ୍ରୀରାମ' ଚରିତ୍ର ମାଧ୍ୟମରେ ମହତାବଙ୍କୁ ଚିତ୍ରଣ କରିଥିଲେ । ଏହା ବ୍ୟତୀତ ଏହି ନାଟିକାରେ 'ସୁଗ୍ରୀବ' ଚରିତ୍ରରେ ତତ୍କାଳୀନ କଂଗ୍ରେସ ନେତା ଭାଗୀରଥି ମହାପାତ୍ର ଓ 'ତାରା' ଚରିତ୍ରରେ ତାଙ୍କ ପତ୍ନୀ ସାହିତ୍ୟିକା ସରଳା ଦେବୀ ଓ 'ହନୁମାନ' ଚରିତ୍ରରେ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ କାନ୍ତକବି ଚିତ୍ରଣ କରିଥିଲେ । ଏହି 'ନବ ରାମାୟଣ'ର ଚୌପଟ କାଣ୍ଡରେ ଥିବା ରାମଙ୍କର ସଂଳାପ ଏଠାରେ ଉଦ୍ଧାର କରାଗଲା ।

ରାମ - ଧର୍ମ ଯୁଦ୍ଧେ ଆସି ପଡ଼େ-ସଧୁଛ ଅଧର୍ମ

ବୁଝିନାହିଁ ସତ୍ୟାଗ୍ରହ ମର୍ମ,

ମିଛାସ ଗର୍ବରେ ଚାଲି କରୁଛ ଅକର୍ମ,

ଏଭଳି ପଡ଼ବା ଦର୍ପ ନୁହଁଇ ଉଚିତ ।

ଅତି ଅସଂଗତ, ରାଜନୀତି ବିଗର୍ହିତ-
କହୁଛି -ନିୟମଭଙ୍ଗ କରିଲେ ଏଥର
ଡିସିପ୍ଲିନାରୀ ଆକସନ୍ ନିଆଯିବ ବରାବର-
ଜାଣିଛତ ଇନ୍‌ହେରେଣ୍ଟ ପାୱାର ମୋହର,
ରଣକ୍ଷେତ୍ରେ ଚଳୁଅଛି ମାର୍ସିଆଲ୍-ଆଇନ୍,
ହୁସିଆର, ହୁସିଆର, ଭାଇ ଖବରଦାର,
ହୁକୁମ ଅମାନ୍ୟ ଯିଏ ହୋଇଲେ ଏବାର
ଜବର ଚାବୁକ ଦେଇ କରିବି ବାହାର ।
(ପୃଷ୍ଠା ୬୮, କାନ୍ତ ସାହିତ୍ୟ ମାଳା, ପ୍ରଥମ ଖଣ୍ଡ)

୧୯୪୬ରେ ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହୋଇଥିଲେ । ଭାରତର ତତ୍‌କାଳୀନ ରାଜନୀତିକ ପରିସ୍ଥିତିକୁ ଲକ୍ଷ୍ୟ କରି କାନ୍ତକବି '୧୯୪୬ ଚଉତିଶା' ଶୀର୍ଷକରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଯେଉଁ ହାସ୍ୟରସାତ୍ମକ ଚଉତିଶାଟି ରଚନା କରିଥିଲେ, ସେଥିରେ ମଧ୍ୟ ମହତାବଙ୍କୁ ଚିତ୍ରଣ କରିଥିଲେ । ସେହି 'ଚଉତିଶା'ରୁ କିୟଦଂଶ ଏଠାରେ ଉଦ୍ଧାର କରାଗଲା ।

କ- କଂଗ୍ରେସ କବଳ କଲା ଶାସନ କଳ,
କ୍ୟା ହୁଆ-କ୍ୟା ହୁଆ ବୋଲି ପଡ଼ିଲା ଚହଳ ।
ଖ- ଖବିଲେଟି କମ୍ୟୁନିଷ୍ଟ ଡାକ ଦେଇ ଦେଇ,
ଖୋପରେ ପଡ଼ିବା ପାଇଁ ନ ଆସିଲେ କେହି ।
ମ- ମହତାବ ନିଜ ରାଜମୁକୁଟକୁ ଛାଡ଼ି,
ମୁଣ୍ଡରେ ମୋଡ଼ିଲେ ଭିଡ଼ି ମହା-ମନ୍ତ୍ରୀ ଶାଢ଼ୀ ।
(କାନ୍ତ ସାହିତ୍ୟ ମାଳା, ପ୍ରଥମ ଖଣ୍ଡ, ପୃଷ୍ଠା ୨୧୦)

ଏହା ପୂର୍ବରୁ '୧୯୩୯ ଚଉଟ ଚଉତିଶା'ରେ କାନ୍ତକବି ତତ୍‌କାଳୀନ ରାଜନୀତିକ ପରିସ୍ଥିତିର ବର୍ଣ୍ଣନା କରି ମହତାବଙ୍କ ସମ୍ପର୍କରେ ଲେଖିଥିଲେ -

ହ - 'ହା-ରାମ' ହୁଙ୍କାରେ ହିନ୍ଦୁ, 'ହା-ରାମ' ପଠାଣ
'ହକ୍' ଦେଖାଇଲେ ନିଜ ହିକମତ୍ ଟାଣ ।
ହରେକୃଷ୍ଣ ନୀଳକଣ୍ଠ ହେଲେ ହଣାହଣି,
ହଇରାଣ ହେଲେ ଥୋକେ ହୋଇ ଟଣାଟଣି ।

ଓଡ଼ିଶାର କଂଗ୍ରେସ ଇତିହାସ ପ୍ରତି ଅନୁଧ୍ୟାନ କଲେ ହରେକୃଷ୍ଣ ମହତାବ ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ବିବାଦ ସ୍ପଷ୍ଟ ଜଣା ପଡ଼ିଥାଏ ।

ସାମ୍ପ୍ରତିକ କାଳର ଜଣେ ବୟୋଜ୍ୟେଷ୍ଠ ସାହିତ୍ୟିକ, ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ତାଙ୍କ ରଚିତ 'ଜାତୀୟ ସାହିତ୍ୟ ଯୁଗରେ ଡକ୍ଟର ମହତାବ' ଶୀର୍ଷକ ଲେଖାରେ ମହତାବଙ୍କର ସାହିତ୍ୟିକ ପ୍ରତିଭା ଓ ଲେଖକୀୟ ବୈଶିଷ୍ଟ୍ୟ ସମ୍ପର୍କରେ ସୂଚନା ଦେଇଛନ୍ତି ।

'ମହତାବ ଜୟନ୍ତୀ ସ୍ମାରକୀ ୧୯୯୧' ସଂକଳନରେ ଶ୍ରୀ ମହାପାତ୍ର ଲେଖିଥିଲେ - 'ସ୍ୱର୍ଗତ ହରେକୃଷ୍ଣ ମହତାବଙ୍କର 'ପ୍ରତିଭା' ପ୍ରଭୃତି ପୁସ୍ତକରେ ମଧ୍ୟ ସଂଗ୍ରାମଶୀଳ ସାହିତ୍ୟ ସୂଚନା ପରିଲକ୍ଷିତ ହୁଏ । ସେହି ସମୟରେ ଯେଉଁସବୁ ସାହିତ୍ୟ ଲୋକଜୀବନକୁ ସ୍ପର୍ଶ କରି ପାରିଥିଲା, ସେ ସମ୍ବନ୍ଧରେ ବିଶେଷ ଆଲୋଚନା ହେବାର ମୁଁ ଏ ପର୍ଯ୍ୟନ୍ତ ଲକ୍ଷ୍ୟ କରି ନାହିଁ । ସ୍ୱର୍ଗତ କାହ୍ନୁଚରଣ ମହାନ୍ତି, ସ୍ୱର୍ଗତ ବୀରକିଶୋର ଦାସ, ସ୍ୱର୍ଗତ ରାମପ୍ରସାଦ ସିଂ, ସ୍ୱର୍ଗତ ଗୋଦାବରୀଶ ମିଶ୍ର, ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ଓ ମୋର ପରମପୂଜ୍ୟ ପିତା ସ୍ୱର୍ଗତ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚନା ସେ ସମୟର ଜନଜୀବନକୁ ଯେପରି ଜାଗରିତ କରିଥିଲା, ଆଧୁନିକ ସମାଲୋଚକମାନଙ୍କର ଧାରଣାରୁ ସେ ବହିର୍ଭୂତ ହୋଇ ରହିଯାଇଛି । ଏହି ସାହିତ୍ୟ ଯୁଗକୁ 'ଜାତୀୟ ସାହିତ୍ୟ ଯୁଗ' ବୋଲି କହିବା ପରିବର୍ତ୍ତେ ବଙ୍ଗ ସାହିତ୍ୟର ଅନୁକରଣରେ ଲିଖିତ ରଚନାବଳୀର ପ୍ରାୟ ଦଶବର୍ଷ କାଳକୁ ଗୋଟିଏ ଯୁଗ ଆଖ୍ୟା ଦେଇ ବର୍ଣ୍ଣନା କରିବାର ସ୍ପୃହା ମୋ ବିଚାରରେ ଅତି ଘୃଣ୍ୟ ।''

ବିଶିଷ୍ଟ ସମାଜବାଦୀ ନେତା ଓ ଭୂତପୂର୍ବ ରାଜ୍ୟପାଳ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ରାଉରକେଲାର ଉତ୍କଳ କେଶରୀ ସ୍ମୃତି ସଂସଦ ଆନୁକୂଲ୍ୟରେ ପ୍ରକାଶିତ 'ଉତ୍କଳ କେଶରୀ' ସ୍ମରଣିକାରେ 'ମହତାବ ବାବୁ' ଶୀର୍ଷକ ଗୋଟିଏ ଲେଖାରେ ମହତାବଙ୍କର ରାଜନୀତିକ ବିଚକ୍ଷଣତା ସମ୍ପର୍କରେ ଲେଖିଥିଲେ - ''ରମାଦେବୀ ଓ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ଘୋଡ଼ା 'ବୋଲି ଡାକୁଥିଲେ । ଘୋଡ଼ା ଥରେ ଦୌଡ଼ିଲେ କେହି ରୋକି ପାରିବ ନାହିଁ । ମହତାବ ବାବୁ ପ୍ରକୃତରେ ଘୋଡ଼ା ପରି ମୂଳରୁ ଶେଷ ପର୍ଯ୍ୟନ୍ତ ରାଜନୈତିକ ଜୀବନରେ ଦୌଡ଼ିଛନ୍ତି । କେହି ତାଙ୍କୁ ପଥରୋଧ କରି ପାରିନାହିଁ । ସବୁ ରାଜନୈତିକ ଖେଳରେ ସେ ଯଶଲାଭ କରିଛନ୍ତି । ଆମେ ତାଙ୍କର ସାଙ୍ଗସାଥୀମାନେ ବରାବର କହୁଥିଲୁ, ମହତାବ ବାବୁ ଯାହା କହନ୍ତି ବା କରନ୍ତି, ତାହା ବିଭିନ୍ନ ଦିଗକୁ ପ୍ରୟୋଗ ହୁଏ । ଅର୍ଥାତ୍ ତାଙ୍କର ଲକ୍ଷ୍ୟ ଯଦି ଥାଏ କେଉଁ ବନ୍ଧୁ ଉପରେ ଆକ୍ରମଣ କରିବା ପାଇଁ, ତେବେ ସେ ଏପରି ଶବ୍ଦ ବା ବାଣ ପ୍ରୟୋଗ କରନ୍ତି, ଯଦ୍ୱାରା ତାଙ୍କ ଉପରେ ପ୍ରତ୍ୟକ୍ଷ ଆକ୍ରମଣ ନ ହେଇ ପରୋକ୍ଷ ଭାବରେ ତାଙ୍କୁ ଆଘାତ କରେ । ଏହି କୌଶଳ ଅନ୍ୟ ରାଜନୀତିଜ୍ଞଙ୍କ ପାଖରେ ବିରଳ ଥିଲା ।''

ବିଶିଷ୍ଟ ପରିବେଶବିତ୍ ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ବାଙ୍କ ବିହାରୀ ଦାସଙ୍କ ଭାଷାରେ, 'ତାଙ୍କର ବଡ଼ ଗୁଣ ଥିଲା କାମର ଭିଡ଼ ମଧ୍ୟରେ ସେ ଅଧ୍ୟୟନ କରିବାକୁ ଭୁଲୁ ନଥିଲେ । ତାଙ୍କର ଆବଶ୍ୟକୀୟ ସମସ୍ୟା ସଂପର୍କରେ ଅଧ୍ୟୟନ କରିବା ଏବଂ ଅନେକ ସମୟରେ ତାଙ୍କ ମତ ଦ୍ୱାରା ଲୋକମତକୁ ପ୍ରଭାବିତ କରିବାକୁ ଲେଖିବା - ଏହି ଦୁଇଟି ଅଭ୍ୟାସ ସେ ରଖିଥିଲେ । ଶାସନ ସହିତ ସଂପର୍କ ନଥିବା ବିଷୟରେ ମଧ୍ୟ ସେ ସାଧାରଣ ଜ୍ଞାନର ଅଧିକାରୀ ହେଉଥିଲେ । ଅନେକ ସମୟରେ ରାଜନୈତିକ ବ୍ୟକ୍ତିଙ୍କ ବିରୋଧରେ ଅଭିଯୋଗ କରାଯାଏ ଯେ, ସେମାନେ ସାହିତ୍ୟ, କ୍ରୀଡ଼ା, କଳା ପ୍ରଭୃତି ବିଷୟରେ ଅଜ୍ଞ । କିନ୍ତୁ ଦେଖାଯାଇଛି ଯେ ୧୯୪୬ ମସିହାରେ ଓଡ଼ିଶାର ଶାସନ ଭାର ଗ୍ରହଣ କଲାପରେ ସେ ସବୁ କ୍ଷେତ୍ରରେ ତାଙ୍କର ପଟୁତା ଦର୍ଶାଇଛନ୍ତି ଓ ନେତୃତ୍ୱ ନେଇଛନ୍ତି ।'

କେନ୍ଦ୍ରୀୟ ସାହିତ୍ୟ ଏକାଡେମୀର ସଭାପତି ତଥା ବିଶିଷ୍ଟ କବି ଶ୍ରୀ ରମାକାନ୍ତ ରଥ, ସାହିତ୍ୟ କ୍ଷେତ୍ରରେ ମହତାବଙ୍କ ଅବଦାନ ବିଷୟରେ 'ସ୍ମିତପ୍ରଜ୍ଞ ବ୍ୟକ୍ତିତ୍ୱ' ଶୀର୍ଷକ ଲେଖାରେ ପ୍ରକାଶ କରିଛନ୍ତି । ସେ ଲେଖୁଛନ୍ତି - 'ବିଷୁବ ମିଳନ ପରି ଏକ ଅଭୂତପୂର୍ବ ସାହିତ୍ୟିକ ସମାବେଶର ଆୟୋଜନ କରି ସେ ସାହିତ୍ୟିକମାନଙ୍କୁ ପରସ୍ପର ସହିତ ପରିଚିତ ହେବାର ଓ ପରସ୍ପର ଦ୍ୱାରା ଉଦ୍‌ବୁଦ୍ଧ ହେବାର ସୁଯୋଗ ଦେଇଥିଲେ । 'ରବିବାର ପ୍ରଜାତନ୍ତ୍ର' ଓ 'ଝଙ୍କାର' ବ୍ୟତିରେକେ ଅନେକ ସାହିତ୍ୟିକ ସାହିତ୍ୟ ସାଧନାରୁ ନିବୃତ୍ତ ହୋଇଥାନ୍ତେ । ଓଡ଼ିଆ ସାହିତ୍ୟର ବିକାଶ ପାଇଁ ତାଙ୍କର ଉଦ୍ୟମ ପରି ଦୂରଦର୍ଶୀ ଓ ସାର୍ଥକ ଉଦ୍ୟମ ଆଉ କେହି କରିଥିବା ମୁଁ ଜାଣିନାହିଁ ।'

ନିଜର ଦୋଷଟିକୁ କେହି ସମାଲୋଚନା କଲେ ମହତାବ ଉଦାର ହୃଦୟରେ ତାହାକୁ ଗ୍ରହଣ କରୁଥିଲେ, ଯାହା କି ଆଜିର ରାଜନୀତିଜ୍ଞ ଓ ସାହିତ୍ୟିକଙ୍କଠାରେ କିମ୍ବା ଅଫିସର ଓ କର୍ମଚାରୀଙ୍କଠାରେ ପରିଲକ୍ଷିତ ହୁଏ ନାହିଁ । 'ଅଦ୍ୱିତୀୟ ସାମ୍ବାଦିକ ମହତାବ' ଶୀର୍ଷକ ଲେଖାରେ ବିଶିଷ୍ଟ ହାସ୍ୟରସ ଲେଖକ ସ୍ୱର୍ଗୀୟ ଫତୁରାନନ୍ଦ ବର୍ଣ୍ଣାଇଛନ୍ତି "ପୁଣି ମୁଁ ତାଙ୍କୁ ସାହସ କରି କହିଲି - ଆଜ୍ଞା ଆପଣଙ୍କ ମତ ସହିତ ମୋ' ମତ କେବେହେଲେ ଖାପ ଖାଇବ ନାହିଁ । ତେଣୁ ମୋତେ ପ୍ରଜାତନ୍ତ୍ରରେ ଲେଖିବା ସମ୍ଭବ ହେବ ନାହିଁ । ଆପଣଙ୍କ କାଗଜରେ ଆପଣଙ୍କୁ ମୁଁ କେବେହେଲେ ସମାଲୋଚନା କରିପାରିବି ନାହିଁ । ସେ ସାଙ୍ଗେ ସାଙ୍ଗେ କହିଲେ - ତମକୁ ମୁଁ ପୁରା କ୍ଷମତା ଦେଲି । ମୋ ବିରୋଧରେ ଯାହା ମନ୍ତବ୍ୟ ଥାଏ, ତାହା ପ୍ରକାଶ କରି ପାରିବ । ତାଙ୍କର ସେଇ ଦୁଇତିନି ଦିନ ଭିତରେ ଆମେରିକା ଯିବାର ଥାଏ । ସେ ଶଶୀ ମିଶ୍ରଙ୍କୁ ଡାକି କହିଲେ -ହଇ ହୋ ଶଶୀ, ଦେଖ, ମୁଁ ତୁମକୁ ଖୋଲା ମନରେ ଆଦେଶ ଦେଉଛି । ଫତୁରାନନ୍ଦ ଯାହା କିଛି ମୋ ବିରୁଦ୍ଧରେ ଲେଖିବେ, ତାହା ସବୁ ଅବିକଳ ପ୍ରଜାତନ୍ତ୍ରରେ ଛାପିଦେବ । ସେଥିରେ ହାତ ଦେବନି ...... ।"

ଉଭୟ ସାହିତ୍ୟ ଓ ସାମ୍ବାଦିକତା ଉଭୟ କ୍ଷେତ୍ରରେ ମହତାବ ପାରଦର୍ଶିତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଏ ଦୁଇଟିର ସମନ୍ୱୟରେ ଏକ ନୂତନ ଧାରାର ପ୍ରବର୍ତ୍ତନ କରିଯାଇଛନ୍ତି । ଏଠାରେ ଉଲ୍ଲେଖନୀୟ ଯେ ପ୍ରାୟ ଏକ ଦଶନ୍ଧିରୁ ଊର୍ଦ୍ଧ୍ୱ ହେବ ଯୁକ୍ତରାଷ୍ଟ୍ର ଆମେରିକାର ସାହିତ୍ୟ କ୍ଷେତ୍ରରେ Neo Journalism ବା ନବ୍ୟ ସାମ୍ବାଦିକତା ଧାରା ଖୁବ୍ ଲୋକପ୍ରିୟତା ଲାଭ କରିଛି । ସେଠାକାର ଗଳ୍ପ ବା କାହାଣୀ ଲେଖକମାନେ ସାମ୍ବାଦିକତାର ଭାଷା ଓ ବିବରଣୀକୁ ଆଧାର କରି ଯେଉଁ ସବୁ ଗଳ୍ପ, କାହାଣୀ ବା ଉପନ୍ୟାସ ସୃଷ୍ଟି କରୁଛନ୍ତି, ସେଗୁଡ଼ିକ ବେଶ ଆଦୃତ ହୋଇ ପାରୁଛି । ବିଶିଷ୍ଟ ସାମ୍ବାଦିକ ଓ ସାହିତ୍ୟିକ ଶ୍ରୀ ମହେଶ୍ୱର ମହାନ୍ତି ଯଥାର୍ଥରେ 'ଓଡ଼ିଶାରେ ସମ୍ବାଦ-ସାହିତ୍ୟର ପ୍ରବର୍ତ୍ତକ ଡକ୍ଟର ମହତାବ' ଶୀର୍ଷକ ଆଲୋଚନାରେ ଲେଖୁଛନ୍ତି - 'ଗାଁ ମଜଲିସ୍' ସମ୍ବାଦ-ସାହିତ୍ୟ କ୍ଷେତ୍ରରେ ଏକ ଅଭିନବ ସୃଷ୍ଟି । ଏଥିରେ ସେ ଦେଶର ରାଜନୈତିକ, ଅର୍ଥନୈତିକ, ସାମାଜିକ, ଓ ସାଂସ୍କୃତିକ ସମସ୍ୟାକୁ ସର୍ବଜନବୋଧ୍ୟ ସରଳ ଭାଷା ଓ ଶୈଳୀରେ ପ୍ରକାଶ କରି ଜନମତ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଶାସନକୁ ଦିଗଦର୍ଶନ ଦେଇ ଆସୁଥିଲେ । ପ୍ରଜାତନ୍ତ୍ରର ଗାଁ ମଜଲିସ୍ ଥିଲା ପାଠକମାନଙ୍କର ମୁଖ୍ୟ ଆକର୍ଷଣ । ଏଥିରେ ସମାଜର ବିଭିନ୍ନ ସମସ୍ୟାର ଆଲୋଚନା ସଙ୍ଗେ ସଙ୍ଗେ ତାହାର ସମାଧାନର ପନ୍ଥା ନିର୍ଦ୍ଧାରଣ ପାଇଁ ମହତାବ ବାବୁ ଗଠନମୂଳକ ପରାମର୍ଶ ଦେଉଥିଲେ । ସବୁ ବିଷୟ ବୁଝିବା ଓ ସବୁ ବିଷୟରେ ମତ ଗଠନ କରିବାର ଶକ୍ତି ଗ୍ରାମବାସୀଙ୍କର ଅଛି, ସେହି ଶକ୍ତିର ଜାଗରଣ ଗାଁ ମଜଲିସ୍‌'ର ଉଦ୍ଦେଶ୍ୟ ବୋଲି ସେ କହିଥିଲେ .... ।"

ବରିଷ୍ଠ ସାମ୍ବାଦିକ
ଡି. ୧୦/୫, ୟୁନିଟ୍-୮, ଭୁବନେଶ୍ୱର

• • •

## ଯୁବ ସମାଜର ପ୍ରେରଣା

*ଡକ୍ଟର ମହତାବ ଦୀର୍ଘ କାଳ ଧରି ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନକୁ ନାନା ଭାବରେ ପ୍ରଭାବିତ କରିଥିଲେ । ଏକାଧାରରେ ଜଣେ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ଦେଶଭକ୍ତ, ସମାଜ ସଂସ୍କାରକ, ଧୂରୀଣ ରାଜନୀତିଜ୍ଞ, ବିଜ୍ଞ ଐତିହାସିକ ଓ ସାମ୍ବାଦିକ ହିସାବରେ ସମଗ୍ର ଭାରତବର୍ଷରେ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ ହୋଇପାରିଥିଲେ । ଓଡ଼ିଶାର ସର୍ବାଙ୍ଗୀନ ବିକାଶ ତାଙ୍କର ଧ୍ୟେୟ ଥିଲା ଏବଂ ଏଥିପାଇଁ ସେ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଅହରହ ଉଦ୍ୟମଶୀଳ ଥିଲେ । ତାଙ୍କର ଦେଶପ୍ରେମ, ତ୍ୟାଗ, ବିଦ୍‌ବତା ଓ ଉଦାରତା ଆମର ଯୁବ ସମାଜକୁ ବହୁକାଳ ପାଇଁ ପ୍ରେରଣା ଯୋଗାଇବ ।*

- ବିଜୁ ପଟ୍ଟନାୟକ

# ଇତିହାସର ଆଦ୍ୟ ଅଧ୍ୟାୟ

ଶ୍ରୀମତୀ ମମତା ନାୟକ

ଭଦ୍ରକ ଜିଲ୍ଲାର ଏକ ପଲ୍ଲୀଗ୍ରାମ ଆଗରପଡ଼ାର ବଡ଼ହାଟ ତ୍ରିଲୋଚନପୁରରେ ଥିଲା ଦୁଇଟି ପୁରାତନ ରାଜପରିବାର-ମାହାଲ ଓ ମୁହାଯିବ । ମୁହାଯିବର ରାଜାଙ୍କ ନାମ ଜଗନ୍ନାଥ ମହତାବ । ଆଗରପଡ଼ା ସିଂହ ରାଜ ପରିବାରର ଶେଷ ରାଜା ରାମଚନ୍ଦ୍ର ସିଂହଙ୍କର ସେ ଭଣଜା । ରାମଚନ୍ଦ୍ର ନିଃସନ୍ତାନ ଥିବାରୁ ଜଗନ୍ନାଥ ମହତାବଙ୍କୁ ତାଙ୍କର ରାଜ୍ୟ ଦାନ କରିଥିଲେ । ଏ ରାଜବଂଶର ସବୁ ରାଜା ପୁରୁଷାନୁକ୍ରମେ ଅପୁତ୍ରିକ ଥିଲେ ।

ଯେତେବେଳେ ମାନସିଂହ ଓଡ଼ିଶା ବିଜୟ କଲେ, ସେତେବେଳେ ଏହି ସିଂହ ପରିବାର କେତେକ ପରିବାର ସହ ଆସି ଓଡ଼ିଶାରେ ବସବାସ କଲେ । ସେତେବେଳେ ଓଡ଼ିଶାରେ ଅରାଜକତା ଚାଲିଥାଏ । ଏହାର ସୁଯୋଗ ନେଇ ଏହି ସିଂହ ପରିବାର କେନ୍ଦୁଝରର କେତେକ ଅଞ୍ଚଳ ଦଖଲ କରି ନେଇଥିଲେ । ସେଠାରେ ଏକ ଛୋଟ ରାଜ୍ୟ ଗଠନ କରି ତହିଁର ରାଜା ହୋଇ ରହିଥିଲେ । କେନ୍ଦୁଝର ଅନ୍ତର୍ଗତ ସିଙ୍ଗଡ଼ି ବା ସିଂହଗଡ଼ ଏହି ସିଂହ ପରିବାରର ମୂଳ ବାସସ୍ଥାନ । ଏହାପରେ କେନ୍ଦୁଝର ରାଜା ସେମାନଙ୍କୁ ସେଠୁ ତଡ଼ି ଦେବାରୁ ସିଂହ ପରିବାର ଆଗରପଡ଼ାରେ ଆସି ରହିଲେ ।

କୌଣସି ପୁତ୍ର ସନ୍ତାନ ଜଗନ୍ନାଥ ମହତାବଙ୍କର ନଥିଲେ । ସେ କଟକ ଜିଲ୍ଲା ଅମ୍ବରେଶ୍ୱର ଗ୍ରାମରୁ ଏକ ଦରିଦ୍ର ପରିବାରରୁ କୃଷ୍ଣଚରଣ ଦାସଙ୍କୁ ଆଣି ଉଆସରେ ପାଳିଥିଲେ । ବଡ଼ ହେବାରୁ ବଡ଼ ଝିଅ ଚୌଧୁରୀ ବିବି ସହିତ ତାଙ୍କୁ ବିବାହ ଦେଇଥିଲେ ।

କୃଷ୍ଣଚରଣଙ୍କର ଦୁଇପୁଅ ନରସିଂହ ଓ ହରେକୃଷ୍ଣ । ୧୮୯୯ ମସିହା ନଭେମ୍ବର ୨୧ ତାରିଖ ଦିନ ହରେକୃଷ୍ଣଙ୍କର ଜନ୍ମ । ସପ୍ତଗ୍ରହ ଯୋଗରେ ତାଙ୍କର ଜନ୍ମ ଯୋଗୁଁ ତାଙ୍କ ଗ୍ରହ ଭାରି ଟାଣ ବୋଲି ସମସ୍ତେ କହୁଥିଲେ । ନରସିଂହଙ୍କର ଗୋଟିଏ ଆଖି ଟେରା, ତେଣୁ ରାଜା ଜଗନ୍ନାଥ ତାଙ୍କୁ ପୋଷ୍ୟପୁତ୍ର ନ କରି ସାତମାସର ଶିଶୁ ହରେକୃଷ୍ଣଙ୍କୁ ଗ୍ରହଣ କରିଥିଲେ । କିଛି ଦିନ ପରେ ଜଗନ୍ନାଥଙ୍କ ମୃତ୍ୟୁ ଘଟିବାରୁ ହରେକୃଷ୍ଣ ହେଲେ ଜମିଦାରୀର ମାଲିକ । ସେ ନାବାଳକ ଥିବାରୁ କୃଷ୍ଣଚରଣ ଜମିଦାରୀର ତତ୍ତ୍ୱାବଧାରକ ଭାବରେ ରହିଥିଲେ । କୃଷ୍ଣଚରଣ ଶିକ୍ଷାଲାଭ କରିନଥିଲେ ମଧ୍ୟ ନିଜର ବିଚକ୍ଷଣ ବୁଦ୍ଧି ବଳରେ ଜମିଦାରୀ ବେଶ୍ ସୁରୁଖୁରରେ ବୁଝାଶୁଝା କରୁଥିଲେ । ଗାଁରେ ପ୍ରାଥମିକ ସ୍କୁଲ ଓ ଡାକ୍ତରଖାନା ସ୍ଥାପନ କରିଥିଲେ ।

ହରେକୃଷ୍ଣଙ୍କ ପିଲାଦିନ ରାଜପରିବାରର ପୁରୁଣା ପ୍ରଥା ଅନୁସାରେ ନାନା କାଇଦା କଟକଣାରେ କଟିଥିଲା । ଘରେ ସଦେଇ ଅବଧାନ ଥିଲେ ତାଙ୍କର ବାଲ୍ୟଗୁରୁ । ୧୪ ବର୍ଷ ବୟସ ପର୍ଯ୍ୟନ୍ତ ଗାଁ ଛାଡ଼ି ବାହାରକୁ ଯାଇପାରୁ ନଥିଲେ । ପାଖ ପଡ଼ୋଶୀ ଘର ମଧ୍ୟ ମାଡ଼ି ନଥିଲେ । ବେମାର ପଡ଼ିଲେ ଗୁଣିଆ ଆସି ଝଡ଼ାଫୁଙ୍କା କରୁଥିଲେ । ଗାଁ ସ୍କୁଲରେ ଇଂରାଜୀ ପଢ଼ିବାର ବ୍ୟବସ୍ଥା ନଥିଲା । ତେଣୁ ମହତାବ ପରିବାରର ପିଲାଙ୍କୁ ଘରୋଇ ଭାବରେ ପଢ଼ିବାର ସୁବିଧା କରାଯାଇଥିଲା । ହେଡ୍‌ପଣ୍ଡିତ ଭଗବାନ ଚରଣ ମହାପାତ୍ର ଓ ଇଂରାଜୀ ଶିକ୍ଷକ କୃପାସିନ୍ଧୁ ମହାନ୍ତି ଥିଲେ ଅତ୍ୟନ୍ତ ଆଦର୍ଶବାଦୀ । ବଡ଼ ମଣିଷ ହେବାର ସବୁ ଗୁଣ ସେ ସେମାନଙ୍କଠାରୁ ଶିକ୍ଷା କରିଥିଲେ । ହରେକୃଷ୍ଣଙ୍କ ଜନ୍ମଦାତ୍ରୀ ମା ରାମାୟଣ, ମହାଭାରତ, ଦାଢ୍ୟତାଭକ୍ତି ଆଦି ଶାସ୍ତ୍ର, ପୁରାଣରୁ କାହାଣୀମାନ ଶୁଣାଉଥିଲେ । ଗାଁ ସ୍କୁଲରେ ପଢୁଥିବାବେଳେ ହରେକୃଷ୍ଣ ରାମାୟଣ କଥାକୁ ପଦ୍ୟାକାରରେ ରଚନା କରିଥିଲେ । ସେତେବେଳେ ମହତାବ ପରିବାରରେ ପ୍ରତିମାସରେ ଠାକୁରପୂଜା ଓ ଯାତ୍ରାପର୍ବ ଲାଗି ରହିଥାଏ । ପାଲା ଗାୟକମାନେ ମନକୁ ପାନ୍ଥି ସଂଗୀତ ରଚନା କରୁଥିବା ଦେଖି ତାଙ୍କର ଗୀତ ଲେଖିବାକୁ ମନ ବଳିଥିଲା ।

ମାଧ୍ୟମିକ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାପରେ ନରସିଂହ ଓ ହରେକୃଷ୍ଣ ଭଦ୍ରକ ଆସିଲେ ଉଚ୍ଚ ଶ୍ରେଣୀରେ ପଢ଼ିବା ପାଇଁ । ସେତେବେଳେ ହରେକୃଷ୍ଣଙ୍କ ବୟସ ତେରବର୍ଷ । ସେମାନଙ୍କ ମୁରବୀ ରୂପେ ଆଗରପଡ଼ା ଉ.ପ୍ରା. ସ୍କୁଲର ହେଡ୍‌ପଣ୍ଡିତ ବିଷ୍ଣୁଚରଣ ପାଣିଗ୍ରାହୀଙ୍କୁ ନିଯୁକ୍ତ କରାଯାଇଥିଲା । ବିଷ୍ଣୁଚରଣଙ୍କ ଭଦ୍ରକ ସାବୁନ ବଜାର ବସାଘରେ ରହି ପିଲାମାନେ ପଢୁଥିଲେ । ଘର କାମ କରିବାକୁ ତାଙ୍କର ପୂଝାରୀ ଖଞ୍ଜା ହୋଇଥାନ୍ତି । ବାପାଙ୍କର କଡ଼ା କଟକଣା ଯୋଗୁଁ ସ୍କୁଲ ଓ ବସାଘର ଛଡ଼ା ବାହାର ଜଗତ ସହିତ ତାଙ୍କର କୌଣସି ସମ୍ପର୍କ ରହୁ ନଥିଲା । ମାସରେ ଥରେ ଦୁଇଥର ବାପା ଭଦ୍ରକ ଆସି ପୁଅମାନଙ୍କ ଭଲମନ୍ଦ ବୁଝିଯାଉଥିଲେ ।

ହରେକୃଷ୍ଣ ପିଲାଦିନେ ଭାରି ଟୋକା ସ୍ୱଭାବର ଥିଲେ । ରାଜାଘରର ସମସ୍ତ ଅୟସ ସତ୍ତ୍ୱେ ସାଙ୍ଗ ସାଥୀମାନଙ୍କଠାରୁ ଖଇ, ବୁଟା, ମୁଢ଼ି, ଖଟା ଯାହା ଦେଖନ୍ତି, ଛଡ଼େଇ ଖାଇ ଯାଉଥିଲେ । ବଡ଼ ଘରର ପିଲା ବୋଲି ତାଙ୍କ ମନରେ ଟିକିଏ ହେଲେ ଆଭିଜାତ୍ୟ କି ଅହଙ୍କାର ନଥାଏ । ସାଧାରଣ ଘର ପିଲାଙ୍କ ପରି ସମସ୍ତଙ୍କ ସହିତ ମିଶି ଚଳୁଥିଲେ । ବାପା ଏମିତି ବନ୍ଦୋବସ୍ତ କରିଥାନ୍ତି ଯେ ତାଙ୍କ ହାତକୁ ଗୋଟିଏ ସୁଦ୍ଧା ପଇସା ଆସୁନଥିଲା । କଡ଼ାକଡ଼ି ହିସାବ ଯୋଗୁଁ ଟିକିଏ ବି ଫୁର୍ତ୍ତି କରିବାର ସୁବିଧା ମିଳୁନଥିଲା । ଅତି ସରଳ ଓ ସାଧାରଣ ଢଙ୍ଗରେ ସମସ୍ତଙ୍କୁ ଚଳିବାକୁ ପଡୁଥିଲା । ସ୍କୁଲର ଅନ୍ୟ ସାଙ୍ଗମାନେ ବେଶ୍ ଭୋଗ ବିଳାସରେ ଚଳୁଥିବା ଦେଖି ବାପାଙ୍କ ଉପରେ ହରେକୃଷ୍ଣ ମନେ ମନେ ବିରକ୍ତ ହୁଅନ୍ତି । ଦିନେ ରାଗରେ ସେମାନେ ଶିଖାଶିଖି ହୋଇ ମୁରବୀ ରଖୁଥିବା ଖର୍ଚ୍ଚ ହିସାବ ଖାତାକୁ ନଷ୍ଟ କରି ବାପାଙ୍କୁ ଜଣାଇଦେଲେ- ମୁରବୀ ସବୁ ଟଙ୍କା ଖାଇ ଯାଉଛନ୍ତି । ଜନ୍ମଦାତ୍ରୀ ଆଉ ପାଳିକା ମାଙ୍କୁ ଲେଖିଲେ, ଭଦ୍ରକରେ ନଖାଇ ନଖାଇ ସେମାନେ ଦିନେ ମରିଯିବେ । ବାପା କିନ୍ତୁ ପୁଅମାନଙ୍କ କାରସାଦୀ ବୁଝିପାରିଲେ । ସେ ବୁଝାଇ ଦେଲେ-

ସହର ବଜାର ଜାଗାରେ ପିଲାଙ୍କ ହାତରେ ପଇସା ଦେଲେ, ସେମାନେ ଛତ୍ରଖାଇ କରି ଖରାପ ହୋଇଯିବେ ।

ହରେକୃଷ୍ଣ ନିରୁପାୟ ହୋଇ ପାଞ୍ଚବର୍ଷ କାଳ ସେହିପରି ଭଦ୍ରକରେ ରହିଲେ । ନିଜର ବାଲ୍ୟଜୀବନ ସମ୍ପର୍କରେ ମହତାବ ଲେଖିଛନ୍ତି- "ବାଲ୍ୟାବସ୍ଥା ଓ ଯୌବନର ପ୍ରାରମ୍ଭରେ ସେତେବେଳେ ଯେ ଖୁବ୍ କଷାକଷି ଭିତରେ ଆମକୁ ଚଳିବାକୁ ପଡ଼ିଲା, ତାର ଭଲଫଳ ଆଜି ଭୋଗ କରୁଛୁ । ବିଳାସୀ ହେବାପାଇଁ ସ୍ପୃହାହିଁ ନଷ୍ଟ ହୋଇଗଲା । ବେଶି ଖର୍ଚ୍ଚ କରି ସମ୍ଭୋଗରେ ରହିବାର ଆକାଂକ୍ଷା କୁଆଡ଼େ ଉଭେଇଗଲା ।"

ଭଦ୍ରକ ସ୍କୁଲରେ ହରେକୃଷ୍ଣ ଉତ୍ତମ ଛାତ୍ର ରୂପେ ପରିଚିତ ଥିଲେ । ଇଂରାଜୀ, ଅଙ୍କ, ସଂସ୍କୃତ ପ୍ରଭୃତିରେ ସେ ପ୍ରଥମ, ଦ୍ୱିତୀୟ ହେଉଥିଲେ । ଚାକିରି ନକରି କିମ୍ବା ଘରେ ଜମିଦାର ହୋଇ ନବସି ସାଧାରଣ ସେବା କାର୍ଯ୍ୟ ଆଡ଼କୁ ତାଙ୍କର ମନ ସ୍କୁଲ ଜୀବନରୁ ଢଳିଥିଲା ।

ଚଳଣି ଅନୁସାରେ ଯଦି କେହି ରାଜା ଡାକୁଥିଲା, ସେ ସଂକୋଚବୋଧ କରୁଥିଲେ ।

ସେତେବେଳେ ବିଶ୍ୱଯୁଦ୍ଧ ସମୟ । ବଙ୍ଗ ଦେଶରେ ଚାଲିଥାଏ ବ୍ରିଟିଶ ସେନା ସହିତ ବିପ୍ଳବୀମାନଙ୍କ ବୀରତ୍ୱପୂର୍ଣ୍ଣ ସଂଗ୍ରାମ । ଏହିସବୁ ଘଟଣା ଶୁଣି ହରେକୃଷ୍ଣଙ୍କ ତରୁଣ ପ୍ରାଣରେ କମ୍ପନ ସୃଷ୍ଟି ହେଉଥାଏ । ସ୍କୁଲରେ ଅନ୍ୟ ଛାତ୍ରମାନଙ୍କ ସହିତ ଦେଶ ସେବା ପାଇଁ ସେ ବ୍ୟାକୁଳ ହୋଇ ପଡୁଥିଲେ । ସ୍କୁଲରେ ଗୋରା ସରକାର ବିରୁଦ୍ଧରେ ସଭା କରାଉଥିଲେ । ଥରେ ବ୍ରିଟିଶ ପୋଲିସର୍ ବାଡ଼େଇ ଆହତ କରିପକାଇଥିଲେ । ରାଜନୀତି ଆଡ଼କୁ ତାଙ୍କର ମନ ସ୍ୱତଃ ଢଳିଥିଲା । ଭଦ୍ରକରେ ସେମାନଙ୍କ ବସାଘର ପାଖରେ ଜମିଦାରୀ କଚେରୀ ଘରେ ରାମକୃଷ୍ଣ ମିସନର ସନ୍ନ୍ୟାସୀମାନେ ରହୁଥିଲେ । ସେଠାରେ ସେ ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ଶଙ୍କରାନନ୍ଦଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲେ । ସେମାନଙ୍କ ପାଖରୁ ନାନା ଧର୍ମୋପଦେଶ ଶୁଣୁଥିଲେ । ଭଦ୍ରକ ହାଇସ୍କୁଲରେ ସେ 'ସାଧନା' ନାମରେ ଏକ ହାତଲେଖା ପତ୍ରିକା ପ୍ରକାଶ କରିଥିଲେ ।

ମାଟ୍ରିକ୍ ଫାଷ୍ଟ କ୍ଲାସରେ ପଢ଼ିବାବେଳେ ଜନ୍ମଦାତ୍ରୀ ମା ତୋଫା ଦେବୀଙ୍କର କାଳ ହୋଇଗଲା । ବାପା ଭାଙ୍ଗି ପଡ଼ିଲେ । ସଂସାରପ୍ରତି ବୀତସ୍ପୃହ ହୋଇ ପଡ଼ିଲେ । ମନ ବୈରାଗ୍ୟ ଆଡ଼କୁ ଗତି କଲା । ସେ ବୈଷ୍ଣବ ଦୀକ୍ଷା ଗ୍ରହଣ କରିବାକୁ ସ୍ଥିର କଲେ । ଘରକୁ ବୋହୂ ଆଣି ହରେକୃଷ୍ଣଙ୍କ ଉପରେ ଜମିଦାରୀ ଦାୟିତ୍ୱ ଦେଇ ଯିବାକୁ ବ୍ୟବସ୍ଥା କଲେ । ହରେକୃଷ୍ଣ ଯେତେ ଆପତ୍ତି କଲେ ବି ବାପାଙ୍କ ଜିଦ୍ ଆଗରେ ହାର ମାନିବାକୁ ପଡ଼ିଲା । ପ୍ରାଚୀନ ଗ୍ରାମ୍ୟ ପ୍ରଥା ଅନୁସାରେ କଟକ ଜିଲ୍ଲା ଅମ୍ବୁରେଶ୍ୱର ଗ୍ରାମର ଆନନ୍ଦରାମ ସିଂହଙ୍କ କନ୍ୟା ସୁଭଦ୍ରାଙ୍କ ସହ ତାଙ୍କର ବିବାହ ହୋଇଗଲା ।

ବିବାହର କେତେ ମାସ ପରେ ହରେକୃଷ୍ଣ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ କଲେ । ଘରେ ସମସ୍ତଙ୍କର ଇଚ୍ଛା, ତାଙ୍କର ଆଉ ଅଧିକ ପଢ଼ିବା ଦରକାର ନାହିଁ । ବାପା ତାଙ୍କୁ ଜମିଦାରୀ ବୁଝିବା ପାଇଁ ସବୁ କାଗଜପତ୍ର ଧରାଇଦେଲେ । ବାଧ୍ୟ ହୋଇ କଲେଜ ଖୋଲିବା ପର୍ଯ୍ୟନ୍ତ ତାଙ୍କୁ ତିନି ଚାରିମାସ ଜମିଦାରୀ ଓ ଘରକାମ ବୁଝାସୁଝା କରିବାକୁ ପଡ଼ିଲା । ପର୍ବ ପର୍ବାଣୀରେ ସଙ୍ଗୀତ ଓ ସଂକୀର୍ତ୍ତନ ବାଧ୍ୟତାମୂଳକ ଥିବାରୁ ତାଙ୍କୁ ବେହେଲା, ହାରମୋନିୟମ, ବଂଶୀ ବଜାଇବା ଶିଖିବାକୁ ହୋଇଥିଲା ।

ଗ୍ରୀଷ୍ମ ଛୁଟି ପରେ-କଲେଜ ଖୋଲିବାକୁ ଆଉ ପନ୍ଦର ଦିନ ଥାଏ, ସାହସ କରି ହରେକୃଷ୍ଣ ବାପାଙ୍କ ପାଖକୁ ଚିଠି ଲେଖିଲେ, ସେ କଲେଜରେ ପଢ଼ିବେ । ବାପା ଉତ୍ତର ଦେଲେ-" ମୋର ବର୍ତ୍ତମାନ ସଂସାର ଛାଡ଼ିବାର କଥା । ମୋତେ ଘରକରଣା ଆଉ ଭଲ ଲାଗୁନାହିଁ । ତୁ ତ ଜମିଦାରୀର ମାଲିକ । ତୋର ବଡ଼ଭାଇ ଅସୁସ୍ଥ । ସାନଭାଇ ଦୁଇଟି ପିଲା । ସେମାନଙ୍କୁ ମଣିଷ କରିବାର ଭାର ତୋ ଉପରେ । ଏଣୁ ଆଉ ପଢ଼ିବା କଥା ନଭାବି ଭାଇମାନଙ୍କ ଯତ୍ନ ନେ । ମୁଁ ଆଉ କଲେଜ ପଢ଼ିବା ଖର୍ଚ୍ଚ ଯୋଗାଇ ପାରିବି ନାହିଁ ।

ହରେକୃଷ୍ଣଙ୍କ ଜିଦ୍, କଲେଜରେ ନପଢ଼ିଲେ ଦେଶ କାମ କିଛି କରିପାରିବେ ନାହିଁ । ନାମଲେଖା ଆଉ ଚାରିଦିନ ଥାଏ, ଜମିଦାରୀ କାଗଜପତ୍ର ତାଙ୍କ ପାଖରେ ଯେତେକ ଥିଲା ସେସବୁ ଜଣେ ଚାକର ହାତରେ ବାପାଙ୍କ ପାଖକୁ ପଠାଇଦେଲେ । ଗୁମାସ୍ତାକୁ କହିଲେ, ବାପାଙ୍କଠାରୁ ଟଙ୍କା ଆଣିବା ପାଇଁ । ବାପା ବିରକ୍ତ ହୋଇ ଗୁମାସ୍ତା ହାତକୁ ପଚାଶ ଟଙ୍କା ବଢ଼େଇ ଦେଇ ମାସକୁ ମାସ କଲେଜ ଖର୍ଚ୍ଚ ତିରିଶ ଟଙ୍କା ପଠାଇ ଦିଆଯିବ କହି ଚାଲିଗଲେ । ଗୁମାସ୍ତାଠୁ ଟଙ୍କା ନେଇ ହରେକୃଷ୍ଣ ଷ୍ଟେସନ ବାହାରିଲେ । ବାଟରେ ତାଙ୍କ ଜମିଦାରୀର ଏତେତେକ ଗାଁ ଦେଇ ସବାରିରେ ଯିବାବେଳେ ଗାଁର ମୁରବିଆ ଲୋକେ "ରାଜା ଆସିଛନ୍ତି" କହି ପ୍ରଚଳିତ ରୀତି ଅନୁସାରେ କିଛି କିଛି ସଲାମି ଦେଉଥିଲେ । ଏ ବାବଦରେ ମିଳିଥିଲା ଦେଢ଼ଶହ/ଦୁଇଶହ ଟଙ୍କା । ସେତକ ଟଙ୍କା ନେଇ ତାଙ୍କର ମହଲା ଓ ସହପାଠୀ ଉଦୟନାରାୟଣ ସହିତ ପାହାନ୍ତା ପାହାନ୍ତା ଟ୍ରେନ ଚଢ଼ି କଟକରେ ପହଞ୍ଚିଲେ ।

କଲେଜରେ ନାମ ଲେଖାଇବା ବେଳେ ହରେକୃଷ୍ଣଙ୍କ ବୟସ ସତର ବର୍ଷ । ସେତେବେଳେ ରେଭେନ୍ସା କଲେଜ କାଠଯୋଡ଼ି କୂଳରେ ଏବେ ଯେଉଁଠି ରେଭେନ୍ସା କଲେଜିଏଟ ସେଇଠି ଥିଲା । ସ୍କୁଲ ହଷ୍ଟେଲ କଲେଜ ହଷ୍ଟେଲ ଥିଲା । ହଷ୍ଟେଲ ଜୀବନକୁ ଛାତ୍ରମାନେ ବିଳାସ ଭାବୁଥିଲେ । ହରେକୃଷ୍ଣ କିଛିଦିନ ସେହି ବିଳାସରେ ବୁଡ଼ିଗଲେ । କିଛିଦିନ ପରେ ଏ ବିଳାସୀ ଜୀବନ ଆଉ ଭଲ ଲାଗିଲା ନାହିଁ । ସରଳ ଜୀବନ କଟାଇବା ପାଇଁ ସେ କଲେଜ ହଷ୍ଟେଲ ଛାଡ଼ି ଏକ ଘରୋଇ ମେସ୍‌ରେ ରହିଲେ । ମହାଦାପ ବଜାରରେ ଥିବା ଏହି ମେସ୍ ପରିଚାଳନା କରୁଥିଲେ ଭକ୍ତକବି ମଧୁସୂଦନ ରାଓଙ୍କ ବଡ଼ଭାଇ ଜଗନ୍ନାଥ ରାଓଙ୍କ ବିଧବା ଝିଅ ଦେବୀ ରାୟ । ଏହି ମେସରେ ରହିଲେ ଭଦ୍ରକ ସ୍କୁଲର ସହପାଠୀ ଉଦୟନାରାୟଣ ଓ କବିବର ଚିନ୍ତାମଣି ମହାନ୍ତିଙ୍କ ପୁଅ ଉପେନ୍ଦ୍ର । ମେସ୍‌ର ଘରଭଡ଼ା ସହିତ ଖର୍ଚ୍ଚ ପଡୁଥିଲା ମାସକୁ ସାଢ଼େ ସାତଟଙ୍କା । ଖାଇବାକୁ ମିଳେ ଦୁଇ ଓଳି ଜଳଖିଆ ଓ ଦୁଇ ଓଳି ଭୋଜନ । ଜଳଖିଆ ହେଲା ଛଅଖଣ୍ଡ ଲୁଚି ଓ ଆଳୁ ଦମ୍ । ଭୋଜନରେ ଭାତ, ଡାଲି, ପାଞ୍ଚ ତରକାରୀ, ମାଛ ଝୋଳ ଆଉ ଖଟା ।

କଲେଜରେ କିଏ କଣ ପଢ଼ିବେ, ବିଚାର ଚାଲିଲା । ସ୍ଥିର ହେଲା ବଡ଼ଲୋକ ପିଲାମାନେ ବିଜ୍ଞାନ ପଢ଼ିବେ । ଯେଉଁମାନେ ଚାକିରି ବା

ଓକିଲାତି କରିବେ, ସେମାନେ କଳା ପଢ଼ିବେ । ହରେକୃଷ୍ଣ ବିଜ୍ଞାନ ନେଲେ । ଅତିରିକ୍ତ ବିଷୟ ଥିଲା, ଫିଜିକ୍ସ, କେମେଷ୍ଟ୍ରି, ମାଥମେଟିକ୍ସ ଓ ବଟାନି ।

ସେକେଣ୍ଡ ଇୟରରେ ପଢ଼ିବାବେଳେ ନବକୃଷ୍ଣ ଚୌଧୁରୀ ଓ ପ୍ରହ୍ଲାଦ ସାହୁଙ୍କ ସହିତ ତାଙ୍କର ପରିଚୟ ହେଲା । ତିନି ହେଁ ମିଶି କିଛି ସାଧାରଣ କାମ କରିବାକୁ ଆଲୋଚନା କରନ୍ତି । ଦେଶର ଅବସ୍ଥା ଓ ରାଜନୈତିକ ପରିସ୍ଥିତି ଉପରେ ଚର୍ଚ୍ଚା ହୁଏ । ସେମାନେ ନିଜକୁ ସ୍ୱାଧୀନଚେତା ବୋଲି ମନେ କରୁଥିଲେ । ନିଜେ ଯାହା ଠିକ୍ କରିବେ, ସେହି ଅନୁସାରେ ସାଧାରଣ ମତ ଗଠନ କରିବା ଥିଲା ସେମାନଙ୍କର ଚିନ୍ତାଧାରା । ଅନ୍ୟମାନେ ଯେତେ ପରିହାସ କଲେ ବି ସେମାନେ ନିଜର ମତ ଓ ରୁଚିରେ ଦୃଢ଼ ରହୁଥିଲେ । ନବକୃଷ୍ଣ ଏକ ତାଳପତ୍ରର ଛତା ଧରି କଲେଜକୁ ଯାଉଥିଲେ । ହରେକୃଷ୍ଣ କପାଳରେ ରାମାନନ୍ଦୀ ତିଳକ କାଟି ପଢ଼ିବାକୁ ଯାଉଥିଲେ । ଏଥିପାଇଁ ସେମାନେ ସମସ୍ତଙ୍କର ପରିହାସର ପାତ୍ର ହେଉଥିଲେ ବି ସେଥିକି ଖାତିର କରୁନଥିଲେ । ଥରେ ଗୋଟିଏ ପାନ ଦୋକାନରେ ଖଟା ମାରି ସେମାନଙ୍କୁ ଗାଳି ଶୁଣିବାକୁ ହୋଇଥିଲା ।

ସେତେବେଳେ ମଧୁବାବୁଙ୍କ ପ୍ରତିଷ୍ଠିତ 'ଉତ୍କଳ ସମ୍ମିଳନୀ' ଦେଶ ମିଶ୍ରଣ ଆନ୍ଦୋଳନ ଚଳାଇଥାଏ । ହରେକୃଷ୍ଣ 'ଉତ୍କଳ ସମ୍ମିଳନୀ'ର ସ୍ୱେଚ୍ଛାସେବକ ଭାବରେ ଯୋଗ ଦେଲେ । ମୁଣ୍ଡରେ ଲାଲପଗଡ଼ି ଓ ଛାତିରେ ବ୍ୟାଜ ଲଗାଇ ବୁଲିବାକୁ ହେଉଥିଲା । ମଧୁବାବୁଙ୍କ ଘରେ ସ୍ୱେଚ୍ଛାସେବକମାନଙ୍କୁ ତାଲିମ ଦିଆଯାଉଥିଲା । ଉତ୍କଳ ସମ୍ମିଳନୀ ପକ୍ଷରୁ ଗାଁମାନଙ୍କରେ ସେ ବନ୍ୟା ଦୁର୍ଗତଙ୍କ ସେବା କାର୍ଯ୍ୟ କରୁଥିଲେ । କଲେଜରେ ସେ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ, ଗୋପାଳଚନ୍ଦ୍ର ଗାଙ୍ଗୁଲି, ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଥିଲେ ଅତି ପ୍ରିୟ ଛାତ୍ର ।

ରେଭା ରାୟ ମେସରେ ସେମାନେ ବର୍ଷେ କାଳ ରହିବା ପରେ ପୁରୀଘାଟରେ ଆଉ ଏକ ମେସକୁ ଗଲେ । ସେ ମେସଟି ଚଳାଉଥିଲେ, ଓଡ଼ିଶାର ପ୍ରଥମ ବାରିଷ୍ଟର ବିଶ୍ୱନାଥ ମିଶ୍ର । ଏହି ମେସରୁ ସେମାନେ 'ମଳୟ' ନାମରେ ଏକ ମାସିକ ହାତଲେଖା ପତ୍ରିକା ପ୍ରକାଶ କରିଥିଲେ । ଉଦୟନାରାୟଣ ଥିଲେ ମୁଖ୍ୟ ସମ୍ପାଦକ । ଏହାଛଡ଼ା ମେସ୍‌ରୁ ଦୃଷ୍ଟବିନ୍ ନାମରେ ଆଉ ଏକ ସାପ୍ତାହିକ ଇଂରାଜୀ ହାତଲେଖା ପତ୍ରିକା ହରେକୃଷ୍ଣଙ୍କ ସମ୍ପାଦନାରେ ପ୍ରକାଶ ପାଉଥିଲା । ସେ ସମୟର ସବୁ ସାହିତ୍ୟ ପତ୍ରିକାରେ ପ୍ରକାଶିତ ଲେଖାର ପର୍ଯ୍ୟାଲୋଚନା, ଦେଶର ସାମାଜିକ ଓ ରାଜନୈତିକ ଘଟଣାବଳୀ ଉପରେ ଆଲୋଚନା ଏହି ପତ୍ରିକା ଦୁଇଟିରେ ପ୍ରକାଶିତ ହେଉଥିଲା । ଲେଖା ଓ ସମ୍ପାଦନାରେ ପ୍ରମୁଖ ଭୂମିକା ନେଉଥିଲେ ହରେକୃଷ୍ଣ ।

ଆଇ.ଏସ୍‌ସି ପାସ୍ କରିବା ପରେ ସଂସ୍କୃତ ଓ ଅର୍ଥନୀତି ବିଷୟ ନେଇ ସେ ବି.ଏ. ପଢ଼ିଲେ । ଏହି ସମୟରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ କଟକରେ ଏକ ସେବାସମିତି ସ୍ଥାପନ କରିଥିଲେ । ହରେକୃଷ୍ଣ ସେଥିରେ ଯୋଗଦେଇ ସମବାୟ ବିଭାଗ ଦାୟିତ୍ୱରେ ରହିଲେ । ସମବାୟ ସୂତ୍ରରେ ସେ ଏକ କାଗଜ ଓ ପେନସିଲ ଦୋକାନ ଖୋଲିଥିଲେ ।

ତାଙ୍କର କଲେଜ ଜୀବନ ଶେଷ ହୋଇ ଆସିବା ବେଳକୁ ସାରା ଦେଶରେ ଘୋଟି ଯାଇଥାଏ ରାଜନୈତିକ ଘନଘଟା । ରାଓଲଟ ଆଇନ ପ୍ରତିବାଦରେ ହରତାଳ, ପଞ୍ଜାବର ଜାଲିଆନା ୱାଲାବାଗ ହତ୍ୟାକାଣ୍ଡ, ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ଡାକରା ଆଦି ଘଟଣାରେ ହରେକୃଷ୍ଣଙ୍କ ଯୁବପ୍ରାଣ ଅସ୍ଥିର ହୋଇ ଉଠୁଥିଲା ।

୧୯୨୦ ମସିହାରେ ବାଖରାବାଦଠାରେ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗୀରଥି ମହାପାତ୍ର ଓ ହରେକୃଷ୍ଣ ମହତାବ ଭାରତୀ ମନ୍ଦିର ନାମରେ ଏକ ପାଠାଗାର ସ୍ଥାପନ କଲେ । ଏଥିରେ ଦେଶର ରାଜନୀତି ବିଷୟରେ ଚର୍ଚ୍ଚା ହେଉଥିଲା । ଏହି ସମୟରେ ଗାନ୍ଧିଜୀଙ୍କ ଅସହଯୋଗ ପ୍ରସ୍ତାବର ଆଲୋଚନା ପାଇଁ କଲିକତାରେ ଜାତୀୟ କଂଗ୍ରେସର ବିଶେଷ ଅଧିବେଶନ ବସିଲା । 'ଭାରତୀ ମନ୍ଦିର' ପ୍ରତିନିଧି ଦଳ ପକ୍ଷରୁ ହରେକୃଷ୍ଣ ଏଥିରେ ଯୋଗ ଦେଇଥିଲେ । ସେତେବେଳେ ତାଙ୍କର କଲେଜ ପଢ଼ା ନାମମାତ୍ର ଚାଲିଥାଏ । ପ୍ରଧାନ କର୍ମକ୍ଷେତ୍ର ହୋଇଥାଏ 'ଭାରତୀ ମନ୍ଦିର' । ବି.ଏ. ପରୀକ୍ଷା ପାଇଁ ଟେଷ୍ଟ ପରୀକ୍ଷା ଦେଇ ସେ ପରୀକ୍ଷା ଫିସ ଦାଖଲ କରିସାରିଥାନ୍ତି । ତେଣେ କଲିକତା କଂଗ୍ରେସରେ ଗାନ୍ଧିଜୀଙ୍କ ଆହ୍ୱାନ ମତେ ଛାତ୍ରମାନେ ପାଠପଢ଼ା ଛାଡ଼ିବା କଥା । ହରେକୃଷ୍ଣ ଦ୍ୱିଧାରେ ପଡ଼ିଥାନ୍ତି । ଏହି ସମୟରେ ନାଗପୁର କଂଗ୍ରେସ ଅଧିବେଶନ ବସିଲା । ଏଥିରେ ପଣ୍ଡିତ ଗୋପବନ୍ଧୁ, ଭଗୀରଥି ମହାପାତ୍ର, ହରେକୃଷ୍ଣ ମହତାବ ପ୍ରମୁଖ ୨୭ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏହି ଅଧିବେଶନରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହେଲା । ସେଠାରେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ହରେକୃଷ୍ଣଙ୍କର ପ୍ରଥମ ପରିଚୟ ହୋଇଥିଲା । ନାଗପୁରରୁ ହରେକୃଷ୍ଣ ଗାନ୍ଧୀ ଟୋପିଟିଏ କିଣି ଆଣିଥିଲେ । ତାକୁ ସବୁବେଳେ ପିନ୍ଧି ବୁଲୁଥିଲେ । ନାଗପୁର କଂଗ୍ରେସରୁ ଫେରି ଭାରତୀ ମନ୍ଦିର ପ୍ରତିନିଧିମାନେ ଅସହଯୋଗ ଆନ୍ଦୋଳନରେ ଝାସ ଦେବାକୁ ପ୍ରସ୍ତୁତ ହେଲେ । ସେତେବେଳେ ମଧୁସୂଦନ ଦାସ ବିହାର-ଓଡ଼ିଶା ସରକାରରେ ମନ୍ତ୍ରୀ ନିଯୁକ୍ତ ହୋଇଥିଲେ । ତାଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ କଟକରେ ଏକ ସଭା ଆୟୋଜନ କରାଯାଇଥିଲା । ଭାରତୀ ମନ୍ଦିର ଯୁବକମାନେ ମଧୁବାବୁଙ୍କ ମନ୍ତ୍ରୀପଦ ଗ୍ରହଣର ବିରୋଧ କରି ବିକ୍ଷୋଭ କଲେ । କଲେଜରେ ହରତାଳ ହେଲା । ଏଥିପାଇଁ କଲେଜରୁ କେତେକ ଛାତ୍ରଙ୍କୁ ବହିଷ୍କାର କରି ଦିଆଗଲା । ହରେକୃଷ୍ଣ ସେମାନଙ୍କ ଭିତରୁ ଜଣେ । ପରେ କେତେକ ବହିଷ୍କୃତ ଛାତ୍ର ନାନା ଉପାୟରେ ପୁଣି କଲେଜରେ ଭର୍ତ୍ତି ହେଲେ । କିନ୍ତୁ ହରେକୃଷ୍ଣ ଆଉ କଲେଜ ଦ୍ୱାର ମାଡ଼ିଲେ ନାହିଁ ।

କଲେଜରୁ ବିତାଡ଼ିତ ହେବା ପରେ ହରେକୃଷ୍ଣ ଗାଁକୁ ଫେରିଗଲେ । ପିତା କୃଷ୍ଣ ଚରଣ ଆଶ୍ୱସ୍ତ ହେଲେ ଯାହା ହେଉ ପୁଅ ଏଣିକି ଜମିଦାରୀ ବୁଝାଶୁଝା କରିବ । ହେଲେ ସେ ଆଶା ତାଙ୍କର ଆଶାରେ ରହିଗଲା ।

ଘରେ ଦୁଇମାସ ରହିବାପରେ ଦିନେ ହରେକୃଷ୍ଣ ବାପାଙ୍କୁ ବି.ଏ. ପରୀକ୍ଷା ଦେବାକୁ କହି ସ୍ତ୍ରୀ, ପାର୍ବତୀ ମା ସମସ୍ତଙ୍କୁ ଠକି ପୁଣି କଟକ ଚାଲି ଆସିଲେ । ଘର, ଜମିଦାରୀ, ଗୃହସ୍ଥ ଜୀବନ ସବୁକୁ ଜଳାଞ୍ଜଳି ଦେଇ ପ୍ରତ୍ୟକ୍ଷ ଭାବରେ ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ ।

ଏହିଠାରୁ ଆରମ୍ଭ ହେଲା ହରେକୃଷ୍ଣଙ୍କର ସାଧନା ଓ ସଂଗ୍ରାମମୟ ସୁଦୀର୍ଘ ରାଜନୀତିକ ଜୀବନ ।

ମାର୍ଫତ୍ : ମନୋଜ କୁମାର ନାୟକ
ଅନ୍ନପୂର୍ଣ୍ଣ ଭବନ, ପିଠାପୁର, କଟକ-୭୫୩୦୦୧

# ଡକ୍ଟର ମହତାବଙ୍କ ସହ ସାକ୍ଷାତକାର

ଶ୍ରୀମତୀ ରାଧାରାଣୀ ସରକାର

*୧୯୮୫ ଜୁନ୍ ମାସରେ କଟକ ଆକାଶବାଣୀ ବିବିଧଭାରତୀ ପକ୍ଷରୁ ଏକ ସାକ୍ଷାତକାରରେ ହରେକୃଷ୍ଣ ମହତାବ ନିଜର କର୍ମମୟ ଜୀବନର ଅନୁଭୂତି ବ୍ୟକ୍ତ କରିଯାଇଛନ୍ତି । ସେଥିରୁ ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱ ଓ ଜୀବନାଦର୍ଶର ପରିଚୟ ମିଳିଥାଏ ।*

***ଆପଣ ପ୍ରଥମେ ସମାଜସେବକ, ତା'ପରେ ରାଜନୀତିଜ୍ଞ ନା ପ୍ରଥମେ ରାଜନୀତିଜ୍ଞ, ତା'ପରେ ସମାଜସେବକ ?***

ଯେଉଁ ସମୟରେ ମୁଁ ରାଜନୀତିରେ ଯୋଗ ଦେଲି, ସେ ସମୟଟା ହେଉଛି ଗାନ୍ଧୀଯୁଗ । ଗାନ୍ଧିଜୀଙ୍କର ରାଜନୀତି ଓ ସମାଜସେବା ଏପରି ଭାବରେ ମିଶ୍ରିତ ଥିଲା, ଯାହାକୁ ଆଜି କଳ୍ପନା କରିହେବ ନାହିଁ । ଆଜି ରାଜନୀତିଟା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହୋଇଯାଇଛି । ଗାନ୍ଧିଜୀଙ୍କର ରାଜନୀତି ଥିଲା-ଏଣେ ଇଂରେଜ ସରକାରଙ୍କ ସହ ଲଢ଼େଇ କରିବା, ତା' ସଙ୍ଗେ ସଙ୍ଗେ ସମାଜସେବା କରିବା । ସେହି ହେତୁରୁ ରାଜନୀତିକୁ ଆସିବାଟା ଏକା ସାଙ୍ଗରେ ସମ୍ଭବ ହେଉଥିଲା ।

***ଆପଣ କ'ଣ ଭାବନ୍ତି ଯେ ରାଜନୀତିରେ ନ ରହିଲେ ସମାଜସେବା କରିହୁଏନା ?***

ସମାଜସେବା କରିବାକୁ ହେଲେ ରାଜନୀତି ସହିତ ସମ୍ପର୍କ ରଖିବାକୁ ପଡ଼ିବ, କିନ୍ତୁ ସମାଜସେବା ସହିତ ଦଳଗତ ରାଜନୀତି ଖାପ ଖାଇବନି । ଦଳଗତ ରାଜନୀତି ହେଉଛି Election ବା ନିର୍ବାଚନ ଇତ୍ୟାଦିରେ ଯୋଗ ଦେବା । ରାଜନୀତିର ସମ୍ବନ୍ଧ ହେଉଛି ରାଜନୀତିର ଗତିବିଧି ଲକ୍ଷ୍ୟ ରଖିବା, ସରକାରଙ୍କ ନୀତିକୁ ଲକ୍ଷ୍ୟ ରଖିବା । ଏସବୁ କାର୍ଯ୍ୟ ମଧ୍ୟ ସମାଜସେବୀଙ୍କୁ ଲକ୍ଷ୍ୟ ରଖିବାକୁ ପଡ଼ିବ । ବର୍ତ୍ତମାନ ଯେପରି ଅବସ୍ଥା ହେଉଛି, ରାଜନୀତିରେ ଯୋଗ ଦେବା ପାଇଁ କେବଳ ସମାଜସେବୀ ନୁହନ୍ତି, ସବୁ ଶ୍ରେଣୀର ଲୋକ ବଡ଼ ଉତ୍ସାହୀ । ତା'ର କାରଣ ରାଜନୀତି ବହୁତ ଲାଭଜନକ ହେଉଯାଉଛି ବର୍ତ୍ତମାନ ଅବସ୍ଥାରେ, କିନ୍ତୁ ଯେଉଁମାନେ ପ୍ରକୃତ ସମାଜସେବୀ, ସେମାନେ ଦଳଗତ ରାଜନୀତିରେ ଯୋଗ ଦେଉନାହାନ୍ତି । ଦଳଗତ ରାଜନୀତି ଏବଂ ରାଜନୀତି ଏ ଦି'ଟା ଅଲଗା ଜିନିଷ । ଦଳଗତ ମାନେ ହେଲା ବିଭିନ୍ନ ଦଳରେ ଠିଆ ହୋଇ ନିର୍ବାଚନ ଲଢ଼ିବା, ରାଜନୀତି କରିବା, କିନ୍ତୁ ସମାଜସେବୀମାନେ ନିର୍ବାଚନ ଯୁଦ୍ଧରେ ଯୋଗ ଦିଅନ୍ତି ନାହିଁ । ଯେଉଁମାନେ ଯୋଗ ଦିଅନ୍ତି, ସେମାନେ ସମାଜସେବୀ ହୋଇପାରନ୍ତି ନାହିଁ ।

***ବର୍ତ୍ତମାନ ଦେଖାଯାଉଛି ଯେ ରାଜନୀତିରେ ପଶିବା ପାଇଁ ସମାଜସେବାକୁ ଗୋଟାଏ ମାଧ୍ୟମ ରୂପେ ଗ୍ରହଣ କରାଯାଉଛି । ଏ କ୍ଷେତ୍ରରେ ବର୍ତ୍ତମାନ ଅବତୀର୍ଣ୍ଣ ହେଉଥିବା ଲୋକଙ୍କ ପାଇଁ ଆପଣଙ୍କର ସନ୍ଦେଶ ?***

ସମାଜସେବୀ ସମାଜସେବା ମାଧ୍ୟମ ଦେଇ ଯାଉଛନ୍ତି କି ନା ମୋର ସନ୍ଦେହ, ତା'ର କାରଣ ଯେଉଁମାନେ ସମାଜସେବା କରିବେ, ସେମାନେ ନିର୍ବାଚନ ଆଡ଼କୁ ମନ ଦେଲେ ସମାଜସେବା କରିପାରିବେନି ।

***ଆପଣ କ'ଣ ଅନୁଭବ କରୁଛନ୍ତି ଯେ ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରି ନଥିଲେ, ଆପଣ ଆଜି ଓଡ଼ିଶା ପାଇଁ ଯାହା କରିଛନ୍ତି ତାହା କରିପାରିନଥାନ୍ତେ ?***

ସେ ସମୟର କଥା କହୁଛି । ପ୍ରତ୍ୟକ୍ଷ ରାଜନୀତିରେ ଯୋଗଦେବା ଫଳରେ, ପ୍ରଥମ କଥା, ସାହିତ୍ୟ କ୍ଷେତ୍ରରେ, ମୁଁ ରାଜନୀତିରେ ଯୋଗଦେବା ପୂର୍ବରୁ, କଲେଜରେ ପଢ଼ିବା ସମୟରେ ମଧ୍ୟ ସାହିତ୍ୟରେ ଉତ୍ସାହୀ ଥିଲି । ସେତେବେଳରୁ ରାଜନୀତିରେ ମଧ୍ୟ ଥିଲି । ବର୍ଷେ ଜେଲ୍ ଗଲି । ତାପରେ ୯/୧୦ ବର୍ଷ ପରେ ଆଉ ଥରେ ଜେଲ୍ । ଏ ସମୟରେ ସାହିତ୍ୟ ଚର୍ଚ୍ଚା କରିବାର ସୁବିଧା ହୁଏ, ବିଶେଷତଃ ଜେଲ ଯାଇ ସାହିତ୍ୟ ଚର୍ଚ୍ଚା କରିବା ଅତି ସୁବିଧା ହୁଏ । ସେ ହେତୁରୁ ସାହିତ୍ୟ ଚର୍ଚ୍ଚା ଏବଂ ରାଜନୀତି ଭିତରେ କିଛି ସମ୍ପର୍କ ନାହିଁ ପ୍ରକୃତରେ । ଆଜିକାଲି ଯେଉଁମାନେ ସାହିତ୍ୟରେ ଯୋଗ ଦେଉଛନ୍ତି, ରାଜନୀତି ଭିତରେ ରହି ସେମାନେ ପ୍ରକୃତ ସାହିତ୍ୟିକ ନୁହନ୍ତି । ସେ ସମୟରେ ରାଜନୀତି ସାହିତ୍ୟର ଗୋଟିଏ ଅଂଶ ଥିଲା । ପ୍ରତ୍ୟେକ ସାହିତ୍ୟିକ ସେ ସମୟରେ ଯେଉଁମାନେ ନେତା ହେଉଥିଲେ, ଜହରଲାଲ ନେହେରୁଙ୍କଠାରୁ ଆରମ୍ଭ କରି ସମସ୍ତେ, ସେମାନେ ବିଶିଷ୍ଟ ସାହିତ୍ୟିକ ମଧ୍ୟ ଥିଲେ । ଆଜିକାଲି ସେ ଯୋଗ୍ୟତାଟା ରାଜନୀତି କ୍ଷେତ୍ରରେ ଦରକାର ପଡୁନି ।

***ସ୍ୱାଧୀନତା ଆନ୍ଦୋଳନର ପଟ୍ଟଭୂମିରେ ରଚିତ ଉପନ୍ୟାସ ଆପଣଙ୍କର "ପ୍ରତିଭା" ଓ ଅନ୍ୟ କେତେକ ଜାତୀୟତାଭାବ-ଉଦ୍ରେକକାରୀ କବିତାକୁ ବାଦ୍ ଦେଲେ ଆପଣ ସୃଜନାତ୍ମକ ସାହିତ୍ୟରେ ସାଙ୍ଗଠନିକ ଦିଗ ଆଡ଼କୁ କାହିଁକି ଅଧିକ ଦୃଷ୍ଟି ଦେଇଛନ୍ତି ?***

ପ୍ରକୃତରେ ୧୯୨୭ ସାଲରୁ, ଲବଣ ସତ୍ୟାଗ୍ରହ ପୂର୍ବରୁ ମୋର ଗୋଟିଏ ପଲାସୀ ଅବସାନ ବୋଲି ବହି ବାହାରି ଥିଲା, କବିତା ପୁସ୍ତକ । ଆଜି ପର୍ଯ୍ୟନ୍ତ ତାହା ଜନପ୍ରିୟ ହୋଇଛି । ତା'ପରେ ପ୍ରତିଭା ପରି ଅନେକ ସାମାଜିକ ଉପନ୍ୟାସ ଓ କବିତା ପ୍ରକାଶିତ ହୋଇଛି । ନାଟକ ନାନା ଓ ବହୁ ଏକାଙ୍କିକା ଲେଖୁଛି, ଏପରିକି ମୁଁ ଯେତେବେଳେ କେନ୍ଦ୍ରମନ୍ତ୍ରୀ ହିସାବରେ ଲଣ୍ଡନ ଯାଉଥିଲି, ସେଠାକାର ଜଣେ ପ୍ରସିଦ୍ଧ ନାଟ୍ୟକାର ଆସି ମୋତେ କହିଲେ, ଆପଣଙ୍କର ଗୋଟିଏ ନାଟକ ମୁଁ ଅନୁବାଦ କରି ଏଠି କରେଇବି । ତାଙ୍କୁ "ଟଙ୍କାଘର" ନାଟକ ଦେଇଥିଲି । ସେ ନାଟକଟି ଅନୁବାଦ କରି ସେଠି କରିଥିଲେ । ସେ ଥିଲା ମନସ୍ତତ୍ତ୍ୱମୂଳକ ନାଟକ । ସେ ଯାହା ହେଉ ନାଟକର ସମାଜ ସହିତ ଓ ବ୍ୟକ୍ତିଗତ ଜୀବନ ସହିତ ସମ୍ପର୍କ ଥାଏ ।

***ଆପଣ ସାହିତ୍ୟର ସାଙ୍ଗଠନିକ ଦିଗପ୍ରତି ଦୃଷ୍ଟି ଦେଲେ, କିନ୍ତୁ ସୃଜନାତ୍ମକ ସାହିତ୍ୟଠାରୁ ଦୂରେଇ ଗଲେ କାହିଁକି ?***

ମୋର ଧାରଣା ଯେ, ଲୋକେ ଭାବନ୍ତି ଉପନ୍ୟାସ, ଗଳ୍ପ ବା କବିତା ଲେଖିଲେ ସୃଜନାତ୍ମକ ହୁଏ । ମୁଁ କିନ୍ତୁ ଗଠନମୂଳକ କ୍ଷେତ୍ରରେ ଯୋଗ ଦେଲି । ଜେଲରୁ ଆସିବା ପରେ, ଯେତେବେଳେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ଚେଷ୍ଟା କଲି, ସେତେବେଳେ ଉତ୍କଳ ସାହିତ୍ୟ ସମାଜ ଭିତରେ ପ୍ରବଳ ବିବାଦ । ସେ ବିବାଦକୁ ମେଣ୍ଟାଇବା ପାଇଁ ରାତିରାତି ଲାଗି ହେଇପାରିଲା ନାହିଁ । ତା' ନକଲେ ଆମେ ଦେଖିଲୁ ଯେ ଓଡ଼ିଆ ସାହିତ୍ୟଟା ଜଖମ୍ ହେଇଯିବ । ସେଇ ହେତୁରୁ ଆମର ବିଷୁବମିଳନ, ଝଙ୍କାର, ପ୍ରଜାତନ୍ତ୍ର ପ୍ରଚାର ସମିତି ସବୁ ଆରମ୍ଭ ହେଲା । ସେଇଠୁ ସଙ୍ଗଠନ ଆରମ୍ଭ ହେଲା । ସଙ୍ଗଠନ ଆସିଲା ପରେ ବହୁଲୋକ ଆସ୍ତିକ ଏକତ୍ର ହେଲେ । ସାହିତ୍ୟ କହିଲେ ବାସ୍ତବିକ ସଙ୍ଗଠନକୁ ବୁଝାଏ । ସାହିତ୍ୟ ଶବ୍ଦର ଅର୍ଥ ସେଇଆ । ଦି'ରକମର ସାହିତ୍ୟ ଅଛି । ଗୋଟିଏ ସାହିତ୍ୟ ହଉଚି ନିଜପାଇଁ, ଆଉ ଗୋଟିଏ ସାହିତ୍ୟ ସମାଜ ସହିତ ସମ୍ପର୍କ । ସମାଜ ସହିତ ସମ୍ପର୍କ ଯେଉଁ ସାହିତ୍ୟ, ସେଥିପାଇଁ ସଙ୍ଗଠନ ଆବଶ୍ୟକ । ସୃଜନଶୀଳ ସାହିତ୍ୟ ଯାହା କୁହାଯାଉଛି, ମୁଁ ଆଶ୍ଚର୍ଯ୍ୟ ହେଉଛି, ମୁଁ ଯେଉଁ 'ଗାଁ ମଜଲିସ୍' ଲେଖୁଛି ଅନେକ ମନେ କରନ୍ତି ତାହା ସୃଜନଶୀଳ ସାହିତ୍ୟ ନୁହେଁ । କିନ୍ତୁ ସାହିତ୍ୟ ଏକାଡ଼େମୀ ତ ମୋତେ ପୁରସ୍କାର ଦେଇଚି ତାକୁ ସୃଜନଶୀଳ ସାହିତ୍ୟ କହି । ସୃଜନଶୀଳ ସାହିତ୍ୟ କେବଳ ଗଳ୍ପ ଉପନ୍ୟାସ ନୁହେଁ, ନିଜ ଅନୁଭୂତିରୁ ଡକଚି କଥାକୁ ମଧ ପ୍ରକାଶ କରିବା ସୃଜନଶୀଳ ସାହିତ୍ୟ । ସେଇଟା ହେଉନାହିଁ ଆମ ଦେଶରେ, କିନ୍ତୁ ଅନ୍ୟ ପାଶ୍ଚାତ୍ୟ ଦେଶରେ ଆଧୁନିକ ବିକାଶ ଯାହା ହଉଚି, ତା'ରି ଉପରେ ସାହିତ୍ୟ ଲେଖା ହଉଚି । ଓଡ଼ିଆ ସାହିତ୍ୟରେ ତାହା ହେଉନି । କାରଣ ଓଡ଼ିଆ ସାହିତ୍ୟରେ ପ୍ରାଚୀନ ସାହିତ୍ୟର ପ୍ରଭାବ ଅତି ବେଶି ଅଛି ।

***ଆପଣଙ୍କ ରଚିତ ଓଡ଼ିଶା ଇତିହାସ ଓ ଅନେକ ମୌଳିକ ତତ୍ତ୍ୱପୂର୍ଣ୍ଣ ରଚନାରେ ଆପଣ ଜଣେ ପୋଖତ ଗବେଷକର ପରିଚୟ ଦେଇଛନ୍ତି । ଏତେ ବ୍ୟସ୍ତତା ଭିତରେ ଏପରି ସୃଷ୍ଟି କରିବା କିପରି ସମ୍ଭବ ହେଲା ?***

ଅହମ୍ମଦନଗର ଫୋର୍ଟରେ ବନ୍ଦୀ ଥିବାବେଳେ ଓଡ଼ିଶା ଇତିହାସ ଲେଖାଯାଇଥିଲା । ଚାରି ବର୍ଷ ରହିଲୁ । ସେଠି ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ ସମସ୍ତେ ଥିଲେ । ନେହେରୁଙ୍କର ଯେତେ ବହି ବାହାରିଚି ସେଇଠିକାର ଲେଖା । ସେଇ ଫୋର୍ଟରେ ବନ୍ଦୀ ଥିବାବେଳେ ଯେ କୌଣସି ବହି ଚାହିଁଲେ ପଢ଼ିବାକୁ ଦିଆଯାଉଥିଲା । ଓଡ଼ିଆ ସାହିତ୍ୟ ପାଇଁ ଯେତେ ବହି ମୁଁ ମାଗିଚି, ସବୁ ସେ ଦେଇଚନ୍ତି । ଚାରିବର୍ଷକାଳ ଗବେଷଣା କରିବା ପାଇଁ ସେଇଠି ସୁବିଧା ହେଲା ।

***ପ୍ରାଚୀନ ସାହିତ୍ୟ ଓ ବର୍ତ୍ତମାନର ଆଧୁନିକ ସାହିତ୍ୟକୁ ଆପଣ କିପରି ଭାବରେ ତୁଳନା କରନ୍ତି ?***

ପ୍ରାଚୀନ ସାହିତ୍ୟରୁ ଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣଙ୍କର ସାହିତ୍ୟ ମୁଁ ଅଧ୍ୟୟନ କରିଛି । କିନ୍ତୁ ବର୍ତ୍ତମାନ ଯେଉଁମାନେ ସେଗୁଡ଼ିକ ଆଲୋଚନା କରୁଚନ୍ତି, ମୋର ମନେ ହେଉଚି ସେମାନେ ସେସବୁ ଅଧ୍ୟୟନ କରି ନାହାନ୍ତି । ସେ ଯାହାହେଉ ସେ ସମୟର ସାମାଜିକ ଅବସ୍ଥା ଉତ୍କୃଷ୍ଟ ଥିଲା । ଉଦାହରଣ ସ୍ୱରୂପ ଗଙ୍ଗା ଗଙ୍ଗୋତ୍ରୀରୁ ବାହାରି ଆସି ବହୁ ତୀର୍ଥ ସ୍ଥାନେ ସ୍ଥାନେ ସୃଷ୍ଟି କରି ସମୁଦ୍ରରେ ପଡ଼ିଚି । ସେଇପରି ସେତେବେଳକାର ସାହିତ୍ୟ ସେତେବେଳେ ଗୋଟିଏ ତୀର୍ଥ ଥିଲା । ଏବେ ବହୁ ନୂଆ ନୂଆ କଥା ଆସି ଗଲାଣି । ତା' ସହିତ ପ୍ରାଚୀନ ସାହିତ୍ୟକୁ ମିଳେଇକି ଚାଲିଲେ ଭଲ ହୁଅନ୍ତା, କିନ୍ତୁ ଯେଉଁମାନେ ପ୍ରାଚୀନ ସାହିତ୍ୟ ଆଲୋଚନା କରୁଚନ୍ତି, ସେମାନେ କେବଳ ସେଇଥିରେ ନିମଗ୍ନ ହୋଇ ଯାଉଛନ୍ତି । ବର୍ତ୍ତମାନ ରେଡ଼ିଓରେ ଯେଉଁ ପ୍ରାଚୀନ ଗୀତ ବୋଲା ଯାଉଚି ସେପରି ସ୍ୱରରେ ତ ଆଧୁନିକ ଗୀତ ବୋଲାଯାଉନି । ମୋର ମନେ ହେଉଛି, ବର୍ତ୍ତମାନ କବିମାନେ ଗୀତ ଗାଇ ପାରିବେନି । ସେତେବେଳେ କବିମାନେ ସଙ୍ଗୀତଜ୍ଞ ଥିଲେ ଓ ନିଜେ ସ୍ୱର ଦେଇ ଗୀତ ରଚନା କରୁଥିଲେ ।

***ଆମେ ଶୁଣିଛୁ ଯେ ଆପଣ ଗୀତ ଗାଇ ଜାଣନ୍ତି, ବଜେଇ ମଧ ପାରନ୍ତି, ଏ କ'ଣ ସତ ?***

କଲେଜରୁ I.Sc. ପାଶ୍ କରିବା ପରେ ଦି' ତିନିବର୍ଷ ତାବଲା ବଜେଇବା, ହାରମୋନିୟମ ବଜେଇବା, ବେହେଲା ଶିଖିବା ଏସବୁ ଅଭ୍ୟାସ କରିଥିଲି । ତା'ପରେ ରାଜନୀତିରେ ଯୋଗ ଦେବା ପରେ ସେସବୁ କୁଆଡ଼େ ଗଲା । ଯେତେବେଳେ ବମ୍ବେରେ ଗଭର୍ଣ୍ଣର ହେଲି ସେତେବେଳେ ଗୋଟିଏ ହାରମୋନିୟମ ମଗେଇ କରି ଦିନାକେତେ ବଜେଇଲି, ତା'ପରେ ଫେର୍ ଏଠିକି ଆସିବା ପରେ ସେସବୁ କୁଆଡ଼େ ଗଲା । ତା'ମାନେ ଚିନ୍ତାମୁକ୍ତ ନ ହେଲେ ସେସବୁ କାର୍ଯ୍ୟ ହୋଇପାରିବନି ।

***ଆପଣଙ୍କୁ ଦେଖିଲେ ମନେ ହୁଏ ଆପଣ ଜଣେ କଠୋର ପ୍ରକୃତିର ଲୋକ ।***

ମୋର ଧାରଣା ଜଣେ ନମ୍ର ପ୍ରକୃତିର ଲୋକ ହେଲେ ବି କଠୋର ହୋଇପାରେ କାର୍ଯ୍ୟ କ୍ଷେତ୍ରରେ । ସେସବୁ ନିର୍ଭର କରେ ଅବସ୍ଥା ଉପରେ । କିନ୍ତୁ ମୁଁ ସେପରି କଠୋର ନୁହେଁ ବୋଲି ମୁଁ ଭାବେ ।

***ଆପଣଙ୍କର ମନ ଉପରେ ଖୁବ୍ ଛାପ ପକେଇଥିବା ସ୍ମୃତିଟି କ'ଣ ?***

ଡ଼ଃ ମହତାବ-ସେ ହଉଚି ସୁଭଦ୍ରା ମହତାବଙ୍କ ମୃତ୍ୟୁ । ସେ ମୃତ୍ୟୁ ବେଳକୁ ମୁଁ କିଛି କରିପାରିନି । ସେଇଟା ବରାବର ମୋ ମନ ଭିତରେ ଆସୁଛି । ତାଙ୍କୁ ମୁଁ କୌଣସି ଭାବରେ ସୁଖୀ ଦେଇପାରିନି । ଏପରିକି ରୋଗ ଶଯ୍ୟାରେ ଥିବାବେଳେ ମଧ ମୁଁ କିଛି କରିପାରିନି ।

• • •

# ମୁଁ କାହିଁକି ଲେଖେ ?

• ଡଃ ହରେକୃଷ୍ଣ ମହତାବ

କିଛିକାଳ ପୂର୍ବେ ଜଣେ କୁତୂହଳୀ ମୋତେ ଏକ ପ୍ରବନ୍ଧ ଲେଖିବାକୁ ଅନୁରୋଧ କରିଥିଲେ । ପ୍ରବନ୍ଧର ବିଷୟବସ୍ତୁ ହେଲା, ମୁଁ ଲେଖେ କାହିଁକି ? ମୁଁ ଏ ପ୍ରବନ୍ଧ ଲେଖିପାରି ନଥିଲି । କାରଣ ନିଜକୁ ନିଜେ ଏ ପ୍ରଶ୍ନ ପଚାରିବାର ଅବସର ପାଇ ନଥିଲି । ଏବେ କାରାଗାରର ନିର୍ଜନ ପ୍ରକୋଷ୍ଠରେ ଏହି ପ୍ରଶ୍ନ ନିଜକୁ ପଚାରିଥିଲି । ବାସ୍ତବିକ ମୁଁ ଲେଖେ କାହିଁକି, ମୁଁ ନିଜେ ଜାଣି ପାରୁନାହିଁ । ଦୀର୍ଘ ପଚାଶ ବର୍ଷ ହେଲା ପ୍ରାୟ ପ୍ରତିଦିନ ମୁଁ କିଛି ନା କିଛି ଲେଖୁଛି । ସ୍ୱରାଜ୍ୟ ଆନ୍ଦୋଳନରେ ମାତିଲାବେଳେ, ପରେ ଶାସନରେ ଓ ବାହାରେ, ଯେଉଁ ଅବସ୍ଥାରେ ଯେତେବେଳେ ଥାଏ ନିତ୍ୟକୃତ୍ୟ ସାରିଲା ପରେ ଘଣ୍ଟାଏ ଖଣ୍ଡେ କିଛି ନଲେଖିଲେ ଦିନସାରା ମନରେ ଶାନ୍ତି ରହେ ନାହିଁ । ସେହିପରି ରାତିରେ ଶୋଇବା ପୂର୍ବରୁ ଅନ୍ତତଃ ଘଣ୍ଟାଏ ନପଢ଼ିଲେ ରାତିରେ ନିଦ ବି ହୁଏ ନାହିଁ । ପଢ଼େ କାହିଁକି ତାହା ମୁଁ ବୁଝିପାରୁଛି । ବହୁ ବିଷୟ ଜାଣିବା ପାଇଁ ଆଗ୍ରହ ଓ କୌତୂହଳ ଏହାର ସ୍ପଷ୍ଟ କାରଣ । କିନ୍ତୁ ଲେଖେ କାହିଁକି ? ସ୍ୱରାଜ୍ୟ-ସଂଗ୍ରାମବେଳେ ଆବେଗମୟ ଲେଖା ଲେଖୁଥିଲି, ଲୋକଙ୍କୁ ଆନ୍ଦୋଳନରେ ମତାଇବା ପାଇଁ । ଲେଖାର ପ୍ରଭାବ କିଛି ଲୋକଙ୍କ ଉପରେ ପଡ଼ୁଥିଲା । ସେଇଥିରେ ଥିଲା ମୋର ଆନନ୍ଦ । କିନ୍ତୁ ସେ ତ ତତ୍କାଳୀନ ଆନନ୍ଦ । ଅଧ୍ୟାପକ ମନ୍ମଥନାଥ ଦାସ କଥାବାର୍ତ୍ତା ପ୍ରସଙ୍ଗରେ ସେ ସମୟର ମୋ ଲେଖା କବିତାରୁ କିଛି ଉଦ୍ଧାର କରି କହିଲେ, "ଆପଣ ସେହିପରି ଆବେଗମୟ ଲେଖା କାହିଁକି ଆଉ ତ ଲେଖୁ ନାହାଁନ୍ତି ।" ଏହାର ଉତ୍ତର ଦେବା ସହଜ ଥିଲା । ପାରିପାର୍ଶ୍ୱିକ ପରିସ୍ଥିତିରୁ ଆବେଗ ଚାଲିଯାଇଛି, ନିଜ ଅନ୍ତରରୁ ମଧ୍ୟ ଆବେଗ ବିଦାୟ ନେଇଛି । ତା' ସଙ୍ଗେ ସଙ୍ଗେ ସେ କାଳର ଲେଖା ମଧ୍ୟ ଚାଲିଯାଇଛି । କେବଳ 'ପଲାସି ଅବସାନେ'ଟି ଆଜିସୁଦ୍ଧା ଜୀବିତ ଅଛି । ପ୍ରାଚୀନ ପରମ୍ପରାର ଭିତ୍ତି ଉପରେ ଆଧୁନିକ ଭାରତୀୟ ସମାଜ ଗଠନ ପାଇଁ ଗାନ୍ଧିଜୀ ଯୁଗ ପ୍ରବର୍ତ୍ତକ ବୋଲି ମୋର ବିଶ୍ୱାସ ଥିଲା, ଆଜି ମଧ୍ୟ ଅଛି । ପୁରାତନକୁ ନୂତନ ରୂପ ଦେବାକୁ ହେବ, ସବୁକ୍ଷେତ୍ରରେ, ଏହି ବିଶ୍ୱାସକୁ ରୂପରେଖ ଦେବା ପାଇଁ ଉପନ୍ୟାସ, ଗଳ୍ପ, କବିତା ଲେଖିଲି । ଏହି ସମୟରେ ଏହା ଆଦୃତ ହେଉଥିଲା ବୋଲି ଜାଣିଥିଲି । ସେ ସମୟର ମୋର 'ନୂତନ ଧର୍ମ' ଉପନ୍ୟାସ, ଯାହାର ଭାଷା ଆଜି ମୋତେ ପ୍ରାଚୀନ ସାହିତ୍ୟର ଭାଷାପରି ମନେହୁଏ, ସେତେବେଳେ ଖୁବ୍ ବିକ୍ରୀ ହୋଇଥିଲା । କିନ୍ତୁ କାହିଁ, ଯୁଗପ୍ରବର୍ତ୍ତକ ଗାନ୍ଧୀ ଶେଷରେ ହେଲେ ସ୍ୱାଧୀନତା ସଂଗ୍ରାମର ସେନାପତି ମାତ୍ର ! ସ୍ୱାଧୀନତା ପ୍ରାପ୍ତିପରେ ସେନାପତିଙ୍କ ନାମ ମାତ୍ର ରହିଗଲା, କିନ୍ତୁ ନବ ଯୁଗ ପ୍ରବର୍ତ୍ତନ କୁଆଡ଼େ ଉଭେଇଗଲା । ତା' ସଙ୍ଗେ ସଙ୍ଗେ ସେ ବିଶ୍ୱାସପ୍ରସୂତ ମୋର ଲେଖା ମଧ୍ୟ ଅନ୍ତର୍ହିତ ହେଲା । ତା' ପରେ ସ୍ୱାଧୀନତା ପରବର୍ତ୍ତୀ ଯୁଗ । ପ୍ରଥମ ପାଞ୍ଚବର୍ଷ, ହୃଦୟ ଏପରି ଆବେଗଭରା, ମସ୍ତିଷ୍କ ବହୁ ନୂତନ ସମସ୍ୟାର ସମାଧାନ ଚିନ୍ତାରେ ଏପରି ଭରା ଯେ, କଲମ ଧରିଲେ ଲେଖା ସ୍ୱତଃ ବାହାରି ଯାଉଥାଏ, ଯେପରି ଆନ୍ଦୋଳନ ସମୟରେ ହେଉଥିଲା । ବହୁ ଉପନ୍ୟାସ, ବହୁ ଗଳ୍ପ, ବହୁ କବିତା ଲେଖିଗଲି । ଜଣେ ସାହିତ୍ୟିକ ବୋଲି ପ୍ରସିଦ୍ଧି ମଧ୍ୟ ଲାଭ କଲି । ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ସମସ୍ତ ଉଦ୍ୟମ ଅଜାଡ଼ି ଦେଲି । ମନେ ହେଲା, ଯେପରି ମାତ୍ର କେତେବର୍ଷ ପୂର୍ବରୁ ଯାହା ସ୍ୱପ୍ନ ବା ସୁନ୍ଦର ଗଳ୍ପ ବୋଲି ମନେ ହେଉଥିଲା, ତାହା ଅଚିରେ ସତ୍ୟ ଏବଂ ନୂତନ ଇତିହାସ ହେବାକୁ ଯାଉଛି । ଧୀରେ ଧୀରେ ଅବସ୍ଥାର ପରିବର୍ତ୍ତନ ହେବାକୁ ଲାଗିଲା । ଏପରି ସମୟ ଆସିଗଲା, ଯେତେବେଳେ କେବଳ ଘଟି ଯାଇଥିବା ଘଟଣାର ବିଶ୍ଳେଷଣ, ଆଲୋଚନା ଓ ସମାଲୋଚନା ବ୍ୟତୀତ ଅନ୍ୟ କୌଣସି ଶ୍ରେଣୀର ଲେଖାପାଇଁ କଲମ ପୁରୁଣା ବେମରାମତି ଜିପ୍‌ଗାଡ଼ି ପରି ଚାଲିବାରେ ନିତାନ୍ତ କୁଣ୍ଠା ପ୍ରକାଶ କଲା । ତଥାପି ଠେଲିବାକୁ ପଡ଼ିଲା କିଛି ଦୂରଯାଏ, ପୁଣି ଅଟକିଯାଏ । କେବଳ ଓଡ଼ିଶାର ନୁହେଁ । ଚାରି ଆଡ଼ର ସାହିତ୍ୟ ମଧ୍ୟ ପାରିପାର୍ଶ୍ୱିକ ଅବସ୍ଥା ସହିତ, ସାମାଜିକ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ କୌଣସି ଅବସ୍ଥା ସହିତ ସମ୍ପର୍କ ନରଖି ଶୂନ୍ୟେ ଶୂନ୍ୟେ ବିଚରଣ କଲା । ମୋ ପକ୍ଷରେ ତାହା ସମ୍ଭବ ହେଲା ନାହିଁ । କାରଣ ମୁଁ ଛନ୍ଦି ହୋଇଯାଇଥିଲି ନିତାନ୍ତ ବାସ୍ତବପନ୍ଥ ଦଳଗତ ରାଜନୀତିରେ । ଅଳ୍ପ କେତେବର୍ଷ ଭିତରେ ସେଥିରୁ ମନକୁ ହଟାଇ ନେବାପରେ ମୁଁ ନିଜକୁ ଟିକେ ମୁକ୍ତ ଅନୁଭବ କରୁଛି । କିନ୍ତୁ ଲେଖିବି କଅଣ ? କାହିଁ ୧୯୨୧ର ଆବେଗମୟ ବାୟୁମଣ୍ଡଳ, ଭାବ-ସମୁଦ୍ରରେ ଲଘୁଚାପ ପରି ଲେଖାରେ ଝଡ଼ଝଞ୍ଜା ସୃଷ୍ଟି ହୋଇଯାଇଛି, କାହିଁ ପୁଣି ସ୍ୱାଧୀନତା ପରେ କେତେ ବର୍ଷର ନବସୃଷ୍ଟି ଅଭିଳାଷ ଓ ପରିକଳ୍ପନା, ପୁଣି କାହିଁ ଜୁଆର ଛାଡ଼ିଗଲା ପରେ ନଦୀର ଗଭୀର କର୍ଦ୍ଦମରେ ପଡ଼ିଯାଇଥିବା ନୌକା ପରି ଦେଶର ପାରିପାର୍ଶ୍ୱିକ ଅବସ୍ଥା । ଏହି ଅବସ୍ଥାରେ ଏପରି କିଛି ଲେଖା ଲେଖନୀରୁ ବାହାରିବ କି ଯାହା ଆଜି ନ ହେଲେ ମଧ୍ୟ କାଲି ସମାଜରେ ନୂଆର ସୃଷ୍ଟି କରି ପଙ୍କରେ ପଡ଼ିଯାଇଥିବା ନୌକାଟିକୁ ପୁଣି ଥରେ ଭସାଇ ନେବ ? ସେଥିପାଇଁ ଆଉ ବୟସ ଅଛି କି ? ଏହା ହିଁ ଏ ଲେଖକର ଆଜିର ଭାବନା ଓ ପ୍ରାର୍ଥନା ।

ପାଶ୍ଚାତ୍ୟ କବି ଡବ୍ଲ୍ୟୁ ବି. ୟେଟ୍ସ ଜୀବନସାରା ଆତ୍ମାବଲୋକନ ପାଇଁ ଲେଖନୀ ଚଳାଇଲେ । ଯୁଦ୍ଧ ବିରୁଦ୍ଧରେ ତାଙ୍କର ଲେଖନୀ ଅବିଶ୍ରାନ୍ତ ଭାବରେ ଚାଳିତ ହେଲା । ମାତ୍ର ସେ ମୃତ୍ୟୁର କିଛିକାଳ ପୂର୍ବରୁ ଅନୁଭବ କଲେ ଯେ ଜୀବନ କ୍ଷେତ୍ରରେ ସାହିତ୍ୟ ନିତାନ୍ତ ଦୁର୍ବଳ । ପୁଣି ୟେଟ୍ସଙ୍କ ମୃତ୍ୟୁରେ ଶୋକାଭିଭୂତ ହୋଇ ଡବ୍ଲ୍ୟୁ ଏଚ ଅଡେନ୍ ସାହିତ୍ୟ ପ୍ରତି ବିତୃଷ୍ଣ ହୋଇ ଲେଖିଲେ, କବିତା ବା ସାହିତ୍ୟ ଦ୍ୱାରା କୌଣସି ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ବାଲ୍ମୀକି ଏବଂ ବ୍ୟାସ ବିଦ୍ରୋହୀ ସାହିତ୍ୟିକ ଥିଲେ ବୋଲି ବିଶ୍ୱାସ କରାଯାଏ । କାରଣ ସେମାନଙ୍କ ସାହିତ୍ୟ ଶତବର୍ଷ ପରେ

ମଧ ଆଦୃତ ହେଉଛି ଏବଂ ସମାଜ ଉପରେ ପ୍ରଭାବ ପକାଉଛି । କିନ୍ତୁ ଏକଥା ଲୋକ ଭୁଲି ଯାଆନ୍ତି ଯେ ବାଲ୍ମୀକି ଓ ବ୍ୟାସଙ୍କର ନାୟକମାନଙ୍କୁ ପରାତ୍ପର ପରମେଶ୍ୱରଙ୍କ ସହିତ ଯୋଡ଼ି ଦିଆଯାଉଥିବାରୁ ସେମାନଙ୍କ ସାହିତ୍ୟ ବଞ୍ଚି ରହିଛି । ଯଦି ରାମ ଓ ଶ୍ରୀକୃଷ୍ଣ ଅବତାର ବୋଲି ଗୃହୀତ ହୋଇ ନଥାନ୍ତେ, ତେବେ ବାଲ୍ମୀକି ଓ ବ୍ୟାସ ମଧ ବିସ୍ମୃତି ଗର୍ଭକୁ ଚାଲିଯାଇଥାନ୍ତେ, ଯେପରି 'ବୁଦ୍ଧ ଚରିତ'ର କବି ଅଶ୍ୱଘୋଷ । ତଥାପି ରାମାୟଣ ଏବଂ ମହାଭାରତ କ୍ଷିପ୍ର ଗତିରେ ଅସ୍ତଗାମୀ ସୂର୍ଯ୍ୟପରି ଦୂର ଦିଗ୍‌ବଳୟ ତଳଆଡ଼କୁ ଗତି କରୁଛନ୍ତି । ଭବଭୂତି ତାଙ୍କ ସମୟରେ ସମାଲୋଚନାର ସମ୍ମୁଖୀନ ନହୋଇ ନିଜକୁ ନିଜେ ଆଶ୍ୱାସନା ଦେଉଥିଲେ, "ଉତ୍ପତ୍ୟେସେ ମମ କୋଽପି ସମାନଧର୍ମା, କାଲୋ ହ୍ୟୟଂ ନିରବଧି, ବିପୁଳା ଚ ପୃଥ୍ୱୀ" । ଭାଗ୍ୟବାନ ପାଶ୍ଚାତ୍ୟ ସାହିତ୍ୟିକ ସେକ୍ସପିୟର ତାଙ୍କ ପାଇଁ କାଳ ନିରବଧି ଓ ପୃଥ୍ୱୀ ମଧ ବିପୁଳା । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼େଇଲା ପରି ଏସବୁ କୃତୀ ସାହିତ୍ୟିକମାନଙ୍କ କଥା ମନକୁ ଆସେ । ସାନ୍ତ୍ୱନା ଦେବାପାଇଁ ମୋତେ କେତେକ କହନ୍ତି ଯେ ମୋ ଲେଖାରୁ ତତ୍କାଳୀନ ସାମାଜିକ ଓ ରାଜନୈତିକ ଅବସ୍ଥା ସମ୍ବନ୍ଧରେ ପରବର୍ତ୍ତୀ ଐତିହାସିକମାନେ କିଛି ପାଇବେ । ତା' ଯଦି ହୁଏ ତେବେ ସେ ବି ଏକ ଆଶ୍ୱାସନା । କିନ୍ତୁ ଏତିକି ମୋର ସାହିତ୍ୟିକ ଜୀବନରୁ ଜାଣିପାରୁଛି, ତାକୁ ପୁଣି ଲେଖନୀରେ ରୂପାୟିତ କରି ପାରୁଛି କି ନା ମୁଁ ଜାଣିପାରୁ ନାହିଁ । ମନୁଷ୍ୟର ମନୁଷ୍ୟତ୍ୱକୁ କେନ୍ଦ୍ର କରି ସାହିତ୍ୟ ସୃଷ୍ଟି କଲେ, ସେଥିରେ ସାହିତ୍ୟିକ ସନ୍ତୋଷ ଲାଭ କରେ ।

ସୃଷ୍ଟିର ବିଡ଼ମ୍ବନା ଏହି ଯେ ମନୁଷ୍ୟର ମନୁଷ୍ୟତ୍ୱ ସବୁ ଯୁଗରେ ସବୁ ସମୟରେ ମନୁଷ୍ୟ ଦ୍ୱାରା ହିଁ ଆକ୍ରାନ୍ତ । ମନୁଷ୍ୟର ଆକ୍ରମଣରୁ ମନୁଷ୍ୟତ୍ୱକୁ ରକ୍ଷା କରିବା ସାହିତ୍ୟର ଧର୍ମ ବୋଲି ମୋର ମନେହୁଏ ।

ସାହିତ୍ୟ କହିଲେ ବୁଝାଏ କେତେଗୁଡ଼ିଏ ଶବ୍ଦ ମାତ୍ର । ଅନ୍ତରରୁ ଯେଉଁ ଭାବ ଉଦ୍‌ଗତ ହୁଏ, ତାହା ମସ୍ତିଷ୍କ ମାଧ୍ୟମରେ ଶବ୍ଦରେ ପରିଣତ ହୁଏ । ସେହି ଶବ୍ଦ ହିଁ ସାହିତ୍ୟ । କିନ୍ତୁ ମନୁଷ୍ୟ ଭିତରେ ମନୁଷ୍ୟତ୍ୱ-ବିରୋଧୀ ଶକ୍ତି ଯେ ଅଛି, ସେ ଶବ୍ଦକୁ ନିୟନ୍ତ୍ରଣ କରିବା ପାଇଁ ଏତେ ଉଦ୍ୟମ କରେ ଯେ, ତାହା ଫଳରେ ସାହିତ୍ୟ ଶେଷରେ ଉଦ୍ଦେଶ୍ୟବିହୀନ ହୋଇଯାଏ । ଋଷିଙ୍କର ଅନ୍ତରପ୍ରସୂତ ଉପନିଷଦ୍ କିମ୍ବା ସନ୍ଥ ବା ପଏଗମ୍ବରଙ୍କ ଅନ୍ତରର ପ୍ରେରଣାରୁ ସୃଷ୍ଟି ଐଶଦର୍ଶନ ବା ଏପରିକି ମାର୍କସ ପ୍ରଭୃତିଙ୍କ ଅନୁଭୂତିରୁ ଉତ୍ପନ୍ନ ବସ୍ତୁବାଦୀ ଦର୍ଶନ ମଧ ବିଭିନ୍ନ ଭାଷ୍ୟକାରଙ୍କ ହାତରେ ପଡ଼ି ଶବ୍ଦମାନଙ୍କ ଅର୍ଥ ଏତେ ଦିଗରୁ ଟଣାଟଣି ହେଉଛି, ସେଥିରେ ବିଚରା ପାଠକ ବିଭ୍ରାନ୍ତ ହେବ ସିନା, ଲେଖକଙ୍କ ଅନ୍ତରକୁ ତାଙ୍କ ଶବ୍ଦ ମାଧ୍ୟମରେ ସେ ପ୍ରବେଶ କରିପାରିବ ନାହିଁ । ଏଥିପ୍ରତି ଲେଖକଙ୍କୁ ମଧ ସତତ ଜାଗ୍ରତ ରହିବାକୁ ହେବ । ଏହାର ସ୍ଥୂଳ ଅର୍ଥ ହେଉଛି ଭାଷାପ୍ରତି ମଧ ଦୃଷ୍ଟି ଦେବାକୁ ହେବ । ପ୍ରତ୍ୟେକ ଲେଖକଙ୍କ ଭାଷା ଏପରି ନିଜସ୍ୱ ହୋଇ ଯାଏ ଯେ, ପଢ଼ିଲେ ଜଣାପଡ଼ିବ କିଏ ତାର ଲେଖକ । ମୋର ଭାଷା ସେହିପରି ମୋର ନିଜସ୍ୱ ହୋଇଯାଇଛି ବୋଲି ଅନେକେ କହନ୍ତି । ସେଥିରେ ମୁଁ ଆନନ୍ଦ ଅନୁଭବ କରେ । " ନିନ୍ଦନ୍ତୁ ନୀତି ନିପୁଣାଃ ସ୍ତୁବନ୍ତୁ ବା" ଲେଖା ଚାଲିଛି, ବିଧିର ନିୟମାନୁସାରେ ବନ୍ଦ ହେବା ପର୍ଯ୍ୟନ୍ତ ।

ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ । କାରାଗାର ତ ସ୍ୱର୍ଗ ନୁହେଁ । ତଥାପି ସ୍ୱର୍ଗ ମନୁଷ୍ୟଠାରୁ ଯେପରି ଦୂରରେ, କାରାଗାର ସେହିପରି ଜନତା ଠାରୁ ଦୂରରେ । କାରାଗାରକୁ ଯାଇ ମଧ ପ୍ରତିଦିନ ନିୟମାନୁସାରେ ଲେଖୁଛି । ଅଭ୍ୟାସ ଛାଡ଼ି ପାରି ନାହିଁ, ଛାଡ଼ିବି ନାହିଁ ମଧ ଜୀବନରେ ସେହି ମୋର ଏକମାତ୍ର ସାଥୀ ।

## ନିରଳସ କର୍ମଯୋଗୀ

ଡ଼ଃ ହରେକୃଷ୍ଣ ମହତାବ ସ୍ୱାଧୀନତା ଆନ୍ଦୋଳନ ଦିନରୁ, ସ୍ୱାଧୀନତା ପ୍ରାପ୍ତି ପରେ ଦୀର୍ଘ ଚାରିଦଶନ୍ଧି ଧରି ଏକ ନିବିଡ଼ ବଟଛାୟା ପରି ସେ ଓଡ଼ିଶାର ସାଧାରଣ ଜୀବନ, ରାଜନୀତି, ସାମ୍ବାଦିକତା ଓ ସାହିତ୍ୟକୁ ଆବୋରି ରହିଥିଲେ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ମହତାବ ବାବୁ ଯେଉଁ କିଛିକାଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ରହିଥିଲେ, ସେହିକାଳରେ ସ୍ୱାଧୀନତା ପରବର୍ତ୍ତୀକାଳୀନ ଓଡ଼ିଶାରେ ନବବିକାଶର ଭିତ୍ତିଭୂମି ନିର୍ମିତ ହୋଇଥିଲା ।

ଆଧୁନିକ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି କ୍ଷେତ୍ରରେ ମହତାବ ବାବୁଙ୍କ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ । ଜଣେ ବ୍ୟକ୍ତିର ଜୀବନରେ ଏତେ ବିଭିନ୍ନ କ୍ଷେତ୍ରରେ ସଫଳତାର ସହିତ କାର୍ଯ୍ୟ କରିବାର ଉଦାହରଣ ପ୍ରକୃତରେ ଅତି ବିରଳ । ମହତାବବାବୁ ଜଣେ ନିରଳସ କର୍ମଯୋଗୀ ଥିଲେ । ବସ୍ତୁତଃ ସେ ଶଯ୍ୟାଶାୟୀ ହୋଇ ପଡ଼ିବା ପର୍ଯ୍ୟନ୍ତ ସୁଦ୍ଧା ତାଙ୍କର ନିୟମିତ ଦୈନନ୍ଦିନ କାର୍ଯ୍ୟକ୍ରମରୁ ବିରତ ନଥିଲେ ।

ଡ଼ଃ ମହତାବଙ୍କର ପ୍ରଶଂସକ ଥିଲେ ଅସଂଖ୍ୟ । ତଥାପି ତାଙ୍କର ସମାଲୋଚକଙ୍କର ମଧ ଅଭାବ ନଥିଲା ।

ମହତାବବାବୁ ଓଡ଼ିଶା ଇତିହାସରେ ଯେ, ଏକ ଉଜ୍ଜ୍ୱଳ ଅବିସ୍ମରଣୀୟ ନାମ ହୋଇ ରହିବେ, ସେଥିରେ ସନ୍ଦେହ ନାହିଁ ।

*ସୁରେନ୍ଦ୍ର ମହାନ୍ତି*



OGP–MP–PTS (I & P.R.) 47–5,000–17-12-1999

